


ରାଉରକେଲାସ୍ଥିତ ବିର୍ସା ମୁଣ୍ଡା ହକି ଷ୍ଟାଡ଼ିୟମ୍ ବିଶ୍ୱର ସର୍ବବୃହତ୍ ହକି ଷ୍ଟାଡ଼ିୟମ୍ ଭାବେ ଗିନିଜ୍ ବୁକ୍ ଅଫ୍ ୱାର୍ଲ୍ଡ ରେକର୍ଡ୍ସରେ ସ୍ଥାନିତ ହୋଇଥିବାର ପ୍ରମାଣପତ୍ର ଗ୍ରହଣ କରୁଛନ୍ତି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**April- 2023**

୬୯ ଭାଗ ୯ମ ସଂଖ୍ୟା ଚୈତ୍ର-ବୈଶାଖ ଅପ୍ରେଲ- ୨୦୨୩





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

## ଅପ୍ରେଲ–୨୦୨୩

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ–ପୟୋଧି–ବିଧୌତ–ଶରୀରା,
ତାଳତମାଳ–ସୁଶୋଭିତ–ତୀରା,
ଶୁଭ୍ରତଟିନୀକୂଳ–ଶୀକର–ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି–ସୁଶୋଭିତ–କ୍ଷେତ୍ରା,
ଜ୍ଞାନବିଜ୍ଞାନ–ପ୍ରଦର୍ଶିତ–ନେତ୍ରା,
ଯୋଗୀଋଷିଗଣ–ଉଟଜ–ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ–ଦେଶା,
ଚାରୁକଳାବଳି–ଶୋଭିତ–ବେଶା,
ପୁଣ୍ୟ ତୀର୍ଥଚୟ–ପୂର୍ଣ୍ଣ–ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର–ଦର୍ପିତ–ଗେହା,
ଅରିକୁଳ–ଶୋଣିତ–ଚର୍ଚ୍ଚିତ–ଦେହା,
ବିଶ୍ୱଭୂମଣ୍ଡଳ–କୃତବର–ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ–ବନ୍ଦ୍ୟା,
ଭୁବନବିଘୋଷିତ–କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# 'ଆପଣମାନଙ୍କ ଆତ୍ମବିଶ୍ୱାସ, ଆପଣମାନଙ୍କ ଉତ୍ସାହ ମିଶନ ଶକ୍ତିକୁ ଏକ ନମ୍ବର ସଫଳ କାର୍ଯ୍ୟକ୍ରମ କରିଛି ।'

**- ମୁଖ୍ୟମନ୍ତ୍ରୀ**



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନସ୍ଥିତ କନଭେନସନ ହଲରେ ଆୟୋଜିତ ଏକ କାର୍ଯ୍ୟକ୍ରମରେ ସହରାଞ୍ଚଳରେ କାମ କରୁଥିବା ୮ ହଜାର ମିଶନଶକ୍ତି ଗୋଷ୍ଠୀ ସହଭାଗୀ (Community Partners)ମାନଙ୍କୁ ସାଇକେଲ ବଣ୍ଟନ କରିଛନ୍ତି । ସ୍ୱଚ୍ଛ କର୍ମୀ, ସ୍ୱଚ୍ଛ ସାଥୀ, ଆହାର କର୍ମୀ, ଜଳସାଥୀ ଏବଂ ସୁପରଭାଇଜର ଆଦି ସାଇକେଲ ପାଇଛନ୍ତି । ରାଜ୍ୟ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ଏବଂ ମିଶନ ଶକ୍ତି ବିଭାଗର ମିଳିତ ସମନ୍ୱୟରେ ଏହି କାର୍ଯ୍ୟକ୍ରମର ଆୟୋଜନ କରାଯାଇଥିଲା ।

ଏହି ଅବସରରେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆପଣମାନଙ୍କ ଭାଗିଦାରୀ ମିଶନ ଶକ୍ତିକୁ ଏକ ସଫଳ କାର୍ଯ୍ୟକ୍ରମ କରିଛି । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସେ ଓଡିଶାର ବିଭିନ୍ନ ଅଞ୍ଚଳକୁ ଯାଉଛନ୍ତି ଏବଂ ମିଶନଶକ୍ତି ମା'ମାନଙ୍କୁ ଭେଟୁଛନ୍ତି । ସେମାନେ ମଧ୍ୟ ନବୀନ ନିବାସ ଆସି ତାଙ୍କୁ ଭେଟୁଛନ୍ତି । ମା'ମାନଙ୍କର ସଫଳତା ମୋତେ ବହୁତ ଖୁସି ଦେଉଛି ବୋଲି ସେ କହିଥିଲେ ।



ଆପଣମାନଙ୍କ ଆତ୍ମବିଶ୍ୱାସ, ଆପଣମାନଙ୍କ ଉତ୍ସାହ ମିଶନ ଶକ୍ତିକୁ ଏକ ନମ୍ବର ସଫଳ କାର୍ଯ୍ୟକ୍ରମ କରିଛି ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

ମୁଖ୍ୟମନ୍ତ୍ରୀ ପୁଣି କହିଥିଲେ ଯେ ବିଭିନ୍ନ ସହରରେ ମିଶନ ଶକ୍ତିର ମା' ମାନେ କମ୍ୟୁନିଟି ପାର୍ଟିସିପେସନ କାର୍ଯ୍ୟକ୍ରମରେ ଅନେକ ଦାୟିତ୍ୱ ହାତକୁ ନେଇଛନ୍ତି । ଆହାର, କଠିନ ବର୍ଜ୍ୟବସ୍ତୁ ପରିଚାଳନା, ପରିମଳ, ଜଳସାଥୀ, ସ୍ୱଚ୍ଛସାଥି ଆଦି ଅନେକ କାମ କରୁଛନ୍ତି । ଆପଣମାନଙ୍କ କାମରେ ସମସ୍ତେ ଖୁସି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆପଣମାନେ ଯେପରି ସୁବିଧାରେ ନିଜ ନିଜର ଦାୟିତ୍ୱ ପାଳନ କରିପାରିବେ, ସେଥିପାଇଁ ରାଜ୍ୟ ସରକାର ଆପଣମାନଙ୍କୁ ସାଇକେଲ ଦେଉଛନ୍ତି ।

ରାଜ୍ୟ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ, ମିଶନ ଶକ୍ତି ମା'ମାନଙ୍କୁ ୧୦୦ କୋଟି ଟଙ୍କାର ପ୍ରୋତ୍ସାହନ ଦେଇଥିବାରୁ ମୁଖ୍ୟମନ୍ତ୍ରୀ ଖୁସି ପ୍ରକାଶ କରିଥିଲେ ଏବଂ କହିଥିଲେ ଯେ ଓଡିଶାର ମିଶନ ଶକ୍ତି କମ୍ୟୁନିଟି ପାର୍ଟିସିପେସନ କ୍ଷେତ୍ରରେ ସାରା ବିଶ୍ୱରେ ସୁନାମ କରିଛି ଓ ନୂଆ ବେଞ୍ଚମାର୍କ ସୃଷ୍ଟି କରିଛି । ସମସ୍ତେ ମିଳିମିଶି ଭଲ କାମ କରି ଓଡିଶା ମା'ର ସୁନାମ ବୃଦ୍ଧି କରିବାକୁ ମୁଖ୍ୟମନ୍ତ୍ରୀ ଆହ୍ୱାନ ଦେଇଥିଲେ ।

- ମିଶନ ଶକ୍ତି କମ୍ୟୁନିଟି ପାର୍ଟନର ପାଇଲେ ୮ ହଜାର ସାଇକେଲ
- ଆପଣମାନଙ୍କ ଭାଗିଦାରୀ ମିଶନଶକ୍ତି କୁ ଏକ ନମ୍ବର କାର୍ଯ୍ୟକ୍ରମ କରିପାରିଛି – ମୁଖ୍ୟମନ୍ତ୍ରୀ

ଏହି କାର୍ଯ୍ୟକ୍ରମରେ ଯୋଗ ଦେଇ ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀମତୀ ଉଷା ଦେବୀ କହିଥିଲେ ଯେ ମିଶନ ଶକ୍ତି ମା'ମାନେ ମୁଖ୍ୟମନ୍ତ୍ରୀଙ୍କ ସ୍ୱପ୍ନର ଓଡିଶା ଗଠନକୁ ସାକାର କରିବା ପାଇଁ ବହୁତ ଭଲ କାମ କରୁଛନ୍ତି । ସାଇକେଲ ପାଇବା ଦ୍ୱାରା କର୍ମ କ୍ଷେତ୍ରରେ ସେମାନଙ୍କୁ ବହୁ ସୁବିଧା ଓ ସ୍ୱାଧୀନତା ମିଳିପାରିବ । ମିଶନ ଶକ୍ତି ମନ୍ତ୍ରୀ ଶ୍ରୀମତୀ ବାସନ୍ତୀ ହେମ୍ବ୍ରମ କହିଲେ ଯେ ଗୋଷ୍ଠୀଗତ ବିକାଶର ଏକ ଅନୁପମ ବାର୍ତ୍ତାବହ ହେଉଛି ମିଶନ ଶକ୍ତି । ମୁଖ୍ୟମନ୍ତ୍ରୀଙ୍କ ଦିଗ୍‌ଦର୍ଶନରେ ଏହା ଆଜି ନୂଆ ମାଇଲଷ୍ଟୋନ ସ୍ଥାପନ କରିପାରିଛି ।

କାର୍ଯ୍ୟକ୍ରମରେ ଦୁଇ ଜଣ ମିଶନ ଶକ୍ତି ମା' ପଦ୍ମାବତୀ ଦାସ (ଆହାର କର୍ମୀ) ଓ ସୀତା ମୁର୍ମୁ (ସ୍ୱଚ୍ଛକର୍ମୀ) ନିଜ ନିଜର ଅଭିଜ୍ଞତା ବର୍ଣ୍ଣନା କରି କହିଥିଲେ ଯେ ମିଶନ ଶକ୍ତି କାର୍ଯ୍ୟକ୍ରମ ଯୋଗୁଁ ସେମାନେ ଆଜି ସ୍ୱାବଲମ୍ବୀ ହେବା ସହିତ ନିଜ ନିଜ ପରିବାରର ଛୋଟ ଛୋଟ ଅସୁବିଧା ମଧ୍ୟ ଦୂର କରିପାରୁଛନ୍ତି । ସାଇକେଲ ଦ୍ୱାରା ସେମାନଙ୍କ ସମୟ ବଞ୍ଚିବା ସହିତ କାର୍ଯ୍ୟଦକ୍ଷତା ବଢିବ ବୋଲି ସେମାନେ କହିଥିଲେ ।

ଏହି କାର୍ଯ୍ୟକ୍ରମରେ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗର ପ୍ରମୁଖ ସଚିବ ଶ୍ରୀ ଜି. ମାଥିଭାତନନ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ବିଏମସି କମିଶନର ଶ୍ରୀ ବିଜୟ ଅମୃତ କୁଲାଙ୍ଗେ ଧନ୍ୟବାଦ ଅର୍ପଣ କରିଥିଲେ । ବିଏମସି ମେୟର ଶ୍ରୀମତୀ ସୁଲୋଚନା ଦାସ ଉପସ୍ଥିତ ଥିଲେ ।



# ଐତିହାସିକ ଡାକୋଟା ବିମାନକୁ ଜାତି ଉଦ୍ଦେଶ୍ୟରେ ସମର୍ପଣ କଲେ ମୁଖ୍ୟମନ୍ତ୍ରୀ ।



ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜୟନ୍ତୀ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜାତି ଉଦ୍ଦେଶ୍ୟରେ ବିଜୁ ବାବୁଙ୍କ ଐତିହାସିକ ଡାକୋଟା ବିମାନକୁ ସମର୍ପଣ କରିଛନ୍ତି । Dakota DC-3 (VT-AUI) । ବିଜୁ ପଟ୍ଟନାୟକ ଆନ୍ତର୍ଜାତିକ ବିମାନ ବନ୍ଦରରେ ଏହି ବିମାନକୁ ସର୍ବସାଧାରଣଙ୍କ ପାଇଁ, ଓଡ଼ିଆମାନଙ୍କ ପାଇଁ ଓ ସାରା ଦେଶବାସୀଙ୍କ ପାଇଁ ସମର୍ପିତ କରିଛନ୍ତି ।

ସୂଚନାଯୋଗ୍ୟ ଯେ ଏହି ବିମାନ କଲିକତା ବିମାନ ବନ୍ଦରରେ ବର୍ଷ ବର୍ଷ ଧରି ପରିତ୍ୟକ୍ତ ଅବସ୍ଥାରେ ଥିଲା । ରାଜ୍ୟ ସରକାରଙ୍କ ଉଦ୍ୟମରେ ଏହାକୁ ଭୁବନେଶ୍ୱର ବିମାନ ବନ୍ଦରକୁ ଅଣାଯାଇ ମରାମତି କରାଯାଇ ସମ୍ପୂର୍ଣ୍ଣ ନୂଆ ରୂପରେ ପ୍ରଦର୍ଶନ କରାଯାଇଛି ।



ଏହି ବିମାନରେ ରହିଛି ବିଜୁ ବାବୁଙ୍କର, ଜଣେ ଅଦମ୍ୟ ସାହସୀ ଓଡ଼ିଆ ଯୁବକଙ୍କର ବୀରତ୍ୱ ଓ ପରାକାଷ୍ଠାର କାହାଣୀ । ଏହି ବିମାନରେ ବିଜୁ ବାବୁ, ତାଙ୍କ ପତ୍ନୀ ଜ୍ଞାନ ପଟ୍ଟନାୟକଙ୍କ ସହିତ Indonesia ଯାଇ ସେଠାକାର ସ୍ୱାଧନତା ସଂଗ୍ରାମୀମାନଙ୍କୁ ଡଚ୍‌ମାନଙ୍କ କବଳରୁ ମୁକ୍ତ କରି ଭାରତ ଆଣିଥିଲେ । ସେ କାହାଣୀ ଆଜି ସମସ୍ତେ ଜାଣନ୍ତି । କିନ୍ତୁ ସେହି ଐତିହାସିକ ଘଟଣାର ଜୀବନ୍ତ ସାକ୍ଷୀକୁ ଦେଖିବାର ସୁଯୋଗ ପାଇବେ ଓଡ଼ିଶାବାସୀ, ଦେଶବାସୀ ।

- ଯୁଗ ଯୁଗ ପାଇଁ ଅଦମ୍ୟ ସାହସ ଓ ଅନନ୍ୟ ପରାକାଷ୍ଠାର ବାର୍ତ୍ତା ଦେଇ ଚାଲିବ ବିଜୁ ବାବୁଙ୍କ ଡାକୋଟା
- ଭୁବନେଶ୍ୱର – ରଙ୍ଗେଇଲୁଣ୍ଡା ବିମାନସେବାର ଶୁଭାରମ୍ଭ

ଏହି ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଛନ୍ତି ଯେ ଏହି ବିମାନ ଏବେ ଯୁଗ ଯୁଗ ଧରି ଓଡ଼ିଆମାନଙ୍କୁ ସାହସ, ବୀରତ୍ୱ ଓ ଦେଶ ପାଇଁ ସମର୍ପଣ ଭାବର ବାର୍ତ୍ତା ଦେଇ ଚାଲିବ । ବିଶ୍ୱବାସୀଙ୍କ ସମ୍ମୁଖରେ ଓଡ଼ିଶାର ମର୍ଯ୍ୟାଦାକୁ ପ୍ରତିଷ୍ଠିତ କରିବ ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ ଭୁବନେଶ୍ୱର– ରଙ୍ଗେଇଲୁଣ୍ଡା non scheduled flightର ଶୁଭାରମ୍ଭ ମଧ୍ୟ କରିଛନ୍ତି ।



# ଋଣ ପ୍ରଦାନରେ ଶ୍ରେଷ୍ଠ ପ୍ରଦର୍ଶନକାରୀ ବ୍ୟାଙ୍କଗୁଡ଼ିକୁ 'ମୁଖ୍ୟମନ୍ତ୍ରୀ ପୁରସ୍କାର'

ରାଜ୍ୟର ଅର୍ଥନୈତିକ ପ୍ରଗତିରେ କୃଷକ, କ୍ଷୁଦ୍ର ଉଦ୍ୟୋଗୀ ଏବଂ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କ ଭୂମିକାକୁ ଉପଲବ୍ଧି କରି ରାଜ୍ୟ ସରକାର ଏହି ତିନୋଟି କ୍ଷେତ୍ରକୁ ଋଣ ପ୍ରଦାନ ଉପରେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ଏସବୁ ଅଗ୍ରାଧିକାର କ୍ଷେତ୍ରରେ ଋଣ ପ୍ରବାହ ବୃଦ୍ଧି କରିବା ପାଇଁ ରାଜ୍ୟ ସରକାର ବ୍ୟାଙ୍କମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି । ଏହି ମର୍ମରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଶ୍ରେଷ୍ଠ ପ୍ରଦର୍ଶନକାରୀ ବ୍ୟାଙ୍କମାନଙ୍କୁ ପୁରସ୍କାର ବିତରଣର ବ୍ୟବସ୍ଥା ହୋଇଛି । ଅଗ୍ରାଧିକାର କ୍ଷେତ୍ରକୁ ଋଣ ପ୍ରଦାନରେ ଶ୍ରେଷ୍ଠ ପ୍ରଦର୍ଶନକାରୀ ବ୍ୟାଙ୍କଗୁଡ଼ିକୁ ଏପରି 'ମୁଖ୍ୟମନ୍ତ୍ରୀ ପୁରସ୍କାର' ପ୍ରଦାନ ବ୍ୟବସ୍ଥା ଲାଗୁ କରିବାରେ ଓଡ଼ିଶା ଦେଶରେ ପ୍ରଥମ ରାଜ୍ୟ ।




ମାନ୍ୟବର ମୁଖ୍ୟମନ୍ତ୍ରୀ ୨୦୨୨ ମଇ ୨୫ ତାରିଖରେ ଅର୍ଥ ବିଭାଗ ଦ୍ୱାରା ଆୟୋଜିତ ଏକ ରାଜ୍ୟସ୍ତରୀୟ ସଭାରେ ଆର୍ଥିକ ବର୍ଷ ୨୦୨୦-୨୧ ପାଇଁ ଅଗ୍ରାଧିକାର କ୍ଷେତ୍ରରେ ଋଣ ପ୍ରଦାନରେ ଶ୍ରେଷ୍ଠ ପ୍ରଦର୍ଶନକାରୀ ୯ଟି ବ୍ୟାଙ୍କୁ ପୁରସ୍କାର ପ୍ରଦାନ କରିଛନ୍ତି ।

୫,୫୫୫ଟି ବ୍ୟାଙ୍କ ଶାଖା ମଧ୍ୟରୁ ୪,୬୨୪ଟି ବ୍ୟାଙ୍କ ଶାଖା (ପ୍ରାୟ ୮୩ ଶତକଡ଼ା ଶାଖା) ଆର୍ଥିକ ବର୍ଷ ୨୦୨୦-୨୧ ପାଇଁ 'ମୁଖ୍ୟମନ୍ତ୍ରୀ ପୁରସ୍କାର'ରେ ଭାଗ ନେଇଥିଲେ ।

ବଲାଙ୍ଗିର ଜିଲ୍ଲାର ସେଣ୍ଟ୍ରାଲ ବ୍ୟାଙ୍କ, ବଲାଙ୍ଗିର ଶାଖା, ରାୟଗଡ଼ା ଜିଲ୍ଲାର ଆକ୍ସିସ୍ ବ୍ୟାଙ୍କ, ରାୟଗଡ଼ା ଶାଖା, ସମ୍ବଲପୁର ଜିଲ୍ଲାର ଆକ୍ସିସ୍ ବ୍ୟାଙ୍କ, ସମ୍ବଲପୁର ଶାଖାକୁ କୃଷକମାନଙ୍କୁ ଋଣ ପ୍ରଦାନ କ୍ଷେତ୍ରରେ ଉତ୍ତମ ପ୍ରଦର୍ଶନ ପାଇଁ ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଚାମ୍ପିଅନ୍ ବ୍ୟାଙ୍କ ପୁରସ୍କାର ପ୍ରଦାନ କରାଯାଇଛି । କ୍ଷୁଦ୍ର ଉଦ୍ୟୋଗୀମାନଙ୍କୁ ଋଣ ପ୍ରଦାନ କ୍ଷେତ୍ରରେ ପାରଦର୍ଶିତା ପାଇଁ ୟୁନିୟନ୍ ବ୍ୟାଙ୍କ, ବଲାଙ୍ଗିର ଶାଖା, ଖୋର୍ଦ୍ଧା ଜିଲ୍ଲାର

ବ୍ୟାଙ୍କ ଅଫ୍ ଇଣ୍ଡିଆ, ଜୟଦେବ ବିହାର ଶାଖା, ଅନୁଗୋଳ ଜିଲ୍ଲାର ୟୁନିୟନ୍ ବ୍ୟାଙ୍କ, ତାଳଚେର ଶାଖା ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରି ଚାମ୍ପିଅନ୍ ବ୍ୟାଙ୍କ ପୁରସ୍କାର ପାଇଛନ୍ତି । ସେହିପରି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ଋଣ ପ୍ରଦାନ କରି ଗ୍ରାମୀଣ ମହିଳାଙ୍କ ଆର୍ଥିକ ଉନ୍ନତିରେ ସହାୟକ ହୋଇପାରିଥିବାରୁ ବଲାଙ୍ଗିର ଜିଲ୍ଲା ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, କଣ୍ଟାବଂାଝି ଶାଖା, ସୋନପୁର ଜିଲ୍ଲା ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, ଡୁଙ୍ଗୁରିପାଲ୍ଲୀ ଶାଖା, ମାଲକାନଗିରି ଜିଲ୍ଲା ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, କାଲିମେଳା ଶାଖାକୁ ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରି ଚାମ୍ପିଅନ୍ ବ୍ୟାଙ୍କ ପୁରସ୍କାର ପାଇଛନ୍ତି ।



ପ୍ରକାଶଯୋଗ୍ୟ ଯେ ପ୍ରତିବର୍ଷ ଉପରୋକ୍ତ ତିନୋଟି କ୍ଷେତ୍ରରେ ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟ ଶ୍ରେଷ୍ଠ ପ୍ରଦର୍ଶନକାରୀ ବ୍ୟାଙ୍କମାନଙ୍କୁ ଯଥାକ୍ରମେ ୫ ଲକ୍ଷ, ୩ ଲକ୍ଷ ଓ ୨ ଲକ୍ଷ ଟଙ୍କାର ପୁରସ୍କାର ରାଶି ଦିଆଯାଏ । ଏହି ପୁରସ୍କାର ପାଇବା ପାଇଁ ସମସ୍ତ ସରକାରୀ, ବେସରକାରୀ ଓ ଗ୍ରାମୀଣ ବ୍ୟାଙ୍କ ତଥା ରାଜ୍ୟରେ କାର୍ଯ୍ୟ କରୁଥିବା ସମବାୟ ଏବଂ କ୍ଷୁଦ୍ର ଫାଇନାନ୍ସ ବ୍ୟାଙ୍କଗୁଡ଼ିକ ଆବେଦନ କରିପାରିବେ । ହିତାଧିକାରୀଙ୍କ ସଂଖ୍ୟା, ଋଣ ବିତରଣ ପରିମାଣ, ସୁଧ ରିହାତି ପରିମାଣ ପରି କିଛି ଧାର୍ଯ୍ୟ ମାନଦଣ୍ଡ ଆଧାରରେ ପୁରସ୍କାର ନିର୍ଣ୍ଣୟ କରାଯାଇଥାଏ ।

ରାଜ୍ୟର ସାମାଜିକ-ଅର୍ଥନୈତିକ ଅଭିବୃଦ୍ଧିରେ ବ୍ୟାଙ୍କଗୁଡ଼ିକର ଅଂଶଗ୍ରହଣକୁ ପ୍ରୋତ୍ସାହନ ଦେବା ଓ ଏହି ଅଭିବୃଦ୍ଧି ହାସଲ ଲକ୍ଷ୍ୟରେ ସଫଳତା ଅର୍ଜନ କରୁଥିବା ବ୍ୟାଙ୍କଗୁଡ଼ିକୁ ପୁରସ୍କାର ପ୍ରଦାନ ଫଳରେ ଗତ ତିନିବର୍ଷ ମଧ୍ୟରେ ଅଗ୍ରାଧିକାର କ୍ଷେତ୍ରରେ ଋଣ ବିତରଣରେ ଯଥେଷ୍ଟ ଉନ୍ନତି ହୋଇଛି । ୨୦୨୦-୨୧ ଆର୍ଥିକ ବର୍ଷରେ ଆମ ରାଜ୍ୟ ପ୍ରଥମ ଥର ପାଇଁ ବାର୍ଷିକ ଋଣ ଯୋଜନାରେ ଏକ ଲକ୍ଷ କୋଟି ଟଙ୍କାରୁ ଅଧିକ ଋଣ ବିତରଣ ଲକ୍ଷ୍ୟ ହାସଲ କରିପାରିଛି । ୩୦ ସେପ୍ଟେମ୍ବର, ୨୦୨୨ ସୁଦ୍ଧା ରାଜ୍ୟର ଋଣ-ଜମା ଅନୁପାତରେ ଉନ୍ନତି ଘଟି ଶତକଡ଼ା ୭୬.୮୫ରେ ପହଞ୍ଚିଛି, ଯାହା ଜାତୀୟ ହାରଠାରୁ ଅଧିକ ।

ଦୀପ୍ତିମୟୀ ମହାପାତ୍ର
ସୂଚନା ଅଧିକାରୀ



# କୃଷି ବଜେଟ୍ (୨୦୨୩-୨୪)

ଏହି ବଜେଟ୍, ଆମର ଦୂରଦୃଷ୍ଟି ସମ୍ପନ୍ନ ତଥା ସର୍ବଜନପ୍ରିୟ ମୁଖ୍ୟମନ୍ତ୍ରୀଙ୍କର ସଙ୍କଳ୍ପିତ ସ୍ୱପ୍ନ ''ନୂତନ ଓଡିଶା-ଏକ ସଶକ୍ତ ଓଡିଶା''ର ପ୍ରତିଫଳନ ।

୨. ଶ୍ରୀ ନବୀନ ପଟ୍ଟନାୟକଙ୍କ ଦକ୍ଷ ନେତୃତ୍ୱରେ ଆମ ସରକାର ବିଗତ ୨୩ ବର୍ଷ ମଧ୍ୟରେ ଜନସାଧାରଣଙ୍କ ବର୍ଦ୍ଧିଷ୍ଣୁ ଆଶା ଓ ଆକାଂକ୍ଷାକୁ ପୂରଣ କରିବାରେ ସକ୍ଷମ ହେବା ସହ ରାଜ୍ୟକୁ ଏକ ଅଭୂତପୂର୍ବ ଅଭିବୃଦ୍ଧି ପଥରେ ନେଇପାରିଛନ୍ତି । ଅତ୍ୟନ୍ତ ଅନୁନ୍ନତ ରାଜ୍ୟ ଭାବେ ପରିଗଣିତ ଓଡ଼ିଶା ଆଜି ଅନେକ କ୍ଷେତ୍ରରେ ଦେଶର ଆଦର୍ଶ ପାଲଟିଛି । ରୂପାନ୍ତରୀକରଣ ଆମର ଏକମାତ୍ର ଲକ୍ଷ୍ୟ ।

୩. ବିପର୍ଯ୍ୟୟକୁ ପ୍ରତିହତ କରି ଜୀବନ ଓ ଜୀବିକାର ସୁରକ୍ଷା, ସମସ୍ତଙ୍କ ପାଇଁ ଖାଦ୍ୟ ଓ ସ୍ୱାସ୍ଥ୍ୟ ନିରାପତ୍ତା ସୁନିଶ୍ଚିତ କରିବା, ମହିଳାମାନଙ୍କ ରାଜନୈତିକ ଅର୍ଥନୈତିକ ସଶକ୍ତିକରଣ, ଲକ୍ଷ ଲକ୍ଷ ଲୋକଙ୍କୁ ଦାରିଦ୍ର୍ୟରୁ ମୁକ୍ତ କରିବା ସହ ରାଜ୍ୟର ସର୍ବାଙ୍ଗୀନ ବିକାଶ ଓ ପ୍ରଗତି ପାଇଁ ଆମେ ଦୃଢ଼ ପ୍ରତିବଦ୍ଧ । ଆମ ସରକାର ସଦା ସର୍ବଦା ମହିଳା, ଯୁବଗୋଷ୍ଠୀ, କୃଷକ, ଶ୍ରମିକ, ଧାର୍ମିକ ସଂଖ୍ୟାଲଘୁ ଏବଂ ସମାଜର ଦୁର୍ବଳ ତଥା ପଛୁଆ ବର୍ଗଙ୍କ ସ୍ୱାର୍ଥ ରକ୍ଷା ପାଇଁ ଯଥୋଚିତ ସହଯୋଗ ଓ ସମର୍ଥନ ପ୍ରଦାନ କରିଆସିଛନ୍ତି । ଆମ କାର୍ଯ୍ୟଶୈଳୀ ଓ କଠିନ ପରିଶ୍ରମ ଆମକୁ ଉଲ୍ଲେଖନୀୟ ସଫଳତା ଆଣିଦେଇଛି ।

୪. ଜଳସେଚନ, କୃଷି ଉତ୍ପାଦନ, ଖାଦ୍ୟ ସୁରକ୍ଷା, ସମସ୍ତଙ୍କ ପାଇଁ ପକ୍କା ଘର, ବିଶୁଦ୍ଧ ପାନୀୟ ଜଳ, ପରିମଳ, ବିଜୁଳି, ସଡ଼କ ସଂଯୋଗୀକରଣ, ଶିକ୍ଷା, ଦକ୍ଷତା, ସ୍ୱାସ୍ଥ୍ୟ ସେବା, ଜୀବିକା ସୁଯୋଗ ସୃଷ୍ଟି, ସାମାଜିକ ସୁରକ୍ଷା ଓ ନଗର ଉନ୍ନୟନ କ୍ଷେତ୍ରରେ ଓଡ଼ିଶା ଦ୍ରୁତ ଅଗ୍ରଗତି କରିଛି । ଉତ୍ପାଦନ, ସୂଚନା ଓ ପ୍ରଯୁକ୍ତିବିଦ୍ୟା, ସେବା ଉଦ୍ୟୋଗ ଏବଂ ଷ୍ଟାର୍ଟଅପ୍ କ୍ଷେତ୍ରରେ ପୁଞ୍ଜିନିବେଶ ପାଇଁ ଆମେ ଆଜି ଏକ ଆକର୍ଷଣୀୟ ବିଶ୍ୱ ସ୍ତରୀୟ ଲକ୍ଷ୍ୟସ୍ଥଳୀ ଭାବେ ଉଭା ହୋଇଛୁ । ବିଶ୍ୱସ୍ତରୀୟ ଭିତ୍ତିଭୂମିର ବିକାଶ କରି, କ୍ରମାଗତଭାବେ ଆନ୍ତର୍ଜାତୀୟ କ୍ରୀଡ଼ା ପ୍ରତିଯୋଗିତାକୁ ସଫଳତାର ସହ ଆୟୋଜନ କରି ଓଡ଼ିଶା ଏବେ ସମଗ୍ର ବିଶ୍ୱର ଏକ ସ୍ପୋର୍ଟ ହବ୍ ଭାବେ ପରିଗଣିତ ହୋଇପାରିଛି ।

୫. ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟର ସଙ୍କଟ ସତ୍ତ୍ୱେ ଆମ ରାଜ୍ୟ ଏଭଳି ସଫଳତା ହାସଲ କରିପାରିଛି । ବାସ୍ତବରେ, ଓଡିଶା ତା'ର ବିପର୍ଯ୍ୟୟ ମୁକାବିଲା କ୍ଷମତା ପାଇଁ ବିଶ୍ୱସ୍ତରରେ ମିଳିତ ଜାତିସଂଘ ତରଫରୁ ସ୍ୱୀକୃତି ଲାଭ କରିଛି ।

୬. ଶାସନ ବ୍ୟବସ୍ଥା ଏବଂ ସରକାରୀ ଆର୍ଥିକ ପରିଚାଳନା (Public Financial Management)ରେ ବିଶ୍ୱସନୀୟତା, ଉତ୍ତରଦାୟିତ୍ୱ ଏବଂ ସ୍ୱଚ୍ଛତା ବୃଦ୍ଧି ପାଇଁ ଆମ ସରକାର ଦୃଢ ପ୍ରତିଶ୍ରୁତିବଦ୍ଧ । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ

ଶ୍ରୀ ନବୀନ ପଟ୍ଟନାୟକଙ୍କ ୫-ଟି ମନ୍ତ୍ର ଏବଂ ମୋ ସରକାର ଅଭିଯାନ, ପ୍ରଶାସନ ତଥା ସେବା ପ୍ରଦାନର ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଆଣିପାରିଛି ।

୭. ଏକ ଭାଗୀଦାରୀ ପ୍ରକ୍ରିୟା ସ୍ୱରୂପ, ଆମେ ସମାଜର ବିଭିନ୍ନ ବର୍ଗର ପ୍ରତିନିଧି ତଥା ବିଶେଷଜ୍ଞ ଏବଂ ସାଧାରଣ ଲୋକଙ୍କ ସହିତ ପ୍ରାକ୍ ବଜେଟ୍ ଆଲୋଚନା କରିଥିଲୁ । ବିଭିନ୍ନ ପ୍ରସଙ୍ଗ ଉପରେ ଆମେ ଏହି ବର୍ଷ ବିଭିନ୍ନ ମାଧ୍ୟମରୁ ୧ ହଜାର ୯ ଶହ ୩୦ ଟି ପରାମର୍ଶ ପାଇଛୁ । ବଜେଟ୍ ପ୍ରସ୍ତୁତି ବେଳେ ଆମେ ପରାମର୍ଶଗୁଡ଼ିକୁ ଯତ୍ନର ସହ ବିଚାରକୁ ନେଇ କିଛି ମତାମତକୁ ବଜେଟରେ ଅନ୍ତର୍ଭୁକ୍ତ ମଧ୍ୟ କରିଛୁ । ବଜେଟ୍ ପ୍ରସ୍ତୁତି ଓ ନୂତନ ଓଡ଼ିଶା-ସଶକ୍ତ ଓଡ଼ିଶା ଗଠନରେ ନାଗରିକମାନଙ୍କ ସହଭାଗିତା ସେମାନଙ୍କ ପ୍ରତି ଆମର ପ୍ରତିବଦ୍ଧତାର ପ୍ରତିଫଳନ ।

୮. ବିଗତ ବର୍ଷମାନଙ୍କ ପରି ଏହି ବଜେଟ୍ ଅଭିଭାଷଣ ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗ ହେଉଛି କୃଷି ବଜେଟ୍ ଏବଂ ଦ୍ୱିତୀୟ ଭାଗ ହେଉଛି ସାଧାରଣ ବଜେଟ୍ ।

**ପ୍ରଥମ ଭାଗ (କୃଷି ବଜେଟ୍)**

**ସ୍ଥୂଳ ଅର୍ଥନୈତିକ ଦୃଶ୍ୟପଟ୍ଟ** (Macro-Economic Outlook)

୯. ୨୦୨୩-୨୪ ଆର୍ଥିକ ବର୍ଷ ପାଇଁ ବିଶ୍ୱ ଅର୍ଥନୈତିକ ଦୃଶ୍ୟପଟ ଚିନ୍ତାଜନକ ପ୍ରତୀୟମାନ ହେଉଛି । ଉଭୟ ଆନ୍ତର୍ଜାତୀୟ ମୁଦ୍ରା ପାଣ୍ଠି (IMF) ଏବଂ ବିଶ୍ୱ ବ୍ୟାଙ୍କ, ବିଶ୍ୱ ଅର୍ଥନୀତିରେ ପ୍ରାୟ ୧ ଦଶମିକ ୭ ପ୍ରତିଶତ ଅଭିବୃଦ୍ଧି ହେବ ବୋଲି ପୂର୍ବାନୁମାନ କରିଛନ୍ତି । କିନ୍ତୁ ଭାରତର ଅଭିବୃଦ୍ଧି ହାର ୨୦୨୩-୨୪ ଆର୍ଥିକ ବର୍ଷରେ ୬ ଦଶମିକ ୮ ପ୍ରତିଶତ ରହିବ ବୋଲି ପୂର୍ବାନୁମାନ କରାଯାଇଛି । ସୁତରାଂ ଏହା ବିଶ୍ୱ ଅର୍ଥନୀତିରେ ଏକ ଉଜ୍ଜ୍ୱଳ ସ୍ଥାନ ଭାବେ ପରିଗଣିତ ହୋଇଛି । ମହାମାରୀ ପ୍ରଭାବରୁ ଦ୍ରୁତ ପୁନରୁଦ୍ଧାର ପରେ ଓଡିଶା ଅର୍ଥନୀତିରେ ୨୦୨୧-୨୨ ଆର୍ଥିକ ବର୍ଷରେ ୧୧ ଦଶମିକ ୫ ପ୍ରତିଶତ ଅଭିବୃଦ୍ଧି ହୋଇଥିଲା, ଯାହା ଜାତୀୟ ଅଭିବୃଦ୍ଧି ହାରଠାରୁ ଅଧିକ । ଫଳତଃ ଓଡ଼ିଶା ଦେଶର ଅଭିବୃଦ୍ଧି ହାରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିଛି । ୨୦୨୩-୨୪ ଆର୍ଥିକ ବର୍ଷରେ ରାଜ୍ୟର GSDP ଅଭିବୃଦ୍ଧି ହାର ୮ ପ୍ରତିଶତ ରହିବ ବୋଲି ଆକଳନ କରାଯାଇଥିବାରୁ, ଓଡ଼ିଶା ଭାରତ ଅର୍ଥନୀତିର ଏକ ଅତି ଉଜ୍ଜ୍ୱଳ ସ୍ଥାନରେ ପରିଗଣିତ ହୋଇପାରିବ । କ୍ରମାଗତ ଭାବରେ ଉଚ୍ଚ ଅର୍ଥନୈତିକ ଅଭିବୃଦ୍ଧି ଯୋଗୁଁ ଜାତୀୟ ସ୍ତରଠାରୁ ରାଜ୍ୟ ସ୍ତରରେ ମୁଣ୍ଡପିଛା ଆୟର ବ୍ୟବଧାନ ୨୦୧୫-୧୬ରେ ୩୧ ଦଶମିକ ୬ ପ୍ରତିଶତ ଥିବାବେଳେ ୨୦୨୨-୨୩ରେ ଏହା ୧୧ ଦଶମିକ ୭ ପ୍ରତିଶତକୁ ହ୍ରାସ ପାଇ ପାରିଛି । ଏହି ଧାରା ବଜାୟ ରହିଲେ ଆଗାମୀ କିଛି ବର୍ଷ ମଧ୍ୟରେ ରାଜ୍ୟର ମୁଣ୍ଡପିଛା ଆୟ ଜାତୀୟ ସ୍ତରକୁ ଅତିକ୍ରମ କରିପାରିବ ବୋଲି ଆଶା କରାଯାଉଛି । ଏହି ପରିପ୍ରେକ୍ଷୀରେ ମୁଁ ବର୍ତ୍ତମାନ କୃଷି ବଜେଟ୍ ଉପସ୍ଥାପନ କରୁଛି ।

୧୦. ଓଡ଼ିଶା ମୁଖ୍ୟତଃ ଏକ କୃଷିଭିତ୍ତିକ ରାଜ୍ୟ । ଓଡ଼ିଶା ଅର୍ଥନୈତିକ ସର୍ବେକ୍ଷଣ, ୨୦୨୨-୨୩ର ଆକଳନ ଅନୁଯାୟୀ କୃଷି ଏବଂ ଆନୁଷଙ୍ଗିକ କ୍ଷେତ୍ରର ଯୋଗଦାନ ମୋଟ Gross State Value Added (GSVA)ର ୨୨ ଦଶମିକ ୫ ପ୍ରତିଶତ ଅଟେ । କୃଷି ଏବଂ ଆନୁଷଙ୍ଗିକ କାର୍ଯ୍ୟକ୍ରମ ସର୍ବାଧିକ ରୋଜଗାର ପ୍ରଦାନକାରୀ କ୍ଷେତ୍ର ଏବଂ ଏହା ରାଜ୍ୟର ସାମାଜିକ ତଥା ଅର୍ଥନୈତିକ ବିକାଶରେ ସବୁଠୁ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ତେଣୁ ଆମ ସରକାର ଏକ ବିସ୍ତୃତ ତଥା ସାମଗ୍ରିକ କୃଷିନୀତି ଦ୍ୱାରା ବିଭିନ୍ନ ପଦକ୍ଷେପ ମାଧ୍ୟମରେ ଏହି କ୍ଷେତ୍ରର ବିକାଶ ଓ ବଜାର ସଂଯୋଗୀକରଣ ଉପରେ ବିଶେଷ ଗୁରୁତ୍ୱାରୋପ କରୁଛନ୍ତି । ଏହାଦ୍ୱାରା ଚାଷୀମାନଙ୍କୁ ଫସଲର ଉତ୍ତମ ମୂଲ୍ୟ ଯୋଗାଇ ଦେବା ସହ ସେମାନଙ୍କ ଆୟରେ ଦୃଷ୍ଟାନ୍ତମୂଳକ ଅଭିବୃଦ୍ଧିର ଆଶା କରାଯାଉଛି ।

୧୧. ୨୦୧୩-୧୪ ଆର୍ଥିକ ବର୍ଷରୁ ଆମ ସରକାର ଏକ ପୃଥକ କୃଷି ବଜେଟ୍ ମାଧ୍ୟମରେ ଏହି କ୍ଷେତ୍ର ପାଇଁ ରାଜ୍ୟ ସମ୍ବଳର ଏକ ବିଶେଷ ଅଂଶ ବିନିଯୋଗ କରି ପ୍ରୋତ୍ସାହନ ଦେଇଆସୁଛନ୍ତି ।

୧୨. କୃଷି ଉତ୍ପାଦନ ଓ ଉତ୍ପାଦକତା ବୃଦ୍ଧି ତଥା ରାଜ୍ୟର କୃଷକମାନଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ମୁଁ କୃଷି ବଜେଟ୍, ୨୦୨୩-୨୪ ଅଧୀନରେ ୨୪ ହଜାର ୮ ଶହ ୨୯ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରଖୁଛି । ଏହା ଗତବର୍ଷ ତୁଳନାରେ ୨୦ ପ୍ରତିଶତ ଅଧିକ ଏବଂ ୨୦୧୬-୧୭ ଆର୍ଥିକ ବର୍ଷ ବଜେଟ୍ ଆକଳନଠାରୁ ୩ ଗୁଣ ଅଧିକ ।

୧୩. ଜଣେ ବି ଗରିବ ଲୋକ ଯେପରି ଖାଦ୍ୟ ସୁରକ୍ଷାରୁ ବଞ୍ଚିତ ନ ହୁଅନ୍ତି ଏହି ପ୍ରୟାସ ହେଉଛି ଆମ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପ୍ରତିଶ୍ରୁତି । ଏହାକୁ ପାଥେୟ କରି ରାଜ୍ୟ ସରକାର ଜାତୀୟ ଖାଦ୍ୟ ସୁରକ୍ଷା ଆଇନ (NFSA) ଏବଂ ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନା (SFSS)କୁ ସ୍ୱଚ୍ଛତା ଓ ଦକ୍ଷତାର ସହ କାର୍ଯ୍ୟକାରୀ କରୁଛନ୍ତି । ବାସ୍ତବରେ, ଆମର ଏହି ପ୍ରୟାସକୁ ସମଗ୍ର ଦେଶରେ ପ୍ରଶଂସା କରାଯାଇଛି ଏବଂ ନିକଟରେ ଭାରତ ସରକାରଙ୍କ ଦ୍ୱାରା ଜାତୀୟ ଖାଦ୍ୟ ସୁରକ୍ଷା ଆଇନ (NFSA) ପାଇଁ କରାଯାଇଥିବା ରାଜ୍ୟ ମାନ୍ୟତା ସୂଚକାଙ୍କ - ୨୦୨୨ (State Ranking Index-୨୦୨୨)ରେ ଓଡ଼ିଶାକୁ ଦେଶର ଏକ ନମ୍ବର ରାଜ୍ୟ ଭାବେ ସ୍ୱୀକୃତି ମିଳିଛି ।

୧୪. ଏକ ସୁଦୃଢ଼ ଧାନସଂଗ୍ରହ ବ୍ୟବସ୍ଥା ଦ୍ୱାରା ଖାଦ୍ୟ ନିରାପତ୍ତା ହାସଲ କରାଯାଇପାରିବ । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଖାଦ୍ୟ ଅଭାବଗ୍ରସ୍ତ ରାଜ୍ୟରୁ ଆମେ କେବଳ ଖାଦ୍ୟ ବଳକା ରାଜ୍ୟରେ ପରିଗଣିତ ହୋଇନାହୁଁ ବରଂ କେନ୍ଦ୍ରୀୟ ପୁଲରେ ଚତୁର୍ଥ ବୃହତ୍ତମ ଖାଦ୍ୟ ଯୋଗାଣକାରୀ ରାଜ୍ୟ ହୋଇପାରିଛୁ । ରାଜ୍ୟରେ ଧାନସଂଗ୍ରହ କାର୍ଯ୍ୟକଳାପ ବୃଦ୍ଧି ପାଉଛି । ତେଣୁ ଚାଷୀଙ୍କୁ ଠିକ୍ ସମୟରେ ସେମାନଙ୍କ ପ୍ରାପ୍ୟ ପ୍ରଦାନ ପାଇଁ Odisha State Civil Supplies Corporation Ltd (OSCSC) ଦ୍ୱାରା ଋଣ ବ୍ୟତୀତ ୨୦୨୩-୨୪ ବଜେଟରେ ଧାନ ସଂଗ୍ରହ କାର୍ଯ୍ୟକ୍ରମ ନିମନ୍ତେ ୨ ହଜାର କୋଟି ଟଙ୍କାର Revolving fundର ବ୍ୟବସ୍ଥା କରାଯାଇଛି । ରାଜ୍ୟର ସମସ୍ତ ୩୦ଟି ଜିଲ୍ଲାରେ ଧାନ ସଂଗ୍ରହ କାର୍ଯ୍ୟକ୍ରମ ଚାଲିଛି ଏବଂ ଏଥିରେ ପଶ୍ଚିମ ଓଡ଼ିଶାର ପ୍ରମୁଖ ଯୋଗଦାନ ରହିଛି । ତେଣୁ ସେମାନେ ଏହି Revolving fundର ମୁଖ୍ୟ ହିତାଧିକାରୀ ହେବେ ଏବଂ ଏହା ସେମାନଙ୍କ ଜୀବିକା ଉପାର୍ଜନରେ ସହାୟକ ହେବ ।

୧୫. ରାଜ୍ୟରେ କୃଷି କ୍ଷେତ୍ରର ସମୃଦ୍ଧି ତଥା ଦାରିଦ୍ର୍ୟ ହ୍ରାସ ଲକ୍ଷ୍ୟ ନେଇ ୨୦୧୮-୧୯ ଆର୍ଥିକ ବର୍ଷଠାରୁ ରାଜ୍ୟ ସରକାର Krushak Assistance for Livelihood and Income Augmentation - KALIA ଯୋଜନା ପ୍ରଚଳନ କରିଛନ୍ତି । ଏହି ଯୋଜନାରେ ପ୍ରାୟ ୪୧ ଲକ୍ଷ ୮ ହଜାର କ୍ଷୁଦ୍ର ଏବଂ ନାମମାତ୍ର ଚାଷୀ ଏବଂ ୧୮ ଲକ୍ଷ ୬୯ ହଜାର ଭୂମିହୀନ ଚାଷୀ ପରିବାରକୁ ସହାୟତା ମିଳିସାରିଛି । ୨୦୨୩-୨୪ ଆର୍ଥିକ ବର୍ଷରେ କାଳିଆ ଯୋଜନା ନିମନ୍ତେ ମୁଁ ୧ ହଜାର ୮ ଶହ ୭୯ କୋଟି ଟଙ୍କାର ବ୍ୟୟ ବରାଦ ପ୍ରସ୍ତାବ ରଖୁଛି ।

**ଫସଲ ଉତ୍ପାଦନ ପରିଚାଳନା**

୧୬. ବ୍ୟବସ୍ଥିତ ଭାବରେ ଶସ୍ୟ ସଂଗ୍ରହ କରିବା, ଆବଶ୍ୟକ ଗୁଣବତ୍ତାର କୃଷି ଉପକରଣ (ବିହନ, ସାର ଓ କୀଟନାଶକ)ର ବିତରଣ କରିବା ଏବଂ ଏହାକୁ ସମୟାନୁଯାୟୀ ପର୍ଯ୍ୟାପ୍ତ ପରିମାଣରେ ଓ ସୁଲଭ ମୂଲ୍ୟରେ ଚାଷୀଙ୍କୁ ଉପଲବ୍ଧ କରାଇବା ରାଜ୍ୟରେ ଫସଲ ଉତ୍ପାଦନ ପରିଚାଳନାର ଅନ୍ତର୍ଭୁକ୍ତ ।

୧୭. ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ (OUAT) ରାଜ୍ୟରେ କୃଷି ଗବେଷଣା, ଶିକ୍ଷା ଏବଂ ସମ୍ପ୍ରସାରଣ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଛି । ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟକୁ ଏକ ଉତ୍କର୍ଷ କେନ୍ଦ୍ର(Centre of Excellence)ରେ

ପରିଣତ କରିବା ସହ କୃଷି ଗବେଷଣା ଓ ସମ୍ପ୍ରସାରଣ କ୍ଷେତ୍ରରେ ବିଶ୍ୱସ୍ତରୀୟ ମାନଦଣ୍ଡ ସୃଷ୍ଟି କରିବା ପାଇଁ ଆମ ମାନ୍ୟବର ମୁଖ୍ୟମନ୍ତ୍ରୀ ପ୍ରତିଶ୍ରୁତିବଦ୍ଧ । OUATରେ କୃଷି ଗବେଷଣା, ଶିକ୍ଷା ଓ ଭିତ୍ତିଭୂମି ବିକାଶ ପାଇଁ ୧ ଶହ ୬୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି : ଯାହା ୨୦୧୯-୨୦ ବର୍ଷ ବ୍ୟୟବରାଦର ପ୍ରାୟ ୫ ଗୁଣ ଅଟେ ।

୧୮. ଆର୍ଥିକ ବିକାଶରେ ଉଦ୍ୟାନ କୃଷି (Horticulture) ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଏହା ଚାଷୀମାନଙ୍କ ଆୟ ବୃଦ୍ଧିରେ ସହାୟକ ହେବା ସହ ସେମାନଙ୍କର ପୋଷଣ ନିରାପତ୍ତା (Nutritional Security)ରେ ଉନ୍ନତି ଆଣିଥାଏ । ଉଦ୍ୟାନ କୃଷି ଫସଲ ଏବଂ ଉଦ୍ୟାନ କୃଷି କ୍ଷେତ୍ରର ସାମଗ୍ରିକ ବିକାଶ ନିମନ୍ତେ ବିଭିନ୍ନ କାର୍ଯ୍ୟକଳାପକୁ ପ୍ରୋତ୍ସାହିତ କରିବା ପାଇଁ ଉଦ୍ୟାନ କୃଷି ବିକାଶ କାର୍ଯ୍ୟକ୍ରମ ଅଧୀନରେ ୩ ଶହ ୮୧ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି । ସେହିପରି ଉଦ୍ୟାନ କୃଷିର ସମନ୍ୱିତ ବିକାଶ ପାଇଁ ଜାତୀୟ ଉଦ୍ୟାନ କୃଷି ମିଶନ ଅଧୀନରେ ୧ ଶହ ୨୧ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି ।

୧୯. ସଘନ କୃଷି ପଦ୍ଧତି ହେତୁ ମୃତ୍ତିକା ସ୍ୱାସ୍ଥ୍ୟ ପରିଚାଳନା ଅଧିକ ଗୁରୁତ୍ୱ ବହନ କରିଛି । ରାଜ୍ୟ ଜୈବିକ କୃଷି ନୀତି ଅଧୀନରେ କ୍ରମାଗତ ଭାବେ ଜୈବିକ କୃଷିକୁ ପ୍ରୋତ୍ସାହନ ଦିଆଯାଉଛି ଏବଂ ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ପ୍ରାୟ ୨ ଲକ୍ଷ ହେକ୍ଟର ଜମିରେ ଜୈବିକ ଚାଷ କରିବାକୁ ଲକ୍ଷ୍ୟ ରଖାଯାଇଛି ।

୨୦. କୃଷି ଯାନ୍ତ୍ରୀକରଣ ଆମ ସରକାରଙ୍କ ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର । ବାଣିଜ୍ୟିକ କୃଷି ଉଦ୍ୟୋଗ ପ୍ରତିଷ୍ଠା ଏବଂ କୃଷି ଉପକରଣକୁ ଲୋକପ୍ରିୟ କରିବା ନିମନ୍ତେ ଆବଶ୍ୟକ ପୁଞ୍ଜି ନିବେଶ ପାଇଁ ରିହାତି ବାବଦରେ ୩ ଶହ ୮୮ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି ।

୨୧. ଜଳନିଧି ଯୋଜନାକୁ ସୌର ଜଳନିଧି ଯୋଜନା ରୂପରେ ପୁନଃ ରୂପାୟନ କରାଯାଇଛି । ଏହା ଅଧୀନରେ, ବିଶେଷ ଭାବରେ ବିଜୁଳି ଅପହଞ୍ଚ ଅଞ୍ଚଳରେ ଅକ୍ଷୟ ଶକ୍ତି ଉତ୍ସକୁ ଉପଯୋଗ କରି ପ୍ରକଳ୍ପ ଗୁଡିକୁ କାର୍ଯ୍ୟକାରୀ କରାଯାଉଛି । ଏପର୍ଯ୍ୟନ୍ତ ୨ ହଜାର ୯ ଶହ ୨ଟି ସୌର ଚାଳିତ ଘରୋଇ ଉଠା ଜଳସେଚନ ପଏଣ୍ଟ ସ୍ଥାପିତ ହୋଇଛି । ୨୦୨୩-୨୪ରେ ଅଧିକ ଅଞ୍ଚଳକୁ ନିଶ୍ଚିତ ଜଳସେଚନ ଅଧୀନରେ ଆଣିବା ପାଇଁ ପ୍ରସ୍ତାବ ରହିଛି ଏବଂ ଏଥିପାଇଁ ଏହି ଯୋଜନାରେ ୨ ଶହ ୫୦ କୋଟି ଟଙ୍କାର ପ୍ରସ୍ତାବ ଦିଆଯାଇଛି । ଏତଦ୍‌ବ୍ୟତୀତ, ଚାଷୀମାନଙ୍କ ମଧ୍ୟରେ ସଠିକ୍ ଜଳ ବ୍ୟବହାର ପରିଚାଳନାକୁ ପ୍ରୋତ୍ସାହିତ କରିବା ପାଇଁ କ୍ଷୁଦ୍ର ଜଳସେଚନକୁ ରାଜ୍ୟ ସହାୟତା ବାବଦକୁ ୪୫ କୋଟି ଟଙ୍କା ପ୍ରଦାନ କରିବାକୁ ପ୍ରସ୍ତାବ ରହିଛି ।

୨୨. ପୁନଶ୍ଚ, ରାଜ୍ୟରେ କୃଷି ଏବଂ ଆନୁଷଙ୍ଗିକ କ୍ଷେତ୍ରର ସାମଗ୍ରିକ ବିକାଶ ନିମନ୍ତେ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା (RKVY) ଅଧୀନରେ ୩ ଶହ ୬ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

୨୩. ସାମଗ୍ରିକ ବିକାଶ ଲକ୍ଷ୍ୟ ନେଇ କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ସହ ଜଡିତ ସମ୍ବଳର ଉତ୍ପାଦନ, ଏକତ୍ରୀକରଣ, ଭଣ୍ଡାରଣ, ପ୍ରକ୍ରିୟାକରଣ, ବିତରଣ ଏବଂ ବିପଣନ ନିମନ୍ତେ Farmer Producer Organisations (FPOs)କୁ ୫୨ କୋଟି ଟଙ୍କା ସହାୟତା ପାଇଁ ପ୍ରସ୍ତାବ ରହିଛି ।

୨୪. କୃଷିକ୍ଷେତ୍ରରେ ମହିଳା ସଶକ୍ତିକରଣ-ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କ (WSHG) ଉଦ୍ୟୋଗକୁ ପ୍ରୋତ୍ସାହନ କାର୍ଯ୍ୟକ୍ରମ ମାଧ୍ୟମରେ ମହିଳା ହିତାଧିକାରୀ/WSHGମାନଙ୍କର ନିରନ୍ତର ଆୟ ସୃଷ୍ଟି ସୁନିଶ୍ଚିତ କରିବା ଉଦ୍ଦେଶ୍ୟରେ ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ଖର୍ଚ୍ଚ ପାଇଁ ୩ ଶହ ୬୭ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରଖାଯାଇଛି । ମିଶନ ଅବଧିରେ

ଓଡିଶାକୁ ଛତୁ ଓ ଉଚ୍ଚ ମୂଲ୍ୟଯୁକ୍ତ ଫୁଲର ଏକ ରପ୍ତାନିକାରୀ ରାଜ୍ୟ କରିବା ପାଇଁ ୨୦୨୩-୨୪ ବଜେଟରେ ଛତୁ ମିଶନ ଏବଂ ଫୁଲ ଚାଷ ମିଶନ ଅଧୀନରେ ୧୦୦ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି ।

୨୫. ୫ ବର୍ଷ ମଧ୍ୟରେ ରାଜ୍ୟର ୯ଟି ଜିଲ୍ଲାର ୫୦ଟି ବ୍ଲକରେ 'ଓଡ଼ିଶା ପଣସ ମିଶନ' କାର୍ଯ୍ୟକାରୀ ହେବାକୁ ଯାଉଛି । ୨୦୨୩-୨୪ ବଜେଟରେ ଏହି ଯୋଜନା ଅଧୀନରେ ୯ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ଦିଆଯାଇଛି ।

**ଜଳସେଚନ ଓ ଜଳ ବ୍ୟବହାର ଦକ୍ଷତା**

୨୬. ଜଳସେଚନର ଦ୍ରୁତ ବିକାଶ ଉପରେ ଆମ ସରକାରଙ୍କ ଗୁରୁତ୍ୱ ଜାରି ରହିଛି । ନିକଟ କିଛି ବର୍ଷ ମଧ୍ୟରେ କଳାହାଣ୍ଡିର ଉପର ଇନ୍ଦ୍ରାବତୀ ଉଠା ଜଳସେଚନ ପ୍ରକଳ୍ପ, ନୂଆପଡ଼ା ଓ ବଲାଙ୍ଗୀର ଜିଲ୍ଲାକୁ ଉପକୃତ କରୁଥିବା ଲୋୟର ଇନ୍ଦ୍ର ବୃହତ୍ ଜଳସେଚନ ପ୍ରକଳ୍ପ ଏବଂ ମୟୂରଭଞ୍ଜ ଓ କେନ୍ଦୁଝରର ଆଦିବାସୀ କୃଷକମାନଙ୍କ ପାଇଁ ଦେଓ ଜଳସେଚନ ପ୍ରକଳ୍ପ ଭଳି ବଡ଼ ପ୍ରକଳ୍ପଗୁଡ଼ିକୁ ଆମ ମାନ୍ୟବର ମୁଖ୍ୟମନ୍ତ୍ରୀ ରାଜ୍ୟର କୃଷକ ସମୁଦାୟକୁ ସମର୍ପିତ କରିଛନ୍ତି । ସୁବର୍ଣ୍ଣରେଖା ଜଳସେଚନ ପ୍ରକଳ୍ପ ଦ୍ୱାରା ଗତ ଦୁଇ ବର୍ଷ ମଧ୍ୟରେ ମୟୂରଭଞ୍ଜ ଓ ବାଲେଶ୍ୱରରେ ଅତିରିକ୍ତ ୩୨ ହଜାର ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦିଆଯାଇଛି । ଏହି ପ୍ରକଳ୍ପରେ ଚଳିତ ବର୍ଷ ଆଉ ୧୦ ହଜାର ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦିଆଯିବ ।

୨୭. ପଶ୍ଚିମ ଓଡ଼ିଶାବାସୀଙ୍କ ପ୍ରତି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଥିବା ପ୍ରତିବଦ୍ଧତା ସ୍ୱରୂପ ବରଗଡ଼ ଜିଲ୍ଲାର ବିଜେପୁର, ସୋହେଲା ଓ ବରପାଲିର ଚାଷୀଙ୍କୁ ଉପକୃତ କରିବା ପାଇଁ ୨୦୨୦ ମସିହାରେ ଗଙ୍ଗାଧର ମେହେର ଉଠା ଜଳସେଚନ ପ୍ରକଳ୍ପ ଆରମ୍ଭ ହୋଇଥିଲା । ୧୧ ଫୁଟ ବ୍ୟାସ ବିଶିଷ୍ଟ ପାଇପ୍ ଲାଇନ୍ ବ୍ୟବହାର କରି ଏହି ପ୍ରକଳ୍ପଟିକୁ ଦ୍ରୁତ ଗତିରେ କାର୍ଯ୍ୟକାରୀ କରାଯାଉଛି । ଏହା ନିର୍ଦ୍ଧାରିତ ସମୟ ପୂର୍ବରୁ ଶେଷ ହେବା ସହ ୨୫ ହଜାର ୬ ଶହ ହେକ୍ଟର ଜମିକୁ ଖରିଫ ଜଳସେଚନ ଯୋଗାଇ ଦେବ ।

୨୮. ବଲାଙ୍ଗୀରର ଲୋୟର ସୁକତେଲ ବୃହତ୍ ଜଳସେଚନ ପ୍ରକଳ୍ପ ଓ କେନ୍ଦୁଝରର କାନୁପୁର ଜଳସେଚନ ପ୍ରକଳ୍ପର ଜଳଭଣ୍ଡାରଗୁଡ଼ିକରେ ଚଳିତ ବର୍ଷ ଜଳ ଗଚ୍ଛିତ କରାଯିବ । ସେହିପରି ବୈତରଣୀ ନଦୀର ଆନନ୍ଦପୁର ବ୍ୟାରେଜରୁ ସାଳନ୍ଦୀ ନଦୀର ବିଦ୍ୟାଧରପୁର ବ୍ୟାରେଜକୁ ସଂଯୋଗ କରୁଥିବା ଲିଙ୍କ୍ କେନାଲକୁ ଚଳିତ ବର୍ଷ କେନ୍ଦୁଝର ଓ ବାଲେଶ୍ୱରବାସୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯିବ । ସେହିପରି ଗଞ୍ଜାମର ଘଟକେଶ୍ୱର ଡ୍ୟାମ୍, ଅନୁଗୁଳର ମନଯୋର ସମ୍ପ୍ରସାରଣ ଓ ନୟାଗଡ଼ର କୁସୁମୀ ବ୍ୟାରେଜ୍ ନିର୍ମାଣ କାର୍ଯ୍ୟ ୨୦୨୩ରେ ଶେଷ ହେବ ।

୨୯. କ୍ରମାଗତ ଭାବେ ବୃଦ୍ଧି ପାଉଥିବା ଜଳର ଚାହିଦାକୁ ପୂରଣ କରିବା ତଥା ଜଳ ସଂରକ୍ଷଣ ଉଦ୍ଦେଶ୍ୟରେ ଆମ ସରକାର ୨୦୨୦ ମସିହାରେ ବିଭିନ୍ନ ନଦୀ ଉପରେ In-stream Storage Structures (ISS) ନିର୍ମାଣ ପାଇଁ ଏକ ଯୋଜନା ଘୋଷଣା କରିଥିଲେ । ୩୦ଟି In-stream Storage Structureର କାମ ହାତକୁ ନିଆଯାଇଥିବା ବେଳେ ଯାଜପୁର ସପ୍ତମାତୃକାସ୍ଥିତ In-stream Storage Structureର କାର୍ଯ୍ୟ ୨୦୨୩ ଜୁନ୍ ମାସ ସୁଦ୍ଧା ଶେଷ ହେବ । ଏହାବ୍ୟତୀତ ବରଗଡ଼ର ଜାମୁତପାଲି, ବୌଦ୍ଧ-ସୋନପୁରର ଖଇରାମାଳ, କଟକ-ନୟାଗଡ଼ର ସୁବଳୟା, ସମ୍ବଲପୁରର ଚୁଦଲାପାଲି, ଗଞ୍ଜାମର ସୋରଡ଼ା, ମୟୂରଭଞ୍ଜର କଂସପାଳ, ଭଦ୍ରକର ଆଖୁଆପଦା, ସମ୍ବଲପୁରର ଦେଓଗାଁ, କଳାହାଣ୍ଡିର ଅମାଠ, ବଲାଙ୍ଗୀରର କୁକେଦମାଳ, ଯାଜପୁରର ଜେନାପୁର, କଳାହାଣ୍ଡି-ବଲାଙ୍ଗିରର କୁରୁସୁଦ, ଯାଜପୁରର ଯୋକଡ଼ିଆ, ବଲାଙ୍ଗୀର-କଳାହାଣ୍ଡିର ପଥରଲା, ବଲାଙ୍ଗୀରର ତୁସ୍ତାପାଲି (ଲୋୟର ଲାଣ୍ଡ) ଓ ସୋନପୁର-ବୌଦ୍ଧର ଗୋଧନେଶ୍ୱରଠାରେ ଚଳିତ ବର୍ଷ ଆଉ ୧୬ଟି In-stream Storage Structure ନିର୍ମାଣ କରାଯାଉଛି । ଆଗାମୀ ଆର୍ଥିକ ବର୍ଷରେ ମୋଟ

୨୦ଟି In-streamStorage Structure ନିର୍ମାଣ କରିବାକୁ ପ୍ରସ୍ତାବ ରହିଛି । ଏଥି ମଧ୍ୟରେ କନ୍ଧମାଳର ଖଡାଗୋଠାରେ ଉକ୍ତ ଅଞ୍ଚଳର ଦୀର୍ଘଦିନର ଆବଶ୍ୟକତାକୁ ପୂରଣ କରିବା ପାଇଁ ଗୋଟିଏ In-stream Storage Structureର ନିର୍ମାଣ ଅନ୍ତର୍ଭୁକ୍ତ । ଏଥିପାଇଁ ବଜେଟରେ ୮ ଶହ ୫୪ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

୩୦. ଏପର୍ଯ୍ୟନ୍ତ ଜଳସେଚନ ସୁବିଧା ପହଞ୍ଚି ପାରି ନଥିବା ରାଜ୍ୟର ଉପରମୁଣ୍ଡ ଅଞ୍ଚଳର ଆବଶ୍ୟକତାକୁ ପୂରଣ କରିବା ନିମନ୍ତେ ଆମ ସରକାର ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ଯୋଜନା ଆରମ୍ଭ କରିଛନ୍ତି । ଏହି ଯୋଜନାରେ ୨ ଶହ ୮ଟି ପ୍ରକଳ୍ପ ସମ୍ପୂର୍ଣ୍ଣ ହୋଇଛି । ଦ୍ୱିତୀୟ ପର୍ଯ୍ୟାୟରେ ୫ ବର୍ଷ ମଧ୍ୟରେ ୧୦ ହଜାର ୭ ଶହ ୫୯ କୋଟି ଟଙ୍କା ବ୍ୟୟ ଅଟକଳରେ ୧ ଶହ ୭୦ଟି ନୂତନ ପ୍ରକଳ୍ପ ହାତକୁ ନିଆଯାଇଛି, ଯାହାକି ଅତିରିକ୍ତ ୨ ଲକ୍ଷ ୬୩ ହଜାର ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦେବ । ଏହି ଯୋଜନାରେ ୫ ଶହ କୋଟି ଟଙ୍କାର ପ୍ରସ୍ତାବ ରହିଛି ।

୩୧. ଆମ ସରକାରଙ୍କ ଗଭୀର ନଳକୂପ ଓ ଗୋଷ୍ଠୀ ଉଠା ଜଳସେଚନ କାର୍ଯ୍ୟକ୍ରମ ପ୍ରତି ବରଗଡ଼, ବଲାଙ୍ଗୀର, କଳାହାଣ୍ଡି ଆଦି ଜିଲ୍ଲାର ୧୬ ଲକ୍ଷରୁ ଅଧିକ ଚାଷୀ ପ୍ରବଳ ଉତ୍ସାହ ପ୍ରଦର୍ଶନ କରିଛନ୍ତି । ଏହି ଯୋଜନାରେ ୧ ଲକ୍ଷରୁ ଅଧିକ ଗଭୀର ନଳକୂପ ଓ ପ୍ରାୟ ୩୫ ହଜାର ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ସମ୍ପୂର୍ଣ୍ଣ ହୋଇଛି । ଏହି ସଫଳତାକୁ ଦୃଷ୍ଟିରେ ରଖି ଆମ ସରକାର ୨୦୨୫-୨୬ ସୁଦ୍ଧା ଅତିରିକ୍ତ ୧ ଲକ୍ଷ ଗଭୀର ନଳକୂପ ସ୍ଥାପନ ପାଇଁ ୪ ହଜାର ୧ ଶହ ୯୮ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ୨୦୨୩-୨୪ରେ ଏହି ଯୋଜନା ଅଧୀନରେ ୨୦ ହଜାର ଗଭୀର ନଳକୂପ ପ୍ରତିଷ୍ଠା ନିମନ୍ତେ ୩ ଶହ କୋଟି ଟଙ୍କାର ପ୍ରାରମ୍ଭିକ ବ୍ୟୟବରାଦ କରାଯାଇଛି । ୨୦୨୩-୨୪ ଆର୍ଥିକ ବର୍ଷରେ ବିଜୁ କୃଷକ ବିକାଶ ଯୋଜନା (BKVY) ଅଧୀନରେ ୧ ହଜାର ୫ ଶହଟି ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ହାତକୁ ନେବା ପାଇଁ ୪ ଶହ କୋଟି ଟଙ୍କାର ପ୍ରସ୍ତାବ ରହିଛି ।

୩୨. ଏହି ପବିତ୍ର ଗୃହର ସଦସ୍ୟମାନଙ୍କର ଉଦ୍‌ବେଗକୁ ଦୃଷ୍ଟିରେ ରଖି, ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ବୈଷୟିକ ଦୃଷ୍ଟିରୁ ପୁନରୁଦ୍ଧାର ସମ୍ଭବ ହେଉଥିବା ଅଚଳ ଉଠା ଜଳସେଚନ ପଏଣ୍ଟଗୁଡ଼ିକର ପୁନରୁଦ୍ଧାର କାର୍ଯ୍ୟ ହାତକୁ ନିଆଯିବ । ଏହି କାର୍ଯ୍ୟକ୍ରମରେ ଅଧିକରୁ ଅଧିକ ସଂଖ୍ୟକ ଅଚଳ ଉଠା ଜଳସେଚନ ପ୍ରକଳ୍ପ (LIP)କୁ ସାମିଲ କରାଯିବ । ୨୦୨୩-୨୪ରେ ଅଚଳ ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକର ପୁନରୁଦ୍ଧାର ପାଇଁ ୧ ଶହ ୯୧ କୋଟି ଟଙ୍କାର ପ୍ରସ୍ତାବ ରହିଛି ।

୩୩. ଆଗାମୀ ପାଞ୍ଚ ବର୍ଷରେ ରାଜ୍ୟବାସୀଙ୍କ ବଢିଚାଲିଥିବା ଆବଶ୍ୟକତାକୁ ପୂରଣ କରିବା ପାଇଁ ଜଳ ଭିତ୍ତିଭୂମି ସୃଷ୍ଟି ନିମନ୍ତେ ଆମ ସରକାର ପ୍ରାୟ ୭୫ ହଜାର କୋଟି ଟଙ୍କା ବିନିଯୋଗ କରିବାକୁ ପ୍ରସ୍ତାବ ରଖୁଛନ୍ତି । ଏହି କାର୍ଯ୍ୟକ୍ରମ ଅଧୀନରେ ନବରଙ୍ଗପୁର ଜିଲ୍ଲାର ତେନ୍ତୁଳିଖୁଣ୍ଟି, ନନ୍ଦହାଣ୍ଡି ଓ ନବରଙ୍ଗପୁର ବ୍ଲକର ନବରଙ୍ଗପୁର ଉଠା ଜଳସେଚନ ପ୍ରକଳ୍ପ ବଲାଙ୍ଗୀର ଜିଲ୍ଲାରେ ଉପର ଲାଣ୍ଠ ଜଳସେଚନ ପ୍ରକଳ୍ପ ନୟାଗଡ଼ ଜିଲ୍ଲାର ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା ଓଡ଼ଗାଁ ଓ ନୂଆଗାଁ ବ୍ଲକର ୨୩ ହଜାର ୩ଶହ ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦେବା ପାଇଁ ବୃତଙ୍ଗ ଜଳସେଚନ ପ୍ରକଳ୍ପ ଅନୁଗୁଳ ଜିଲ୍ଲାର ପାଲଲହଡ଼ା କଣିହା ଓ ତେଲକୋଇ ବ୍ଲକର ୯ ହଜାର ୯ଶହ ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦେବା ପାଇଁ ସମାକୋଇ ବ୍ୟାରେଜ ପ୍ରକଳ୍ପ ଗଞ୍ଜାମରେ ୩ ହଜାର ୨ ଶହ ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦେବା ପାଇଁ ପିପଳପଙ୍କ ଜଳସେଚନ ପ୍ରକଳ୍ପ ଏବଂ ମୟୂରଭଞ୍ଜ ଜିଲ୍ଲାରେ ୬ ହଜାର ୯ ଶହ ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦେବା ପାଇଁ ଖଇରିବନ୍ଧନ ଜଳସେଚନ ପ୍ରକଳ୍ପ କାର୍ଯ୍ୟ ଆରମ୍ଭ କରିବା ପାଇଁ ପ୍ରସ୍ତାବ ରହିଛି ।

୩୪. ଆହୁରି ମଧ୍ୟ, ପ୍ରତିଶ୍ରୁତି ମୁତାବକ ସରକାର କଳାହାଣ୍ଡିର ସାନ୍ଦୁଲ, ମୟୂରଭଞ୍ଜର ସୋନୋ, ବାଲେଶ୍ୱରର ବାଙ୍କତିରା ଓ ନବରଙ୍ଗପୁରର ତୁରୀଗୁଣ୍ଡାଟ ଭଳି ନୂତନ ମଧ୍ୟମ ଜଳସେଚନ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ପ୍ରୟାସ ଜାରି ରଖିବେ ।

୩୫. ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା (MATY) ଅଧୀନରେ ଛୋଟ ନଦୀ ଓ ନାଳ ଉପରେ ୧୫ ହଜାରରୁ ଅଧିକ ଆଡ଼ିବନ୍ଧ/ଚେକ୍ ଡ୍ୟାମ୍ ନିର୍ମାଣ ସମ୍ପୂର୍ଣ୍ଣ ହୋଇଛି । ଏହି ଯୋଜନାର ଦ୍ୱିତୀୟ ସଂସ୍କରଣରେ ଅତିରିକ୍ତ ୧୨ ଶହ ୮୦ଟି ଚେକ୍ ଡ୍ୟାମ୍ ନିର୍ମାଣର ପ୍ରସ୍ତାବ ରହିଛି । ଏଥି ମଧ୍ୟରୁ ଚଳିତ ବର୍ଷ ୪ ଶହ ୫୦ଟି ଚେକ୍ ଡ୍ୟାମ୍ ସମ୍ପୂର୍ଣ୍ଣ ହେବ ଏବଂ ଆଗାମୀ ଆର୍ଥିକ ବର୍ଷରେ ଆହୁରି ୪ ଶହ ୫୦ଟି ଚେକ୍ ଡ୍ୟାମ୍ ନିର୍ମାଣ କରିବା ପାଇଁ ୧ ଶହ ୮୧ କୋଟି ଟଙ୍କାର ପ୍ରସ୍ତାବ ରହିଛି ।

୩୬. ମୁଖ୍ୟମନ୍ତ୍ରୀ ବାତ୍ୟା ପ୍ରତିରୋଧୀ ଲୁଣି ବନ୍ଧ ପ୍ରକଳ୍ପ (Mukya Mantri Cyclone Resilient Saline Embankment Project)କୁ ସରକାର ଅନୁମୋଦନ କରିଛନ୍ତି । ଏହି ଯୋଜନାରେ ଚେନ୍ନାଇସ୍ଥିତ ଜାତୀୟ ମହାସାଗର ପ୍ରଯୁକ୍ତିବିଦ୍ୟା ପ୍ରତିଷ୍ଠାନ (NIOT)ର ବୈଷୟିକ ସହାୟତାରେ ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା ଓ ପୁରୀ ଜିଲ୍ଲାରେ ପ୍ରାୟ ୨ ଶହ କିଲୋମିଟରର ଲୁଣି ବନ୍ଧ/Saline Embankmentକୁ ସୁଦୃଢ କରାଯିବ । ସମ୍ବେଦନଶୀଳ ଅଞ୍ଚଳରେ ବନ୍ୟା ନିୟନ୍ତ୍ରଣ ବନ୍ଧକୁ ସୁଦୃଢ଼ କରିବା ସହ ଜଳ ନିଷ୍କାସନର ଉନ୍ନତିକରଣ ପାଇଁ ବଜେଟରେ ୯ ଶହ ୬୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

୩୭. ଆମ ସରକାରଙ୍କ Canal Lining and System Rehabilitation Programme (CLSRP) ଯୋଜନା ଅଧୀନରେ ବରଗଡ଼ ଓ ସମ୍ବଲପୁର ଜିଲ୍ଲାର ବରଗଡ଼ ଓ ଶାସନ କେନାଲର ଲାଇନିଂ, କଳାହାଣ୍ଡି ଜିଲ୍ଲାର ଉପର ଇନ୍ଦ୍ରାବତୀ ଡାହାଣ କେନାଲ ତଥା ଅନ୍ୟ ପ୍ରମୁଖ କେନାଲ ଲାଇନିଂ କାର୍ଯ୍ୟ କରାଯିବ । ଏଥିପାଇଁ ବଜେଟ୍‌ରେ ୨ ଶହ ୭୦ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ସେହିପରି ଜଳସେଚନ ପ୍ରକଳ୍ପଗୁଡିକର ଆଧୁନିକୀକରଣ ପାଇଁ ନବକୃଷ୍ଣ ଚୌଧୁରୀ ସେଚ ଉନ୍ନୟନ ଯୋଜନାରେ ୧ ଶହ ୨୫ କୋଟି ଟଙ୍କାର ବ୍ୟୟ ବରାଦ ରହିଛି ।

୩୮. ସରକାରଙ୍କ ୫-ଟି ନୀତି ଅନୁଯାୟୀ ଏକ ରୂପାନ୍ତରଣକାରୀ ଲକ୍ଷ୍ୟ ଭାବେ ଜଳ ସମ୍ପଦର ଉପଯୁକ୍ତ ଆକଳନ, ବନ୍ୟା ପୂର୍ବାନୁମାନ, ଜଳସେଚନ ପରିଚାଳନା ଏବଂ ପ୍ରକଳ୍ପ ତଦାରଖ କାମରେ ବୈଷୟିକ ଜ୍ଞାନକୌଶଳର ଉପଯୋଗ ପାଇଁ GO-WATER ନାମକ ଏକ Water ERPର ବିକାଶ ପାଇଁ ପ୍ରସ୍ତାବ ରହିଛି । ଏଥି ନିମନ୍ତେ ୩୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**କୃଷିକ୍ଷେତ୍ର ଋଣ**

୩୯. ଆମ ସରକାର ନାବାର୍ଡ ସହଭାଗିତାରେ ଭାଗଚାଷୀ ବିଶେଷ କରି ଭୂମିହୀନ କୃଷକମାନଙ୍କୁ ଆନୁଷ୍ଠାନିକ ଋଣ ପ୍ରଦାନ କରିବା ପାଇଁ ''ବଳରାମ'' ଯୋଜନା ଆରମ୍ଭ କରିଛନ୍ତି । ଏହି ଯୋଜନାରେ ୧ ଲକ୍ଷ Joint Liability Groups (JLGs) ମାଧ୍ୟମରେ ୫ ଲକ୍ଷ କୃଷକଙ୍କୁ ଅନ୍ତର୍ଭୁକ୍ତ କରିବାର ଲକ୍ଷ୍ୟ ରହିଛି । ଏହି ଯୋଜନାରେ ୫୬ ହଜାର ୩ ଶହ ୧୧ Joint Liability Groups ଗଠନ କରାଯାଇ ୧୨ ହଜାର ୩ ଶହ ୯୪ କୃଷକମାନଙ୍କୁ ୯୮ କୋଟି ଟଙ୍କା ଋଣ ପ୍ରଦାନ କରାଯାଇଛି ।

୪୦. କାଳିଆ ଯୋଜନା ଅଧୀନରେ ଚାଷୀମାନଙ୍କୁ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ବିନା ସୁଧରେ କୃଷି ଋଣ ଉପଲବ୍ଧ କରାଇବା ପାଇଁ ଆମ ସରକାର ପ୍ରତିଶ୍ରୁତିବଦ୍ଧ । ଆମ ପ୍ରତିଶ୍ରୁତି ମୁତାବକ ଚାଷୀମାନଙ୍କୁ ୫୦ ହଜାର ଟଙ୍କାରୁ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ ରାଶି ଶତକଡା ୨ ପ୍ରତିଶତ ରିହାତି ସୁଧରେ ଯୋଗାଉଛୁ । ମୁଁ ଚାଷୀମାନଙ୍କ ପାଇଁ ସୁଧ ରିହାତି (Interest Subvention) ଯୋଜନାରେ ୮ ଶହ ୩୬ କୋଟି ଟଙ୍କା ବ୍ୟୟ ବରାଦ ପ୍ରସ୍ତାବ ରଖୁଛି ।

୪୧. ସମବାୟ ସଂସ୍ଥାଗୁଡ଼ିକ ଦ୍ୱାରା ଆମ ରାଜ୍ୟରେ ଶତକଡ଼ା ୬୦ ଭାଗ କୃଷି ଋଣ ଉପଲବ୍ଧ କରାଯାଉଥିବା ବେଳେ ସମଗ୍ର ଦେଶରେ ଏହି ହାର ମାତ୍ର ୧୭ ପ୍ରତିଶତ ଅଟେ । ମୁଁ ସମବାୟ ସଂସ୍ଥାମାନଙ୍କୁ ଆର୍ଥିକ ସହାୟତା ନିମନ୍ତେ ୩୦ କୋଟି ଟଙ୍କା ଏବଂ ସମବାୟ ବ୍ୟାଙ୍କମାନଙ୍କ ସାଧାରଣ ଅଂଶ ସହାୟତା (equity support) ପାଇଁ ୧ ଶହ ୫୦ କୋଟି ଟଙ୍କା ବ୍ୟୟ ବରାଦର ପ୍ରସ୍ତାବ ରଖୁଅଛି ।

୪୨. ସେହିପରି, ରାଜ୍ୟରେ ଅଣଧାନ ଶସ୍ୟ କ୍ରୟ ନିମନ୍ତେ ଓଡ଼ିଶା ରାଜ୍ୟ ସମବାୟ ମାର୍କେଟିଂ ଫେଡେରେସନ୍ ଲିମିଟେଡ୍‌କୁ ୧ ଶହ କୋଟି ଟଙ୍କାର କର୍ପସ୍ ପାଣ୍ଠି ପ୍ରଦାନ କରାଯାଇଛି । ମୁଁ ସାର ଏବଂ ବିହନ କିଣା ପାଇଁ ସୁଧମୁକ୍ତ ଋଣ ପ୍ରଦାନ ବାବଦକୁ ୨ ଶହ କୋଟି ଟଙ୍କା ବ୍ୟୟ ବରାଦ ପ୍ରସ୍ତାବ ରଖୁଛି ।

୪୩. ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ଏବଂ ପୋକ ଜନିତ ଫସଲ ହାନି କ୍ଷେତ୍ରରେ ବୀମା ଅନ୍ତର୍ଭୁକ୍ତ କରିବା ନିମନ୍ତେ ପ୍ରଧାନମନ୍ତ୍ରୀ ଫସଲ ବୀମା ଯୋଜନା କାର୍ଯ୍ୟକାରୀ ହେଉଛି । ଚାଷୀମାନଙ୍କୁ ସେମାନଙ୍କ ପ୍ରାପ୍ୟ ପ୍ରଦାନ କରିବା ନିମନ୍ତେ ବଜେଟରେ ୬ ଶହ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**ଅମଳ ପରବର୍ତ୍ତୀ ପରିଚାଳନା**

୪୪. ଅଣଧାନ ଶସ୍ୟ ଯଥା ମୁଗ, ବିରି, ହରଡ, ଚିନାବାଦାମ ଏବଂ ସୂର୍ଯ୍ୟମୁଖୀ ଇତ୍ୟାଦି ଫସଲର ଉଚିତ ମୂଲ୍ୟ ଚାଷୀମାନଙ୍କୁ ଯୋଗାଇବା ପାଇଁ ରାଜ୍ୟରେ NAFEDର ସହଭାଗିତାରେ ମୂଲ୍ୟ ସମର୍ଥନ ପ୍ରଣାଳୀ (Price Support System) ଆରମ୍ଭ ହୋଇଅଛି । ଡାଲି ଓ ତୈଳ ଜାତୀୟ ଶସ୍ୟ ସଂଗ୍ରହ ପାଇଁ ଚାଷୀମାନଙ୍କର ପଞ୍ଜୀକରଣ ନିମନ୍ତେ e-Samridhi ପୋର୍ଟାଲ୍ ଆରମ୍ଭ ହୋଇଛି ।

୪୫. ଓଡ଼ିଶା ମିଲେଟ୍ ମିଶନ ଆମ ସରକାରଙ୍କ ଏକ ଅଗ୍ରଣୀ ପଦକ୍ଷେପ । ରାଜ୍ୟ ସରକାର ୨୦୧୭ ମସିହାରେ ଜଳବାୟୁ ସହନଶୀଳ ଏବଂ ପୋଷକ ତତ୍ତ୍ୱ ସମୃଦ୍ଧ ମିଲେଟ୍ ଫସଲର ପ୍ରଚାର ପ୍ରସାର ପାଇଁ ଏହି ମିଶନ ଆରମ୍ଭ କରିଥିଲେ । ୨୦୨୨-୨୩ ବର୍ଷରେ ମିଶନ ମୋଡରେ ମିଲେଟ୍‌ର ପ୍ରୋତ୍ସାହନ ପାଇଁ ଆମ ରାଜ୍ୟର ୧୯ଟି ଜିଲ୍ଲାର ୧ ଶହ ୪୩ଟି ବ୍ଲକରେ ଏହି ସ୍ୱତନ୍ତ୍ର କାର୍ଯ୍ୟକ୍ରମକୁ ପ୍ରଚଳନ କରାଯାଇଅଛି । ଆଗାମୀ ୨୦୨୩-୨୪ ବର୍ଷରେ ଏହି କାର୍ଯ୍ୟକ୍ରମକୁ ରାଜ୍ୟର ସମସ୍ତ ୩୦ଟି ଜିଲ୍ଲାର ୧ ଶହ ୭୭ଟି ବ୍ଲକରେ କାର୍ଯ୍ୟକାରୀ କରିବା ନିମନ୍ତେ ଯୋଜନା ରହିଛି । ମିଳିତ ଜାତିସଂଘ ୨୦୨୩ ବର୍ଷକୁ ଆନ୍ତର୍ଜାତୀୟ ମିଲେଟ୍ ବର୍ଷ ଭାବରେ ଘୋଷଣା କରିଛନ୍ତି । ମାଣ୍ଡିଆ ଓ ବାଜରା ଜାତୀୟ ଫସଲର (Millet) ପ୍ରୋତ୍ସାହନ ପାଇଁ ଓଡ଼ିଶା ମଡେଲକୁ ଅନ୍ୟ ରାଜ୍ୟମାନେ ବ୍ୟାପକ ସ୍ୱୀକୃତି ପ୍ରଦାନ କରିବା ସହ ଏହି ମଡେଲକୁ ଗ୍ରହଣ କରିଛନ୍ତି । ୨୦୨୩-୨୪ ଆର୍ଥିକ ବର୍ଷରେ ଏହି ମିଶନ ନିମନ୍ତେ ୪ ଶହ ୯୭ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**ଆନୁଷଙ୍ଗିକ କାର୍ଯ୍ୟକ୍ରମ**

୪୬. ବିଗତ ଦୁଇ ଦଶନ୍ଧିରେ ପଶୁସମ୍ପଦ ଏବଂ ମତ୍ସ୍ୟ କ୍ଷେତ୍ର କୃଷକମାନଙ୍କ ପର୍ଯ୍ୟାପ୍ତ ଆୟ ବୃଦ୍ଧିରେ ପ୍ରମୁଖ ଭୂମିକା ଗ୍ରହଣ କରିପାରିଛି । ଆମ ସରକାର ଆନୁଷଙ୍ଗିକ କ୍ଷେତ୍ରକୁ କୃଷକ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ କୃଷି ଉଦ୍ୟୋଗୀମାନଙ୍କର ବିକାଶ ଦିଗରେ ମୁଖ୍ୟ ସଞ୍ଚାଳକ ଭାବେ ଚିହ୍ନଟ କରିଛନ୍ତି । ମତ୍ସ୍ୟଚାଷ ଓ ପଶୁପାଳନ କ୍ଷେତ୍ରରେ ବ୍ୟୟ ବରାଦକୁ ବୃଦ୍ଧି କରି ୧ ହଜାର ୭ ଶହ ୬୯ କୋଟି ଟଙ୍କାର ପ୍ରସ୍ତାବ ରଖୁଛୁ ।

**ମତ୍ସ୍ୟଚାଷ**

୪୭. ମତ୍ସ୍ୟପାଳନ ଓ aquaculture କୃଷକର୍ମାନଙ୍କର ଆୟ ବୃଦ୍ଧି, ଜୀବିକା ନିର୍ବାହ, ରୋଜଗାର ସୃଷ୍ଟି, ଖାଦ୍ୟ ନିରାପତ୍ତା ପ୍ରଦାନ ଏବଂ ରାଜ୍ୟର ରପ୍ତାନି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ମତ୍ସ୍ୟ ଉତ୍ପାଦନ ଓ ଉତ୍ପାଦକତା ବୃଦ୍ଧି ଲକ୍ଷ୍ୟରେ ଆମ ସରକାର ମତ୍ସ୍ୟଚାଷକୁ ବହୁଳ ମାତ୍ରାରେ ପ୍ରୋତ୍ସାହିତ କରୁଛନ୍ତି । ସଘନ ଓ ଆଭ୍ୟନ୍ତରୀଣ ମାଛଚାଷର ଉନ୍ନତି ନିମନ୍ତେ ୧ ଶହ ୪୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

୪୮. ମୁଖ୍ୟମନ୍ତ୍ରୀ ମତ୍ସ୍ୟଜୀବୀ କଲ୍ୟାଣ ଯୋଜନା ଅନ୍ତର୍ଗତ ୧୭ଟି component ପାଇଁ ବଜେଟରେ ମୋଟ ୨ ଶହ ୧୦ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରହିଛି । ଏହାଦ୍ୱାରା ୧୧ ହଜାର ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ସମେତ ୫୦ ହଜାର ମତ୍ସ୍ୟଜୀବୀ ପ୍ରତ୍ୟକ୍ଷ ଭାବରେ ଉପକୃତ ହେବା ସହ ୧ ଲକ୍ଷରୁ ଅଧିକ ମତ୍ସ୍ୟଜୀବୀଙ୍କ ପାଇଁ ପରୋକ୍ଷ ନିଯୁକ୍ତି ସୃଷ୍ଟିର ଲକ୍ଷ୍ୟ ରଖାଯାଇଛି ।

୪୯. ମତ୍ସ୍ୟ ଅବତରଣ କେନ୍ଦ୍ରର ଆଧୁନିକୀକରଣ ଏବଂ ଅନ୍ୟାନ୍ୟ ଭିତ୍ତିଭୂମିମାନଙ୍କର ଉନ୍ନତିକରଣ ନିମନ୍ତେ ବଜେଟ୍‌ରେ ୨ ଶହ ୨୦ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

୫୦. ଅସ୍ତରଙ୍ଗର ଦେବୀ ନଦୀ ଏବଂ ପାରାଦ୍ୱୀପର ମହାନଦୀ ମୁହାଣରୁ ମାଟି ଖନନ କରି ବର୍ଷ ସାରା ନୌକା ଚଳାଚଳ ଯୋଗ୍ୟ କରିବା ପାଇଁ ୨୦ କୋଟି ଟଙ୍କାର ବ୍ୟୟ ବରାଦ ରହିଛି ।

୫୧. ଆମେ ମତ୍ସ୍ୟଚାଷର ସମନ୍ୱିତ ଉନ୍ନୟନ ଓ ପରିଚାଳନା ପାଇଁ ନୀଳ ବିପ୍ଳବ (Blue Revolution) ଯୋଜନା ଅଧୀନରେ ୧ ଶହ ୮୦ କୋଟି ଟଙ୍କାର ବ୍ୟୟବରାଦ କରିଛୁ ।

**ପଶୁପାଳନ ଓ ଗୋପାଳନ**

୫୨. ପଶୁ ଓ ଗୋପାଳନ ମାଧ୍ୟମରେ ଗ୍ରାମାଞ୍ଚଳରେ ଆତ୍ମନିଯୁକ୍ତି ଓ ନାରୀ ସଶକ୍ତିକରଣ ପାଇଁ ପର୍ଯ୍ୟାପ୍ତ ସମ୍ଭାବନା ରହିଛି ।

୫୩. ୨୦୨୩-୨୪ ଆର୍ଥିକ ବର୍ଷରେ ନୂତନ ବ୍ରୟଲର ଫାର୍ମ, କେଜ୍ ପଦ୍ଧତିରେ ଲେୟାର କୁକୁଡ଼ା ଫାର୍ମ, ବତକ ଫାର୍ମ, ଅଗଣାରେ କୁକୁଡ଼ା ପାଳନ ୟୁନିଟ୍ ଏବଂ ମିନି କୁକୁଡ଼ା ଖାଦ୍ୟ ୟୁନିଟ୍ ପ୍ରତିଷ୍ଠା ପାଇଁ ସହାୟତା ପ୍ରଦାନ ନିମନ୍ତେ କୁକୁଡ଼ା ଚାଷ ବିକାଶ ଅଧୀନରେ ୧ ଶହ ୫୭ କୋଟି ଟଙ୍କାର ବ୍ୟୟବରାଦ କରଯାଇଛି ।

୫୪. ୩ ଶହରୁ ଅଧିକ କୃଷକଙ୍କୁ small sheep goat unit ଏବଂ ୨ ହଜାର ୨ ଶହରୁ ଅଧିକ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ semi commercial Goat Units ପ୍ରତିଷ୍ଠା ନିମିତ୍ତ ସହଯୋଗ ପ୍ରଦାନ ପାଇଁ ୨୦୨୩-୨୪ ଆର୍ଥିକ ବର୍ଷରେ ୨୯ କୋଟି ଟଙ୍କାର ବ୍ୟବସ୍ଥା ରହିଛି । ଆଗାମୀ ଆର୍ଥିକ ବର୍ଷରେ ରାଜ୍ୟରେ ଘୁଷୁରି ଚାଷର ବିକାଶ ନିମିତ୍ତ pig unit ସ୍ଥାପନ ପାଇଁ ୧ ଶହ ୩୦ ଜଣ କୃଷକଙ୍କୁ ସହାୟତା ପ୍ରଦାନ କରାଯିବ । ଏଥି ନିମନ୍ତେ ବଜେଟରେ ୨ କୋଟି ଟଙ୍କାର ପ୍ରସ୍ତାବ ରହିଛି ।

୫୫. କାର୍ଯ୍ୟଶୀଳ ଗୋଶାଳାର ରକ୍ଷଣାବେକ୍ଷଣ ତଥା ନୂତନ ଗୋଶାଳାର ନିର୍ମାଣକୁ ଆର୍ଥିକ ସହାୟତା ପ୍ରଦାନ ନିମନ୍ତେ ୨୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

୫୬. ରାଷ୍ଟ୍ରୀୟ ପଶୁଧନ ବିକାଶ ଯୋଜନାରେ ଗୋପାଳନ ଉନ୍ନୟନ ଓ ପଶୁଧନ ପରିଚାଳନା ପାଇଁ ୧ ଶହ ୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

୫୭. ଆମେ ୨୦୨୩-୨୪ ଆର୍ଥିକ ବର୍ଷରେ ପଶୁସମ୍ପଦ ସ୍ୱାସ୍ଥ୍ୟ ଏବଂ ରୋଗ ନିୟନ୍ତ୍ରଣ (Livestock Health Disease Control) କାର୍ଯ୍ୟକ୍ରମ ଅଧୀନରେ ୨ ଶହ ୬୭ କୋଟି ଟଙ୍କାର ପ୍ରସ୍ତାବ ରଖିଛୁ ।

୫୮. କୃତ୍ରିମ ଗର୍ଭଧାରଣ କାର୍ଯ୍ୟକ୍ରମ ମାଧ୍ୟମରେ ଗୋରୁମାନଙ୍କର ଜେନେଟିକ୍ ଗୁଣବତ୍ତାକୁ ଉନ୍ନତ କରି ଅଧିକ ଦୁଗ୍ଧ ଉତ୍ପାଦନ ନିମନ୍ତେ ବଜେଟରେ ୧୮ କୋଟି ଟଙ୍କାର ପ୍ରସ୍ତାବ ଦିଆଯାଇଛି ।

୫୯. ୨୦୨୩-୨୪ ଆର୍ଥିକ ବର୍ଷରେ ପଶୁ ସେବା ତଥା ଆବଶ୍ୟକୀୟ ଭିତ୍ତିଭୂମି ପ୍ରଦାନ ନିମନ୍ତେ ୧ ଶହ ୯୪ କୋଟି ଟଙ୍କର ବ୍ୟୟ ବରାଦ କରାଯାଇଛି । ଏହାଦ୍ୱାରା ପଶୁ ଚିକିତ୍ସାଳୟଗୁଡିକର ସୁଦୃଢ଼ୀକରଣ ଏବଂ ଆଧୁନିକୀକରଣ କରାଯାଇପାରିବ ।

୬୦. ଆମେ ୨୦୧୩-୧୪ ଆର୍ଥିକ ବର୍ଷରେ ପ୍ରଥମ ଥର ପାଇଁ ୭ ହଜାର ୧ ଶହ ୬୨ କୋଟି ଟଙ୍କା ବ୍ୟୟ ଅଟକଳର ସ୍ୱତନ୍ତ୍ର କୃଷି ବଜେଟ୍ ଆଗତ କରିଥିଲୁ । ଆମ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ବଳିଷ୍ଠ ନେତୃତ୍ୱରେ ମୁଁ ୨୦୨୩-୨୪ ଆର୍ଥିକ ବର୍ଷ ପାଇଁ କୃଷି ବଜେଟ୍ ନିମନ୍ତେ ୨୪ ହଜାର ୮ ଶହ ୨୯ କୋଟି ଟଙ୍କାର ବ୍ୟୟ ବରାଦ ପ୍ରସ୍ତାବ ଆଗତ କରୁଛି ।

୬୧. କୃଷି ଗ୍ରାମୀଣ ସମୃଦ୍ଧିର ଏକ ମୌଳିକ ଉତ୍ସ । କୃଷି କେବଳ ଜୀବିକା ନିର୍ବାହର ମାଧ୍ୟମ ନ ହୋଇ ଅଭିବୃଦ୍ଧି ଓ ଦାରିଦ୍ର୍ୟ ଦୂରୀକରଣର ଏକ ପ୍ରମୁଖ ଚାଳକ ହେବା ଆବଶ୍ୟକ । ତେଣୁ ଫସଲ ବିବିଧତା ଓ ମୂଲ୍ୟଯୁକ୍ତ କୃଷି ଅର୍ଥନୀତି ଉପରେ ଗୁରୁତ୍ୱ ପ୍ରଦାନ କରାଯିବ । ଆମର ପ୍ରସିଦ୍ଧ ସ୍ୱଭାବ କବି ଗଙ୍ଗାଧର ମେହେର ନିମ୍ନୋକ୍ତ ଶବ୍ଦରେ କୃଷି ଓ କୃଷକର ଜୟଗାନ କରିଛନ୍ତି ।

''କୃଷି ସିନା ସଂସାରେ ସଭ୍ୟତାର ମୂଳ
କୃଷି ଏକା ସକଳ ଜୀବିକାର ଚୂଳ ।''

ଏହି ଉକ୍ତି ସହ ମୁଁ କୃଷି ବଜେଟ୍‌କୁ ଆମ ରାଜ୍ୟର ଜନସାଧାରଣ ଏବଂ କୃଷକମାନଙ୍କ ସାମୂହିକ ଅଭିବୃଦ୍ଧି, ସମୃଦ୍ଧି ଓ ବିକାଶ ପାଇଁ ଉତ୍ସର୍ଗ କରୁଛି ।



# ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ ବଜେଟ ୨୦୨୩–୨୪

ଓଡିଶାର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ଦୂରଦୃଷ୍ଟିସମ୍ପନ୍ନ ନେତୃତ୍ୱରେ ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗରେ ଅବିଶ୍ୱସନୀୟ ରୂପାନ୍ତରିକରଣ ପଦକ୍ଷେପଗୁଡିକ ନିଆଯାଇଛି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୫–ଟି ଚାଟର୍ ଏବଂ ମୋ ସରକାର ପ୍ରବର୍ତ୍ତନ ପରେ ରାଜସ୍ୱ ବିଭାଗ ନାଗରିକମାନଙ୍କ ବ୍ୟକ୍ତିଗତ ଉପସ୍ଥିତି ହ୍ରାସ କରିବା ତଥା ରାଜସ୍ୱ କ୍ଷେତ୍ର କାର୍ଯ୍ୟାଳୟ ପରିଦର୍ଶନ କରିବାର ଆବଶ୍ୟକତାକୁ କମ୍ କରିବା ପାଇଁ ଏକାଧିକ ପଦକ୍ଷେପ ନେଇଛି । ବିଭାଗ ପ୍ରଦାନ କରୁଥିବା ବହୁବିଧ ସେବାମାନଙ୍କ ମଧ୍ୟରୁ କେବଳ ବୈଧାନିକ ଆବଶ୍ୟକତାକୁ ଛାଡି ଅଧିକାଂଶ ସେବା ସମ୍ପୂର୍ଣ୍ଣ ଭାବେ ଅନଲାଇନରେ ଉପଲବ୍ଧ ଅଟେ ।

ଜମିଜମା ରେକର୍ଡ ସେବା କ୍ଷେତ୍ରରେ ଧାର୍ଯ୍ୟ ସମୟସୀମାକୁ ପ୍ରକ୍ରିୟା ପୁନର୍ବିନ୍ୟାସ ଏବଂ ପ୍ରଚଳିତ ନିୟମରେ ସଂଶୋଧନ ଦ୍ୱାରା ହ୍ରାସ କରାଯାଇଛି । ସେହିଭଳି, ଜାତି ଓ ବିବିଧ ପ୍ରମାଣପତ୍ରର ସେବାରେ, ORTPS ଅଧିନିୟମ ଅନୁଯାୟୀ ଥିବା ସମୟସୀମାକୁ ହ୍ରାସ କରାଯାଇଛି । ଉଦାହରଣ ସ୍ୱରୂପ, ବାସିନ୍ଦା ଏବଂ ଆୟ ପ୍ରମାଣପତ୍ରର ସମୟସୀମାକୁ ୧୫ ଦିନରୁ ୧୦ ଦିନକୁ ହ୍ରାସ କରାଯାଇଛି । ଆବେଦନ ପ୍ରକ୍ରିୟାର ପୁନର୍ବିନ୍ୟାସ, କେତେକ କ୍ଷେତ୍ରରେ ରାଜସ୍ୱ ନିରୀକ୍ଷକଙ୍କ ଅନୁସନ୍ଧାନର ଆବଶ୍ୟକତାକୁ ହ୍ରାସ ଏବଂ ଏକ ଉପଲବ୍ଧ ଅନଲାଇନ ଆବେଦନ ବ୍ୟବସ୍ଥା ଯୋଗୁଁ ବିଭିନ୍ନ ବିବିଧ ଏବଂ ଜାତିଗତ ପ୍ରମାଣପତ୍ରର ଶୀଘ୍ର ମିଳିବା ସମ୍ଭବ ହୋଇପାରିଛି ।

ବିନା ମୂଲ୍ୟରେ ଏବଂ ସ୍ୱ–ଘୋଷଣା ଉପରେ ଆଧାର କରି ବିବିଧ ଏବଂ ଜାତି ପ୍ରମାଣପତ୍ର ବିତରଣ କରିବାକୁ ବିଭାଗ ବିହିତ ପଦକ୍ଷେପ ନେଇଛି । ଗତ ୩ ବର୍ଷରେ ୫–ଟି ଚାର୍ଟର ପ୍ରବର୍ତ୍ତନ ପରେ ସ୍ୱ–ଘୋଷଣା ଆଧାରରେ ପ୍ରାୟ ୫୦ ଲକ୍ଷ ବାସିନ୍ଦା ଏବଂ ଆୟ ପ୍ରମାଣପତ୍ର ପ୍ରଦାନ କରାଯାଇଛି ।

ଗତ କିଛି ବର୍ଷ ମଧ୍ୟରେ ବିକ୍ରୟ / କ୍ରୟ କାରବାରର ପଞ୍ଜୀକରଣର ଗୋଟିଏ ଦିନ ଏବଂ ସାତ ଦିନ ମଧ୍ୟରେ ରେକର୍ଡସଂଖ୍ୟକ ପଟ୍ଟା ସଂଶୋଧିତ ହୋଇଛି । ୨୦୨୨ ମସିହାରେ, ପ୍ରାୟ ଦୁଇ ଲକ୍ଷ ପଟ୍ଟା ସାତଦିନ ମଧ୍ୟରେ ସଂଶୋଧନ କରାଯାଇ ସ୍ପିଡ୍ ପୋଷ୍ଟ କିମ୍ବା ରାଜସ୍ୱ ରଥ ମାଧ୍ୟମରେ ନାଗରିକଙ୍କ ନିକଟକୁ ପଠାଯାଇଛି ।

ଡିଜିଟାଲ୍ ଇଣ୍ଡିଆ ଲ୍ୟାଣ୍ଡ ରେକର୍ଡ ଆଧୁନିକୀକରଣ କାର୍ଯ୍ୟକ୍ରମର ୬ ସୂତ୍ରୀ କାର୍ଯ୍ୟକ୍ରମରେ, ଭାରତର ୭୫ ଟି ଜିଲ୍ଲା ମଧ୍ୟରେ ଓଡିଶାର ୨୦ଟି ଜିଲ୍ଲା ଏହାର ୯୯% ଭାଗରୁ ଅଧିକ ଲକ୍ଷ୍ୟ ହାସଲ କରିଛନ୍ତି, ଯେଉଁଥିପାଇଁ ୨୦ଟି ଜିଲ୍ଲାକୁ କେନ୍ଦ୍ର ସରକାର ସମ୍ମାନିତ କରିବେ ।

ନଭେମ୍ବର ୨୦୨୨ ମାସରୁ ୮୦ ଟି ତହସିଲରେ ଭର୍ଚୁଆଲ୍ କୋର୍ଟ ଆରମ୍ଭ ହୋଇଛି ଏବଂ ପ୍ରାୟ ୩,୦୦୦ ମାମଲା ଭର୍ଚୁଆଲ୍ ପ୍ଲାଟଫର୍ମ ମାଧ୍ୟମରେ ଶୁଣାଣି ପରେ ଫଇସଲା ହୋଇଛି । ଏପ୍ରିଲ୍ ୨୦୨୩ ସୁଦ୍ଧା ସମସ୍ତ ତହସିଲରେ ଭର୍ଚୁଆଲ୍ କୋର୍ଟ ଆରମ୍ଭ କରିବାକୁ ସମସ୍ତ ଜିଲ୍ଲାକୁ ନିର୍ଦ୍ଦେଶ ଦିଆଯାଇଛି ।

ରାଜସ୍ୱ କ୍ଷେତ୍ର କାର୍ଯ୍ୟାଳୟର ଭିତ୍ତିଭୂମି ଏହି ବିଭାଗ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଗୁଡିକର ଭିତ୍ତିଭୂମିକୁ ମଜଭୁତ କରିବାକୁ ବଜେଟରେ୨୫୦ କୋଟି ଟଙ୍କାର ବ୍ୟବସ୍ଥା ହୋଇଛି । ରାଜସ୍ୱ କାର୍ଯ୍ୟାଳୟର ସୂଚନା ଓ ପ୍ରଯୁକ୍ତି ଭିତ୍ତିଭୂମିକୁ ମଜଭୁତ କରିବା ପାଇଁ ୫୯.୭୩ କୋଟି ଟଙ୍କା ଯୋଗାଇ ଦିଆଯାଇଛି । ରେକର୍ଡ ରୁମରେ ଆସବାବପତ୍ର ପାଇଁ ୫ କୋଟି ଟଙ୍କାର ବଜେଟ କରାଯାଇଛି ।

ସେହିଭଳି ପଞ୍ଜୀକରଣ କାର୍ଯ୍ୟାଳୟରେ ବିଭିନ୍ନ ସେବା ପାଇଁ ଇ-ପଞ୍ଜୀକରଣ ସଫ୍ଟୱେର ବ୍ୟବହାର କରାଯାଉଛି । ପଞ୍ଜୀକରଣ କାର୍ଯ୍ୟାଳୟମାନଙ୍କରେ ଅଧିକ ସ୍ୱଚ୍ଛତା ପାଇଁ ସ୍ମାର୍ଟ ସର୍ଭେଲାନ୍ସ ସିଷ୍ଟମ ପରି ପରିବର୍ତ୍ତନଶୀଳ ପଦକ୍ଷେପ ଆରମ୍ଭ କରାଯାଇଛି । ସେହିଭଳି ସୁବିଧାରେ ପଞ୍ଜୀକରଣ ପାଇଁ ପଞ୍ଜୀକରଣ କାର୍ଯ୍ୟାଳୟରେ ଅନଲାଇନ୍ ସ୍ଲଟ୍ ବୁକିଂ ବ୍ୟବସ୍ଥା ଆରମ୍ଭ କରାଯାଇଛି । ରେଜିଷ୍ଟ୍ରେସନ୍ ଅଫିସରେ ଏହି ଆଇଟି ପଦକ୍ଷେପ ନିମନ୍ତେ୨୯.୨୮ କୋଟିର ବ୍ୟୟ ଅଟକଳ କରାଯାଇଛି ।

ରାଜସ୍ୱ ବିଭାଗ ମଧ୍ୟ ବିକାଶମୂଳକ ପ୍ରକଳ୍ପଗୁଡିକର ମେରୁଦଣ୍ଡ ସଦୃଶ ଅଟେ । ଶିକ୍ଷାନୁଷ୍ଠାନ, ସ୍ୱାସ୍ଥ୍ୟ ପ୍ରତିଷ୍ଠାନ, ଧାର୍ମିକ କିମ୍ବା ସାଂସ୍କୃତିକ ଦୃଷ୍ଟିରୁ ମହତ୍ୱପୂର୍ଣ୍ଣ ସ୍ଥାନଗୁଡିକ ପାଇଁ ପର୍ଯ୍ୟାପ୍ତ ପରିମାଣର ଜମି ତ୍ୱରିତ ଗତିରେ ଆବଣ୍ଟିତ ହୋଇଛି । ପରିବେଶକୁ ବଜାୟ ରଖିବା ପାଇଁ ପ୍ରାୟ ୩୫,୦୦୦ ଏକର ଜମି କ୍ଷତିପୂରଣ ଓ ପ୍ରତିପୂରକ ବୃକ୍ଷରୋପଣ ପାଇଁ ସଂରକ୍ଷିତ କରାଯାଇଛି । ବିଭିନ୍ନ ଭିତ୍ତିଭୂମି ପ୍ରକଳ୍ପ, ବିକାଶମୂଳକ ଉଦ୍ଦେଶ୍ୟ ଏବଂ ଲୋକକଲ୍ୟାଣକାରୀ ସୁବିଧା ପାଇଁ ସରକାରୀ ଜମି ବ୍ୟବହୃତ ହୁଏ । ତେଣୁ ସରକାରୀ ଜମିର ସୁରକ୍ଷା ହେଉଛି ବିଭାଗର ଏକ ଉଚ୍ଚ ପ୍ରାଥମିକତା କ୍ଷେତ୍ର ଯେଉଁଥିରେ ୨୦ କୋଟି ଟଙ୍କା ଖର୍ଚ୍ଚ ବ୍ୟବସ୍ଥା କରାଯାଇଛି ।

ତ୍ୱରିତ ଏବଂ ସଠିକ୍ ଜମିଜମା ରେକର୍ଡ ସେବା ପାଇଁ ବିଭାଗ ହାଇ-ଟେକ୍ ସର୍ଭେକୁ ତ୍ୱରାନ୍ୱିତ କରୁଛି । ଦେବଗଡ ଜିଲ୍ଲାରେ ହାଇ-ଟେକ୍ ସର୍ଭେ ଶେଷ ହୋଇଛି ଏବଂ ଏହାକୁ ସୋନପୁର ଏବଂ ସୁନ୍ଦରଗଡ ଜିଲ୍ଲାରେ ତ୍ୱରାନ୍ୱିତ କରାଯାଉଛି ।

କୁଶଳୀ ମାନବସମ୍ବଳର ସମସ୍ୟାକୁ ହ୍ରାସ କରିବା ପାଇଁ ରାଜସ୍ୱ ବିଭାଗ , ଦକ୍ଷତା ବିକାଶ ଏବଂ ବୈଷୟିକ ଶିକ୍ଷା ବିଭାଗ ମାଧ୍ୟମରେ ଅଧିକ ଲାଇସେନ୍ସପ୍ରାପ୍ତ ସର୍ବେକ୍ଷଣକାରୀ ସୃଷ୍ଟି କରିବାକୁ ପ୍ରୟାସ କରୁଛି । ଏଥିସହ ବିଭାଗ ମାନବ ସମ୍ବଳ ନିଯୁକ୍ତି ପାଇଁ ଯୋଜନା କରୁଛି । ଏହି ନିମନ୍ତେ ଆବଶ୍ୟକ ପାଣ୍ଠି ଯୋଗାଇ ଦିଆଯାଇଛି ।

ପ୍ରତ୍ୟେକ ମାସରେ ଆପୋଷ ସହମତି ଆଧାରରେ ଜମି ଭାଗବଣ୍ଟା ମାମଲା ଓ ଉତ୍ତରାଧିକାରୀ ସୂତ୍ରରେ ପଟ୍ଟା ସଂଶୋଧନ ପାଇଁ ୧୦୦ଟି ଦାଖଲ ଖାରଜ ମାମଲା ବିଭାଗ ସମସ୍ତ ତହସିଲଦାର / ଅତିରିକ୍ତ ତହସିଲଦାରଙ୍କୁ ନିର୍ଦ୍ଦେଶ ଦେଇଛି । ସମସ୍ତ ରାଜସ୍ୱ ଅଧିକାରୀଙ୍କ ଦ୍ୱାରା କ୍ୟାମ୍ପ କୋର୍ଟ ନିୟମିତ ଭାବେ ଅନୁଷ୍ଠିତ ହୋଇଥାଏ । ଲୋକଙ୍କୁ ନାଗରିକ କୈନ୍ଦ୍ରିକ ସେବାଗୁଡିକ ବିଷୟରେ ସୂଚନା, ଶିକ୍ଷା ଏବଂ ଯୋଗାଯୋଗ ମାଧ୍ୟମରେ ସଚେତନ କରାଇବା ପାଇଁ ଆବଶ୍ୟକୀୟ ଅର୍ଥର ବ୍ୟବସ୍ଥା କରାଯାଇଛି ।

ଜିଲ୍ଲା ରାଜସ୍ୱ ଓ ବିଭିନ୍ନ ପ୍ରକଳ୍ପ ପାଇଁ ଜମି ଅଧିଗ୍ରହଣର ସମୀକ୍ଷା ମାଧ୍ୟମରେ, ଜାତୀୟ ରାଜପଥ, ରେଳବାଇ ଏବଂ ଜଳସେଚନ ନେଟ୍ୱାର୍କ ପରି ବିଭିନ୍ନ ପ୍ରକଳ୍ପଗୁଡିକର ପ୍ରଗତି ତ୍ୱରାନ୍ୱିତ କରାଯାଉଅଛି । ବିସ୍ଥାପିତ ପରିବାରର

ସ୍ୱାର୍ଥକୁ ଆଖି ଆଗରେ ରଖି ଭୂମି ଅଧିଗ୍ରହଣକୁ ଶୃଙ୍ଖଳିତ କରିବା ପାଇଁ RFCTLARR ଅଧିନିୟମରେ ସଂଶୋଧନ କରାଯାଇଛି ।

ଭୂରାଜସ୍ୱ ପ୍ରଶାସନରେ ସମୁଦାୟ ଭାବରେ ୧୫୮୬.୭୨ କୋଟି ଟଙ୍କାବ୍ୟୟ ଅଟକଳ କରାଯାଇଛି । ସେ ମଧ୍ୟରୁ ୧୧୬୪.୭୧ କୋଟି ଟଙ୍କା ପ୍ରଶାସନିକ ଖର୍ଚ୍ଚ ଏବଂ ୪୨୨.୦୧ କୋଟି ଟଙ୍କା ପ୍ରୋଗ୍ରାମ ଖର୍ଚ୍ଚ ପାଇଁ ବ୍ୟବସ୍ଥା କରାଯାଇଛି ।

**ବିପର୍ଯ୍ୟୟ ପରିଚାଳନା ବିଭାଗ**

ରାଜ୍ୟରେ ଘଟୁଥିବା ବିପର୍ଯ୍ୟୟର ମୁକାବିଲା ଓ ସଫଳ ପରିଚାଳନା ଦିଗରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦୂରଦୃଷ୍ଟିକୁ ଲକ୍ଷ୍ୟରେ ରଖି ବିପର୍ଯ୍ୟୟର ପ୍ରଭାବକୁ ହ୍ରାସ କରିବା ପାଇଁ ଅନେକଗୁଡିଏ ବିପର୍ଯ୍ୟୟ ନିରୋଧି ଏବଂ ଦକ୍ଷତା ବିକାଶ ପଦକ୍ଷେପ ନିଆଯାଇଅଛି । ୧୯୯୯ ମସିହା ମହାବାତ୍ୟା ପରଠାରୁ ବିପର୍ଯ୍ୟୟ ପରିଚାଳନା କ୍ଷମତାକୁ ସୁଦୃଢୀକରଣ କରାଯାଇଅଛି । ବାତ୍ୟା ସମୟରେ ସଠିକ୍ ସମନ୍ୱୟ ଓ ପ୍ରାକ୍ ପ୍ରସ୍ତୁତି ଏବଂ ବିପର୍ଯ୍ୟୟର ସଫଳ ପରିଚାଳନା ପାଇଁ UNISDR ରାଜ୍ୟକୁ ମାନ୍ୟତା ଦେଇଛନ୍ତି । ଉନ୍ନତ ପ୍ରସ୍ତୁତି ଏବଂ ଦକ୍ଷତାର ବିକାଶ ସହିତ ଆମ ରାଜ୍ୟ ବିପର୍ଯ୍ୟୟର ସଠିକ୍ ମୁକାବିଲା ଓ ପରିଚାଳନା କରିବାରେ ସକ୍ଷମ ହୋଇଅଛି । ଆମର ବିପର୍ଯ୍ୟୟ ପରିଚାଳନା ପଦକ୍ଷେପଗୁଡିକ ପାଇଁ ଭାରତ ସରକାର ସମ୍ମାନଜନକ ନେତାଜୀ ସୁଭାସ ଚନ୍ଦ୍ର ବୋଷ ଆପଦ ପ୍ରବନ୍ଧନ ପୁରସ୍କାର ପାଇଁ OSDMAକୁ ମନୋନୀତ କରିଛନ୍ତି ।

ପ୍ରଭାବଶାଳୀ ବିପର୍ଯ୍ୟୟ ପରିଚାଳନା ଏବଂ ବିପଦ ହ୍ରାସ ପାଇଁ ୨୦୨୩-୨୪ ବର୍ଷ ପାଇଁ ବଜେଟରେ ୩୭୦୦.୦୦ କୋଟି ଟଙ୍କା ଧାର୍ଯ୍ୟ କରାଯାଇଛି । ଏଥିରେ ରିଲିଫ୍, ବିପର୍ଯ୍ୟୟ ମୁକାବିଲା, ପୁନରୁଦ୍ଧାର ଏବଂ ପୁନଃ ନିର୍ମାଣ ତଥା ବିପର୍ଯ୍ୟୟ ମୁକାବିଲା ଭିତ୍ତିଭୂମି ନିର୍ମାଣ ପାଇଁ ଆବଶ୍ୟକୀୟ ଅର୍ଥ ଅନ୍ତର୍ଭୁକ୍ତ । ବିପର୍ଯ୍ୟୟ ମୁକାବିଲା ବାହିନୀର ଦକ୍ଷତା ବୃଦ୍ଧି, ବିପର୍ଯ୍ୟୟ ପରିଚାଳନା ଯୋଜନା ଏବଂ ପ୍ରସ୍ତୁତି କାର୍ଯ୍ୟକ୍ରମ ଏବଂ ବିଭିନ୍ନ ଅନୁଷ୍ଠାନର ଦକ୍ଷତା ବୃଦ୍ଧି ପାଇଁ ୨୩୫.୮୦ କୋଟି ଟଙ୍କାର ପ୍ରାବଧାନ କରାଯାଇଅଛି ।

ବିପର୍ଯ୍ୟୟର ପ୍ରଭାବ ହ୍ରାସ କରିବା ନିମନ୍ତେ ସରକାର ବିପର୍ଯ୍ୟୟ ନିରୋଧି ଭିତ୍ତିଭୂମି ଉପରେ ଗୁରୁତ୍ୱ ଦେଉଛନ୍ତି । ବନ୍ୟା ପ୍ରତିରୋଧି ସଡକ, ବନ୍ୟା ପ୍ରଶମନ ପଦକ୍ଷେପ, ବିପର୍ଯ୍ୟୟ ଦ୍ୱାରା ପ୍ରଭାବିତ ଜୀବନରେଖା ସୁଦୃଢୀକରଣ, ଅଗ୍ନି ନିରୋଧକ ଗୃହ ନିର୍ମାଣ, ବାତ୍ୟା ନିରୋଧି ବୈଦ୍ୟୁତିକ ଭିତ୍ତିଭୂମି ଏବଂ ମରୁଡିର ପ୍ରଭାବ ହ୍ରାସ ପାଇଁ ପଦକ୍ଷେପ ଆଦି ବ୍ୟବସ୍ଥା ନିମନ୍ତେ ୪୭୧.୬୦ କୋଟି ଟଙ୍କାର ପ୍ରାବଧାନ ରହିଛି । ବଜେଟରେ ଟେକ୍ନୋଲୋଜି ଚାଳିତ ଅଭିନବ ପଦକ୍ଷେପ ଏବଂ ବିପର୍ଯ୍ୟୟ ନିରୋଧି କାର୍ଯ୍ୟ ପାଇଁ ମଧ୍ୟ ବ୍ୟବସ୍ଥା ରହିଛି ।

ପ୍ରତ୍ୟେକ ଗ୍ରାମପଞ୍ଚାୟତ ଓ ଗ୍ରାମ୍ୟ ସ୍ତରରେ ବିପର୍ଯ୍ୟୟ ମୁକାବିଲା ଓ ଦକ୍ଷତା ବିକାଶ କାର୍ଯ୍ୟରେ ପଞ୍ଚାୟତିରାଜ ଅନୁଷ୍ଠାନର ସଦସ୍ୟମାନଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ଓଡିଶା ଗ୍ରାମପଞ୍ଚାୟତ ଅଧିନିୟମ, ୧୯୬୪ ଏବଂ ଓଡିଶା ପଞ୍ଚାୟତ ସମିତି ଅଧିନିୟମ ୧୯୫୯ରେ ସଂଶୋଧନ କରାଯାଇଅଛି । ସେମାନେ ଗ୍ରାମ, ବ୍ଲକ ସ୍ତରରେ ବିପର୍ଯ୍ୟୟ ପରିଚାଳନା ଯୋଜନା ପ୍ରସ୍ତୁତି ଏବଂ ବାର୍ଷିକ ବିକାଶ ଯୋଜନା ପ୍ରସ୍ତୁତି ପାଇଁ ପଦକ୍ଷେପ ନେବେ । ଏଥିପାଇଁ ପ୍ରାୟ ଏକ ଲକ୍ଷରୁ ଅଧିକ ପଞ୍ଚାୟତିରାଜ ଅନୁଷ୍ଠାନର ସଦସ୍ୟଙ୍କୁ ବିପର୍ଯ୍ୟୟ ପରିଚାଳନାର ବିଭିନ୍ନ ଦିଗ ଉପରେ ତାଲିମ ଦିଆଯିବ ପାଇଁ ବ୍ୟବସ୍ଥା କରାଯାଇଅଛି ।

ରାଜ୍ୟର ଉପକୂଳବର୍ତ୍ତୀ ଜିଲ୍ଲାର ୨୨ ଗୋଟି ବ୍ଲକ୍‌ରେ ସ୍ଥାପନ କରାଯାଇଥିବା ୧୨୨ଟି Alert Siren Tower ମାଧ୍ୟମରେ ବାତ୍ୟାବନ୍ୟା ଓ ସୁନାମୀ ସମ୍ବନ୍ଧୀୟ ପ୍ରାକ୍ ଓ ସତର୍କ ସୂଚନା ଯୋଗାଇ ଦିଆଯାଉଅଛି । ବିଭିନ୍ନ ବିପର୍ଯ୍ୟୟ ପାଇଁ

ପ୍ରକୃତ ସମୟଓ୍ୱାଚ୍, ଆଲର୍ଟ ଏବଂ ଚେତାବନୀ ସୂଚନା ଆଗୁଆ ପ୍ରଦାନ ପାଇଁ ଏକ ମୋବାଇଲ୍ ଆପ୍ଲିକେସନ୍ SATARK ବିକଶିତ କରାଯାଇଛି । ରାଜ୍ୟ ସରକାର ଉତ୍ତମ ପ୍ରଭାବଭିତ୍ତିକ ପୂର୍ବାନୁମାନ ପାଇଁ ବିଭିନ୍ନ ନଦୀରେ ଟେଲିମେଟ୍ରିକ୍ ବୃଷ୍ଟିମାପକ ଯନ୍ତ୍ର, ସ୍ୱୟଂଚାଳିତ ପାଣିପାଗ ଷ୍ଟେସନ୍ ଏବଂ ସେନ୍ସର ସ୍ଥାପନ କରିବେ । ବିପର୍ଯ୍ୟୟର ସଫଳ ପରିଚାଳନା ଦିଗରେ ଏଗୁଡିକ ସାହାଯ୍ୟ କରିବ ।

ଗୋଷ୍ଠୀ ସ୍ତରୀୟ ବିପର୍ଯ୍ୟୟ ପ୍ରସ୍ତୁତିକୁ ମଜଭୁତ କରିବା ପାଇଁ ଗ୍ରାମ୍ୟ ଓ ଆଶ୍ରୟସ୍ଥଳୀ ସ୍ତରରେ ୪୦,୦୦୦ (ଚାଳିଶ ହଜାର)ରୁ ଅଧିକ ସ୍ୱେଚ୍ଛାସେବୀଙ୍କୁ ତାଲିମ ଦିଆଯାଉଅଛି । ସରକାର ନିର୍ବାଚିତ ପ୍ରତିନିଧି, ପୌରସଂସ୍ଥା, WSHG ସଦସ୍ୟ, ASHA, ଅଙ୍ଗନଓ୍ୱାଡ଼ି କର୍ମୀ, ବନ ସୁରକ୍ଷା ସମିତି ସଦସ୍ୟଙ୍କ ଦକ୍ଷତା ବୃଦ୍ଧି ପାଇଁ କାର୍ଯ୍ୟକ୍ରମ ହାତକୁ ନେଉଛନ୍ତି । ଏହା ବ୍ୟତୀତ ପ୍ରତ୍ୟେକ ଗ୍ରାମ ଏବଂ ପରିବାରରେ ବିପର୍ଯ୍ୟୟ ପରିଚାଳନା ଯୋଦ୍ଧା ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଚତୁର୍ଥ ଶ୍ରେଣୀଠାରୁ ସ୍ନାତକୋତ୍ତର ସ୍ତରର ପାଠ୍ୟକ୍ରମରେ ବିପର୍ଯ୍ୟୟ ଏବଂ ମହାମାରୀ ପରିଚାଳନାକୁ ଅନ୍ତର୍ଭୁକ୍ତ କରାଯାଉଅଛି ।

୨୦୨୩-୨୪ ବର୍ଷ ବଜେଟରେ ଦକ୍ଷତା ବିକାଶ, ଉନ୍ନତ ବିପର୍ଯ୍ୟୟ ପ୍ରସ୍ତୁତି ଏବଂ ବିପର୍ଯ୍ୟୟ ନିରୋଧି ଓଡିଶା ନିର୍ମାଣ ପାଇଁ ସରକାରଙ୍କ ପ୍ରତିବଦ୍ଧତା ପ୍ରତିଫଳିତ ହୋଇଅଛି ।



# ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ବଜେଟ୍ ୨୦୨୩-୨୪

ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ରାଜ୍ୟ ସରକାରଙ୍କ ୫-ଟି ମନ୍ତ୍ର ପାଳନ କରି ଗ୍ରାମାଞ୍ଚଳରେ ବସବାସ କରୁଥିବା ୮୮.୫୬ ଲକ୍ଷ ଗ୍ରାମୀଣ ପରିବାରକୁ ବିଭିନ୍ନ ଜନହିତକାରୀ ଯୋଜନା ମାଧ୍ୟମରେ ବିନା ବାଧାବିଘ୍ନରେ ବିକାଶ ସ୍ରୋତରେ ସାମିଲ କରିବାକୁ ପ୍ରତିଶ୍ରୁତିବଦ୍ଧ ।

ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସୁଦୂରଦୃଷ୍ଟି ପୂର୍ଣ୍ଣଅଭିପ୍ରାୟରେ ପ୍ରତ୍ୟେକ ଗ୍ରାମୀଣ ପରିବାରକୁ ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ଗ୍ରାମୀଣ କର୍ମ ଯୋଜନା ମାଧ୍ୟମରେ ଗ୍ରାମୀଣ ଆର୍ଥିକ ଦୁର୍ବଳ ଶ୍ରେଣୀମାନଙ୍କୁ କର୍ମ ନିଯୁକ୍ତି, ବିଭିନ୍ନ ଯୋଜନା ଏବଂ କାର୍ଯ୍ୟକ୍ରମର ସମ୍ମିଶ୍ରଣରେ ଗ୍ରାମୀଣ ଆର୍ଥିକ ଦୁର୍ବଳ ଶ୍ରେଣୀମାନଙ୍କ ପାଇଁ ସ୍ଥାୟୀ ଆର୍ଥିକ ରୋଜଗାର ସୃଷ୍ଟି, ଗ୍ରାମୀଣ କାରିଗର ତଥା ଉତ୍ପାଦକମାନଙ୍କୁ ଦକ୍ଷତା ବିକାଶ ତାଲିମ ଏବଂ ବଜାର ସହାୟତା ଯୋଗାଇ ମହିଳା ସଶକ୍ତିକରଣ ଦିଗରେ ଯୁଗାନ୍ତକାରୀ ପଦକ୍ଷେପ ନେଇ ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ଦ୍ୱାରା ଗ୍ରାମୀଣ ପରିବାରମାନଙ୍କୁ ସ୍ୱାବଲମ୍ବୀ କରିବାରେ ସହାୟକ ହୋଇଛନ୍ତି ।

ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ସ୍ଥାୟୀ ଜୀବିକା ନିରାପତ୍ତା, ସ୍ଥାୟୀ ଆୟ ଉପାର୍ଜନକାରୀ ସମ୍ପତ୍ତି ସୃଷ୍ଟି, ତୃଣମୂଳ ସ୍ତରର ଶାସନ ବ୍ୟବସ୍ଥାକୁ ସୁଦୃଢ଼ କରିବା, ତୃଣମୂଳସ୍ତରରେ ମହିଳାମାନଙ୍କର ସକ୍ରିୟ ଅଂଶଗ୍ରହଣ ତଥା ଆର୍ଥିକ ଅନଗ୍ରସର ଅସୁରକ୍ଷିତ ବର୍ଗର ଆବଶ୍ୟକତାକୁ ପୂରଣ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଆସୁଅଛି ।

ଚଳିତ ଆର୍ଥିକ ବର୍ଷ ୨୦୨୩ -୨୪ ପାଇଁ ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗର ବ୍ୟୟ ଅଟକଳ ୨୬୩୧୧.୯୫ କୋଟି ଟଙ୍କା ରଖା ଯାଇଅଛି, ଏହା ଗତ ବର୍ଷ ବଜେଟ୍ ତୁଳନାରେ ୧୬ ପ୍ରତିଶତ ଅଧିକ ।

ସେଥିମଧ୍ୟରୁ ୨୦,୮୫୨ କୋଟି ଟଙ୍କା ଯୋଜନା ବ୍ୟୟ (କେନ୍ଦ୍ରୀୟ ଅନୁଦାନ -୧୩୭୫୦ କୋଟି ରାଜ୍ୟ ଅନୁଦାନ-୭୧୦୨ କୋଟି), ୨୧୧୯.୧୫ କୋଟି ଟଙ୍କା ୧୫ତମ କେନ୍ଦ୍ରୀୟ ଅର୍ଥ କମିଶନ, ୨୭୦୦.୧୫ କୋଟି ୫ମ ରାଜ୍ୟ ଅର୍ଥ କମିଶନ ଅନୁଦାନ ଏବଂ ୬୪୦.୬୫ କୋଟି ଟଙ୍କା ପ୍ରଶାସନିକ ଖର୍ଚ୍ଚ ଅଟେ ।

୭୩ ତମ ଭାରତୀୟ ସମ୍ବିଧାନ ସଂଶୋଧନ ଅନୁଯାୟୀ ଓଡ଼ିଶା ପଞ୍ଚାୟତ ନିୟମଗୁଡ଼ିକର ସଂଶୋଧନ କରାଯାଇଥିଲା । ଓଡିଶା ପଞ୍ଚାୟତିରାଜ ଅଧିନିୟମ (ଓଡିଶା ଗ୍ରାମ ପଞ୍ଚାୟତ ଅଧିନିୟମ -୧୯୬୪, ଓଡିଶା ପଞ୍ଚାୟତ ସମିତି ଅଧିନିୟମ-୧୯୫୯ ଏବଂ ଓଡିଶା ଜିଲ୍ଲା ପରିଷଦ ଆକ୍ଟ-୧୯୯୧) ଗୁଡିକ ୨୦୧୧ ମସିହାରେ ସଂଶୋଧନ କରାଯାଇ ପଞ୍ଚାୟତିରାଜର ତିନି ସ୍ତରୀୟ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ୫୦ ପ୍ରତିଶତ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରାଯାଇଛି । ବିଗତ ନିର୍ବାଚନରେ ନିର୍ବାଚିତ ୧.୦୬ ଲକ୍ଷ ପ୍ରତିନିଧିମାନଙ୍କ ମଧ୍ୟରୁ ୫୭ ପ୍ରତିଶତ ମହିଳା ପ୍ରତିନିଧି ନିର୍ବାଚିତ ହୋଇଛନ୍ତି ।

**(କ) ମହାତ୍ମା ଗାନ୍ଧୀ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା (MGNREGS)**

ମହାତ୍ମା ଗାନ୍ଧୀ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା ମାଧ୍ୟମରେ ଗ୍ରାମୀଣ ଆର୍ଥିକ ଦୁର୍ବଳ ଶ୍ରେଣୀମାନଙ୍କୁ କର୍ମ ନିଯୁକ୍ତି ଯୋଗାଇ ବ୍ୟକ୍ତିଗତ ରୋଜଗାର ସୃଷ୍ଟି କରି ସମାଜର ବିକାଶ ସ୍ରୋତରେ ପହଞ୍ଚାଇବା ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ଓ ଏହାର କ୍ଷେତ୍ରୀୟ କର୍ମଚାରୀମାନଙ୍କର ନିରନ୍ତର ପ୍ରଚେଷ୍ଟା ରହିଅଛି । ଏହାର ସଫଳ ରୂପାୟନ ପାଇଁ ଚଳିତ ଆର୍ଥିକ ବର୍ଷ ୨୦୨୩-୨୪ ବଜେଟ ରେ ବଳିଷ୍ଠ ପଦକ୍ଷେପ ନିଆଯାଇଛି । ଏଥିପାଇଁ ଚଳିତ ଆର୍ଥିକ ବର୍ଷ ୨୦୨୩-୨୪ରେ ରାଜ୍ୟ ନିଜସ୍ୱ ପାଣ୍ଠିରୁ ୧୦୦୦ କୋଟି ଟଙ୍କାର ଘୂର୍ଣ୍ଣୟମାନ ପାଣ୍ଠିର ବ୍ୟବସ୍ଥା କର୍ମ ଆଶୟୀମାନଙ୍କ ପାଇଁ ରଖା ଯାଇଛି ।

ରାଜ୍ୟର ୪ଟି ଜିଲ୍ଲା ଯଥା ବଲାଙ୍ଗୀର, ବରଗଡ଼, କଳାହାଣ୍ଡି ଓ ନୂଆପଡ଼ା ଅନ୍ତର୍ଗତ ୨୦ ଟି ଦାଦନ ପ୍ରବଣ ବ୍ଲକରେ କର୍ମ ନିଯୁକ୍ତି ଯୋଗାଇଦେବା ପାଇଁ ୫୦୦ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଛି । ରାଜ୍ୟର ବିଜ୍ଞାପିତ ଦୈନିକ ମଜୁରି ୩୩୩ ଟଙ୍କା ହାରରେ ଦିଆଯାଉଛି । ଏହି ଆର୍ଥିକ ବର୍ଷରେ, ଏହି ସହାୟତାକୁ ଆଉ କିଛି ବ୍ଲକ୍‌କୁ ବୃଦ୍ଧି କରିବାକୁ ପ୍ରସ୍ତାବ ଦିଆଯାଇଛି ।

୨୦୨୨-୨୩ ଆର୍ଥିକ ବର୍ଷରେ ବର୍ତ୍ତମାନ ପର୍ଯ୍ୟନ୍ତ ସମୁଦାୟ ୧୬.୮୧ କୋଟି ଶ୍ରମ ଦିବସ ସୃଷ୍ଟି ହୋଇଛି । ଏଥିରେ ୫୦% ତଫସିଲଭୁକ୍ତ ଜାତି ଓ ଉପଜାତି, ୪୭.୯% ମହିଳା ସହଭାଗୀତା ରହିଛି । ୩୭.୭୪ ଲକ୍ଷ ପରିବାରର ୪୯.୧୧ଲକ୍ଷ ଉପଭୋକ୍ତା କର୍ମ ନିଯୁକ୍ତି ପାଇଛନ୍ତି । ବର୍ତ୍ତମାନ ସୁଦ୍ଧା ୩,୩୬,୨୮୨ ପରିବାର ୧୦୦ ଦିନର କର୍ମ ନିଯୁକ୍ତି ପାଇଛନ୍ତି । ବିଭିନ୍ନ ଉତ୍ପାଦନକାରୀ ସମ୍ପତ୍ତି ଯଥା ୨୮,୮୨୯ ଫାର୍ମ ପୋଖରୀ, ୧,୬୩୮ ଅଙ୍ଗନୱାଡି କେନ୍ଦ୍ର, ୫,୩୫୬ କୂଅ, ୨,୬୦୫ ଖେଳ ପଡିଆ, ୫୩୭ ଗ୍ରାମ୍ୟ ଉଦ୍ୟାନ, ୧,୧୧୯ ଗ୍ରାମପଞ୍ଚାୟତ ମଡେଲ ପୋଖରୀ, ୧୬ ଜଳ ସଂରକ୍ଷଣ ପ୍ରକଳ୍ପ ଏବଂ ୭,୫୮୦ ଜଳାଶୟ ନିର୍ମାଣ ହୋଇଅଛି । ୪.୨୪ ଲକ୍ଷ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଅଛି ଏବଂ ୫.୩୨ ଲକ୍ଷ କାର୍ଯ୍ୟ ଚାଲୁରହିଅଛି ।

**ଖର୍ଚ୍ଚ–** ସମୁଦାୟ ୪୬୩୯.୭୫ କୋଟି ଟଙ୍କା ଖର୍ଚ୍ଚ ହୋଇଛି ଏବଂ ଏଥି ମଧ୍ୟରୁ ୩୬୯୯.୯୩ କୋଟି ଟଙ୍କା ମଜୁରି ବାବଦକୁ ଖର୍ଚ୍ଚ ହୋଇଛି ।

(ଖ) ଗ୍ରାମ୍ୟ ଜଳ ଯୋଗାଣ (DRINKING WATER)

ରାଜ୍ୟର ଗ୍ରାମାଞ୍ଚଳରେ ବସବାସ କରୁଥିବା ସମସ୍ତ ଜନସାଧାରଣଙ୍କ ପାଇଁ ଆବଶ୍ୟକ ପରିମାଣରେ ସ୍ୱଚ୍ଛ ପାନୀୟ ଜଳର ବ୍ୟବସ୍ଥା କରିବା ଦାୟିତ୍ୱ ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ଅଗ୍ରାଧିକାର ଭିତ୍ତିରେ ଗ୍ରହଣ କରିଛି । ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ସଂସ୍ଥା ଜରିଆରେ ରାଜ୍ୟର ସମସ୍ତ ଗ୍ରାମ/ପଡାଗ୍ରାମକୁ ସଫଳତାର ସହିତ ସ୍ୱଚ୍ଛ ଓ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯାଉଛି । ରାଜ୍ୟର ଗ୍ରାମାଞ୍ଚଳରେ ଅଦ୍ୟାବଧି ୧୩,୯୩୦ ଗୋଟି ପାଇପ ଜଳ ଯୋଗାଣ ପ୍ରକଳ୍ପ ଓ ୪,୭୭,୫୩୭ ଗୋଟି ନଳକୂପ ପରିମଳ କୂପ ସ୍ଥାପନ କରାଯାଇଅଛି ।

ଚଳିତ ଆର୍ଥିକ ବର୍ଷ ୨୦୨୩-୨୪ରେ ଜଳ ଜୀବନ ମିଶନ ଯୋଜନା ପାଇଁ ୫,୭୫୦ କୋଟି, ବସୁଧା ଯୋଜନା ପାଇଁ ୩,୭୫୦ କୋଟି ଏବଂ RIDF ଯୋଜନା ପାଇଁ ୧୦୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି । ଆସନ୍ତା ୨୦୨୪ ମସିହା ସୁଦ୍ଧା ସମସ୍ତ ପରିବାରଙ୍କୁ ଟ୍ୟାପ ଯୋଗେ ବିଶୁଦ୍ଧ ପାନୀୟ ଜଳ ଯୋଗାଣ ନିମନ୍ତେ ୫୭,୦୦୦ କୋଟି ଟଙ୍କାର ବିଭିନ୍ନ ପ୍ରକଳ୍ପମାନ କାର୍ଯ୍ୟକାରୀ କରାଯାଉଅଛି । ଏଥିରେ ୪୨,୦୦୦ କୋଟି ଟଙ୍କାର ଭୂପୃଷ୍ଠ ଜଳ ଆଧାରିତ ୨୦୭ ଗୋଟି ବୃହତ୍ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ଅନ୍ତର୍ଭୁକ୍ତ ଅଟେ । ଏଥି ମଧ୍ୟରୁ ୧୦ ଗୋଟି ପ୍ରକଳ୍ପ ସମ୍ପୂର୍ଣ୍ଣ

ହୋଇଅଛି, ୧୬୩ ଗୋଟି ପ୍ରକଳ୍ପର କାର୍ଯ୍ୟ ଚାଲୁ ରହିଅଛି ଓ ୩୪ ଗୋଟି ପ୍ରକଳ୍ପର ଟେଣ୍ଡର ପ୍ରକ୍ରିୟା ଚାଲୁରହିଅଛି । ଅଦ୍ୟାବଧି ରାଜ୍ୟର ମୋଟ ୮୮,୫୬,୩୮୭ ଗୋଟି ଗ୍ରାମୀଣ ପରିବାର ମଧ୍ୟରୁ ୫୦,୭୧,୦୦୦ ପରିବାରକୁ ଟ୍ୟାପ ସଂଯୋଗ କରାଯାଇଛି । ପାନୀୟ ଜଳର ମାନ ନିର୍ଦ୍ଧାରଣ ପାଇଁ ଗୋଟିଏ ରାଜ୍ୟ ସ୍ତରୀୟ, ୩୦ ଗୋଟି ଜିଲ୍ଲା ସ୍ତରୀୟ ଓ ୪୬ ଗୋଟି ଉପଜିଲ୍ଲା ସ୍ତରୀୟ (ମୋଟ ୭୭ ଗୋଟି) ଜଳ ପରୀକ୍ଷାଗାର କାର୍ଯ୍ୟକ୍ଷମ କରାଯାଇଅଛି ।

(ଗ) ଗ୍ରାମୀଣ ଗୃହ (RURAL HOUSING)

'ସଭିଙ୍କୁ ଆଶ୍ରୟ ସୁରକ୍ଷା' ଲକ୍ଷ୍ୟ ନେଇ, ଗ୍ରାମାଞ୍ଚଳର ସମସ୍ତ ଗୃହହୀନ ଓ କଚ୍ଚା ଘରେ ବସବାସ କରୁଥିବା ପରିବାରବର୍ଗଙ୍କୁ ପକ୍କାଘର ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

ଆର୍ଥିକ ବର୍ଷ ୨୦୧୪-୧୫ ଠାରୁ ସମୁଦାୟ ୩୧,୪୪,୧୦୯ ଘର ସମାପ୍ତ ହୋଇଛି ଓ ତନ୍ମଧ୍ୟରୁ ଚଳିତ ଆର୍ଥିକ ବର୍ଷ ୨୦୨୨ -୨୩ରେ ଏଯାବତ୍ ୨୬,୬୯୨ ଘର ସମ୍ପୂର୍ଣ୍ଣ ହୋଇଛି । ଆର୍ଥିକ ବର୍ଷ ୨୦୧୪-୧୫ ଠାରୁ ସମସ୍ତ ଗ୍ରାମୀଣ ଗୃହ ନିର୍ମାଣ ଯୋଜନାରେ ୩୨,୪୩୩ କୋଟି ଟଙ୍କା ବିନିଯୋଗ ହୋଇଛି, ସେମଧ୍ୟରୁ ଆର୍ଥିକ ବର୍ଷ ୨୦୨୨-୨୩ରେ ୫୩୨.୨୪ କୋଟି ଟଙ୍କା ଖର୍ଚ୍ଚ ହୋଇଛି । ହିତାଧିକାରୀଙ୍କୁ ସେମାନଙ୍କ ଘର ଶୀଘ୍ର ସମାପ୍ତ କରିବା ପାଇଁ ରାଜ୍ୟ ସରକାର ୮.୨୦ ଲକ୍ଷ ହିତାଧିକାରୀଙ୍କୁ ପ୍ରୋତ୍ସାହନ ରାଶି ବାବଦରେ ୧୩୪୩ କୋଟି ଟଙ୍କା ପ୍ରଦାନ କରିଛନ୍ତି । ବିଭିନ୍ନ ଗ୍ରାମୀଣ ଗୃହ ର୍ନିମାଣ ଯୋଜନାରେ ଘର ତିଆରି ସମ୍ପୂର୍ଣ୍ଣ କରିଥିବା ୨୭.୨୭ ଲକ୍ଷ ପରିବାରଙ୍କୁ ବିଜୁ ପକ୍କା ଘର ଯୋଜନା ପାଣ୍ଠିରୁ ଗୃହ ମରାମତି ଅନୁଦାନ ବାବଦରେ ପ୍ରତି ପରିବାର ପିଛା ୩୦୦୦ ଟଙ୍କା ହିସାବରେ ମୋଟ ୮୧୮ କୋଟି ଟଙ୍କା ରାଜ୍ୟ ସରକାର ପ୍ରଦାନ କରିଛନ୍ତି । ପ୍ରଧାନମନ୍ତ୍ରୀ ଆବାସ ଯୋଜନା (ଗ୍ରାମୀଣ) ଅଧୀନରେ ଗୃହ ମଞ୍ଜୁର ପାଇଁ ରାଜ୍ୟ ୯.୫୯ଲକ୍ଷ (୧.୪୨ ଲକ୍ଷ ଫନି ବାତ୍ୟା ପୀଡ଼ିତଙ୍କୁ ମିଶାଇ) ସମ୍ଭାବ୍ୟ ହିତାଧିକାରୀଙ୍କୁ ଚିହ୍ନଟ କରାଯାଇଛି । ଏହି ହିତାଧିକାରୀଙ୍କ ଯୋଗ୍ୟତା ଯାଞ୍ଚ ପ୍ରକ୍ରିୟା ଜାରି ରହିଛି ।

**(ଘ) ପଞ୍ଚଦଶ କେନ୍ଦ୍ର ଅର୍ଥ ଆୟୋଗ**

ସ୍ଥାନୀୟ ସ୍ୱାୟତଶାସନ ସଂସ୍ଥାମାନଙ୍କର ସଶକ୍ତିକରଣ, ଗ୍ରାମାଞ୍ଚଳର ଭିତ୍ତିଭୂମି ନିର୍ମାଣ ଏବଂ ଏହାର ରକ୍ଷଣବେକ୍ଷଣ ନିମନ୍ତେ ପଞ୍ଚଦଶ କେନ୍ଦ୍ର ଅର୍ଥ ଆୟୋଗ ୨୦୨୧-୨୨ରୁ ୨୦୨୫-୨୬ ଆର୍ଥିକ ବର୍ଷ ପର୍ଯ୍ୟନ୍ତ ରାଜ୍ୟର ସମସ୍ତ ଯୋଗାଇ ଆସୁଛନ୍ତି । ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନ ଯଥା ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ପାଇଁ ଆର୍ଥିକ ଅନୁଦାନ ଯୋଗାଇ ଆସୁଛନ୍ତି ।

ମୁଖ୍ୟତଃ ଗ୍ରାମାଞ୍ଚଳର ପରିମଳ ଏବଂ ସ୍ୱଚ୍ଛ ପାନୀୟ ଜଳ ଯୋଗାଣ ପାଇଁ ଏହାର ଶତକଡା ୬୦ ଭାଗ ବ୍ୟୟ କରାଯାଉଅଛି । ଆର୍ଥିକ ବର୍ଷ ୨୦୨୩-୨୪ ପାଇଁ ୧୭୪୭ କୋଟି ଟଙ୍କାର ଅର୍ଥ ଅନୁଦାନ ବ୍ୟବସ୍ଥା କରାଯାଇଅଛି । ଏହି ଅର୍ଥକୁ ରାଜ୍ୟର ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ମଧ୍ୟରେ ୭୦:୨୦:୧୦ ଅନୁପାତରେ ବଣ୍ଟନ କରାଯିବାର ବ୍ୟବସ୍ଥା କରାଯାଇଛି । ଏଥି ସହିତ, ପଞ୍ଚଦଶ କେନ୍ଦ୍ର ଅର୍ଥ ଆୟୋଗ, ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ମାଧ୍ୟମରେ ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟ ସେବାର ସୁଦୃଢୀକରଣ ଓ ବିକାଶ ପାଇଁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ଓ ଉପ କେନ୍ଦ୍ରଗୁଡିକର ଉନ୍ନତି ସାଧନ ପାଇଁ ବିଭିନ୍ନ ପଦକ୍ଷେପ ନେଇଛନ୍ତି । ଏହା ଜିଲ୍ଲା ପରିଷଦ ସ୍ତରରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ସହଯୋଗରେ କାର୍ଯ୍ୟକାରୀ ହେଉଛି । ଏଥି ନିମନ୍ତେ ଚଳିତ ଆର୍ଥିକ ବର୍ଷ ୨୦୨୩-୨୪ରେ ୩୭୨.୧୫ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

**(ଙ) ପଞ୍ଚମ ରାଜ୍ୟ ଅର୍ଥ ଆୟୋଗ**

ଗ୍ରାମାଞ୍ଚଳର ଲୋକମାନଙ୍କର ପ୍ରାଥମିକ ଆବଶ୍ୟକତା, ଗୋଷ୍ଠୀ ସମ୍ପତ୍ତି ସୃଷ୍ଟି ଓ ମରାମତି ପାଇଁ ତ୍ରିସ୍ତରୀୟ ପଞ୍ଚାୟତ ଅନୁଷ୍ଠାନକୁ ହସ୍ତାନ୍ତରୀକରଣ ଅନୁଦାନ ଯୋଗାଇ ସ୍ଥାନୀୟ ସ୍ୱାୟତ୍ତଶାସନ ସଂସ୍ଥାର ସଶକ୍ତି କରଣ ନିମନ୍ତେ ପଞ୍ଚମ ରାଜ୍ୟ ଅର୍ଥ ଆୟୋଗ ଗଠନ କରାଯାଇଛି ।

ପଞ୍ଚମ ରାଜ୍ୟ ଅର୍ଥ ଆୟୋଗ ଆର୍ଥିକ ବର୍ଷ ୨୦୨୩-୨୪ ନିମନ୍ତେ ମୋଟ ୯୧୫.୦୯ କୋଟି ଟଙ୍କା ହସ୍ତାନ୍ତରିକରଣ ଅର୍ଥ ସୁପାରିସ୍ କରିଛନ୍ତି । ଏହି ହସ୍ତାନ୍ତରୀକରଣ ଅର୍ଥ ରାଜ୍ୟର ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦମାନଙ୍କ ମଧ୍ୟରେ ୬୦:୩୦:୧୦ ଅନୁପାତରେ ବଣ୍ଟନ କରାଯିବାର ବ୍ୟବସ୍ଥା ହୋଇଛି ଏବଂ ରାଜ୍ୟର ଅନୁସୂଚିତ ଅଞ୍ଚଳରେ ଥିବା ଗ୍ରାମପଞ୍ଚାୟତଗୁଡିକ ପାଇଁ ସ୍ୱତନ୍ତ୍ର ଭାବରେ ୨୫ ପ୍ରତିଶତ ଅଧିକ ଅର୍ଥ ଅନୁଦାନର ବନ୍ଦୋବସ୍ତ କରାଯାଇଛି । ଗ୍ରାମାଞ୍ଚଳରେ ଆବଶ୍ୟକତା ଅନୁଯାୟୀ ଉନ୍ନତିମୂଳକ କାର୍ଯ୍ୟ ସମ୍ପାଦନ ନିମନ୍ତେ ଏହି ହସ୍ତାନ୍ତରୀକରଣ ଅର୍ଥ ବିନିଯୋଗ କରାଯାଇପାରିବ ।

**(ଚ) ଦୀନ୍ ଦୟାଲ୍ ଉପାଧ୍ୟାୟ ଗ୍ରାମୀଣ କୌଶଳ ଯୋଜନା (DDU-GKY) /ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ଓ ବିପଣନ ସମିତି (ORMAS)-**

ରାଜ୍ୟର ଗ୍ରାମାଞ୍ଚଳର ବେରୋଜଗାର ଯୁବବର୍ଗଙ୍କୁ ଦୀର୍ଘ ସ୍ଥାୟୀ ନିଯୁକ୍ତି ସୁଯୋଗ ଯୋଗାଇ ଦେବା ପାଇଁ ରାଜ୍ୟ ସରକାରଙ୍କ ନିଯୁକ୍ତିଭିତ୍ତିକ ଦକ୍ଷତା ବିକାଶ କାର୍ଯ୍ୟକ୍ରମ ଦୀନ ଦୟାଲ ଉପାଧ୍ୟାୟ ଗ୍ରାମୀଣ କୌଶଳ ଯୋଜନା ଏକ ବୃହତ୍ ଯୋଜନା ଅଟେ । ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ଓ ବିପଣନ ସମିତି ସାରା ରାଜ୍ୟରେ ୧୦୫ ଗୋଟି ଯୋଜନା ପ୍ରଶିକ୍ଷଣ ଅନୁଷ୍ଠାନ ମାଧ୍ୟମରେ ବେରୋଜଗାର ଯୁବବର୍ଗଙ୍କୁ କୁଶଳୀ, କର୍ମ ନିଯୁକ୍ତି ଏବଂ ଆର୍ଥିକ ସ୍ୱାବଲମ୍ବୀ କରିବା ସହ ସେମାନଙ୍କର ନିଜସ୍ୱ ପରିଚୟ ସୃଷ୍ଟି କରୁଅଛି । ଏହି କାର୍ଯ୍ୟକ୍ରମ, କାର୍ଯ୍ୟକାରୀ ହେବା ଦିନଠାରୁ ମୋଟ୍ ୨.୧୫ ଲକ୍ଷ ଗ୍ରାମୀଣ ଯୁବକ-ଯୁବତୀ ତାଲିମ ନେଇସାରିଥିବା ବେଳେ ସେମାନଙ୍କ ମଧ୍ୟରୁ ୧.୩୭ ଲକ୍ଷ ରାଜ୍ୟ ତଥା ରାଜ୍ୟ ବାହାରେ ବିଭିନ୍ନ ସଂସ୍ଥାରେ ଚାକିରି ସୁଯୋଗ ପାଇଛନ୍ତି ।

ଚଳିତ ଆର୍ଥିକ ବର୍ଷ ୨୦୨୩-୨୪ରେ ରାଜ୍ୟ ସରକାର, ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ଓ ବିପଣନ ସମିତିକୁ ସହଯୋଗ-ଦକ୍ଷତା, ଜୀବିକା ଓ ବିପଣନ ନାମରେ ଏକ ନୂଆ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ସେଥିପାଇଁ ୨୫ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

**(ଛ) ରାଷ୍ଟ୍ରୀୟ ଗ୍ରାମ ସ୍ୱରାଜ ଅଭିଯାନ୍ (RGSA)**

୨୦୨୩-୨୪ ଆର୍ଥିକ ବର୍ଷରେ କେନ୍ଦ୍ରୀୟ ପ୍ରାୟୋଜିତ ରାଷ୍ଟ୍ରୀୟ ଗ୍ରାମ ସ୍ୱରାଜ ଅଭିଯାନ(RGSA) ଯୋଜନା ଅଧୀନରେ PRI ସଦସ୍ୟ ତଥା ଅଧିକାରୀଙ୍କ ଦକ୍ଷତା ବୃଦ୍ଧି ପାଇଁ ୭୦ କୋଟି ଟଙ୍କା ବରାଦ କରାଯାଇଛି । ୨୦୨୨- ୨୩ ଆର୍ଥିକ ବର୍ଷରେ ୫୪୩୧୦ PRIଙ୍କୁ ୩୨.୭୯ କୋଟି ଟଙ୍କା ବ୍ୟୟରେ ତାଲିମ ଦିଆଯାଇଛି ।

**(ଜ) ସମ୍ପତ୍ତିର ରକ୍ଷଣାବେକ୍ଷଣ**

ବିଦ୍ୟାଳୟ, ଅଙ୍ଗନୱାଡ଼ି କେନ୍ଦ୍ର, ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ଉପ କେନ୍ଦ୍ର, ପ୍ରାଣୀଧନ ସହାୟତା କେନ୍ଦ୍ର ସହ ଅଧିକାରୀ ଏବଂ PRI ସଦସ୍ୟଙ୍କ ଆବାସିକ ଓ ଅଣ-ଆବାସିକ ଗୃହଗୁଡିକର ରକ୍ଷଣା ବେକ୍ଷଣ ଓ ଉନ୍ନତି ସାଧନ ପାଇଁ ୨୧୨.୮୭ କୋଟି ଓ ୨୭ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**(ଝ) ବନ ସୁରକ୍ଷା ସମିତି (VSS )**

ବନ ସୁରକ୍ଷା ସମିତି ଗୃହ ନିର୍ମାଣ ପାଇଁ ରାଜ୍ୟ ସରକାର ପ୍ରଥମ ଥର ପାଇଁ ୨୫୦ କୋଟି ଟଙ୍କା ବ୍ୟୟ ବରାଦ କରିଛନ୍ତି ।

**(ଞ) ଗ୍ରାମପଞ୍ଚାୟତ ସ୍ତରରେ ଭିସି ସୁବିଧା**

ପ୍ରତ୍ୟେକ ଗ୍ରାମପଞ୍ଚାୟତ ସ୍ତରରେ ଭିସି ସୁବିଧା ଏବଂ ଡାଟା କେନ୍ଦ୍ର ସୃଷ୍ଟି ପାଇଁ ୨୫ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**(ଟ) ସଶକ୍ତି କରଣ– ଖାଲି ପଡିଥିବା ପଦବୀ ପୂରଣ**

ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ପକ୍ଷରୁ ପ୍ରାଥମିକତା ଆଧାରରେ ପଞ୍ଚାୟତ କାର୍ଯ୍ୟନିର୍ବାହୀ ଅଧିକାରୀ, କନିଷ୍ଠ ଯନ୍ତ୍ରୀ ଏବଂ ଗ୍ରାମପଞ୍ଚାୟତ ସଂପ୍ରସାରଣ ଅଧିକାରୀ ପଦବୀଗୁଡିକ ପୂରଣ ପାଇଁ ପଦକ୍ଷେପ ନିଆଯାଇଛି । ଏହାର ବିଜ୍ଞାପନ OSSC ଦ୍ୱାରା ପ୍ରକାଶିତ ହୋଇସାରିଛି ।



# ବାଣିଜ୍ୟ ଏବଂ ପରିବହନ ବିଭାଗର ବଜେଟ୍ ୨୦୨୩-୨୪

ରାଜ୍ୟ ସରକାର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦିଗ୍‌ଦର୍ଶନରେ ଏକ ନବୀନ ଓଡିଶା ସଶକ୍ତ ଓ ପ୍ରଗତିଶୀଳ ଓଡିଶାର ପରିକଳ୍ପନା କରିଛନ୍ତି । ଯେଉଁଥିରେ ପରିବହନ କ୍ଷେତ୍ର ହେଉଛି ରାଜ୍ୟବାସୀଙ୍କ ଅଭିବୃଦ୍ଧି, ସମୃଦ୍ଧତା ଓ କଲ୍ୟାଣର ମାଧ୍ୟମ । ରାଜ୍ୟ ସରକାର ବାଣିଜ୍ୟ ଓ ପରିବହନ ବିଭାଗ ଅଧୀନରେ ସମସ୍ତ ପରିବହନ ବ୍ୟବସ୍ଥା ଯେପରି ସଡ଼କ, ରେଳ, ଜଳ ଓ ବେସାମରିକ ବିମାନ ଚଳାଚଳ ସୁଯୋଗକୁ ବାସ୍ତବ ଓ ସାକାର କରିବା ପାଇଁ ନିମ୍ନୋକ୍ତ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

I. ରାଜ୍ୟ ତଥା ଆନ୍ତଃ-ରାଜ୍ୟ ପରିବହନ ବ୍ୟବସ୍ଥାକୁ ନିରବଚ୍ଛିନ, ସୁନିଶ୍ଚିତ କରିବା ଏବଂ ମଲ୍ଟିମୋଡାଲ ଇକୋସିଷ୍ଟମକୁ ମଜବୁତ କରିବା ସହ ପରିବହନ ସଂଯୋଗୀକରଣ କରିବା ।

II. ରାଜ୍ୟର ସମସ୍ତ ଜିଲ୍ଲାକୁ ରେଳ ସଂଯୋଗୀକରଣ କରିବା ।

III. ଓଡିଶାକୁ ସ୍ଥାୟୀ ସାମୁଦ୍ରିକ ବନ୍ଦରର ବିକାଶ କ୍ଷେତ୍ରରେ ଦେଶରେ ଏକ ଅଗ୍ରଣୀ ପ୍ରଗତିଶୀଳ ରାଜ୍ୟଭାବେ ପରିଣତ କରିବା ।

IV. ସଡ଼କ ଦୁର୍ଘଟଣା ଏବଂ ଏଥିଜନିତ ମୃତାହତଙ୍କ ସଂଖ୍ୟା ହ୍ରାସ କରିବା ପାଇଁ ସମ୍ପୃକ୍ତ ସଂସ୍ଥାମାନଙ୍କ ସହଯୋଗରେ ସ୍ୱତନ୍ତ୍ର ରଣନୀତି ପ୍ରସ୍ତୁତି କରିବା

V. ଆକାଶ ମାର୍ଗ ପରିବହନ ବ୍ୟବସ୍ଥା ମାଧ୍ୟମରେ ଆନ୍ତଃରାଜ୍ୟ ଆଞ୍ଚଳିକ ସଂଯୋଗୀକରଣକୁ ସୁଦୃଢ଼ ଓ ଉନ୍ନତ କରିବା ।

ଇତିମଧ୍ୟରେ ବେସାମରିକ ବିମାନ ଚଳାଚଳ, ମୋଟରଯାନ ଚଳାଚଳ, ପଣ୍ୟବାହୀ ଟ୍ରକ ଯାନର ସୁଗମ ଚଳାଚଳ, ବାୟୁପ୍ରଦୂଷଣ ହ୍ରାସ ଏବଂ ଅଣ-ପ୍ରମୁଖ ବନ୍ଦରଗୁଡିକର ବିକାଶ ପାଇଁ ବେସରକାରୀ ବିକାଶକାରୀ/ନିବେଶକାରୀଙ୍କୁ ଆକୃଷ୍ଟ କରିବା ପାଇଁ ବିଗତ ମେକ୍ ଇନ୍ ଓଡ଼ିଶା କନକ୍ଲେଭ୍-୨୦୨୨ରେ ନିମ୍ନୋକ୍ତ ନୀତି ପ୍ରଣୟନ କରାଯାଇଅଛି ।

I. Odisha Civil Aviation Policy 2022

(ଓଡିଶା ବେସାମରିକ ବିମାନ ଚଳାଚଳନୀତି-୨୦୨୨)

II. Odisha Motor Vehicles (Registration Functions of Vehicle Scrapping Facility (RVSF)) Policy-2022

ଓଡିଶା ମୋଟର ଯାନ (ପଞ୍ଜୀକରଣଏବଂଯାନ ସ୍କ୍ରାପିଂ ସୁବିଧା)ର ନୀତି -୨୦୨୨

III. Odisha Logistics Policy 2022

ଓଡ଼ିଶା ଲଜିଷ୍ଟିକ୍ ନୀତି ୨୦୨୨

IV. Odisha Port Policy-2022

ଓଡ଼ିଶା ବନ୍ଦର ନୀତି -୨୦୨୨

ବାଣିଜ୍ୟ ଓ ପରିବହନ ବିଭାଗର ପ୍ରମୁଖ ସଫଳତା

Logistics Ease Across Different State (LEADS) - ୨୦୨୨ ମାନଦଣ୍ଡରେ ଭାରତର ଉପକୂଳବର୍ତ୍ତୀ ରାଜ୍ୟଗୁଡ଼ିକ ମଧ୍ୟରେ ଓଡିଶା (୯୦%ରୁ ଅଧିକ) ସ୍କୋର ସହିତ ଆଚିଭରେ ମାନ୍ୟତା ପାଇଛି ।

• (Road Safety Activities) ସଡକ ନିରାପତ୍ତାରେ ଉଚ୍ଚ ପ୍ରଦର୍ଶନକାରୀ:

ସଡକ ସୁରକ୍ଷା ଉପରେ ସୁପ୍ରିମକୋର୍ଟ କମିଟି ଦ୍ୱାରା ନିୟୋଜିତ ଏଜେନ୍ସିର ଅଡିଟି ରିପୋର୍ଟ ଅନୁଯାୟୀ ସଡକ ସୁରକ୍ଷା ବ୍ୟବସ୍ଥା କାର୍ଯ୍ୟକାରୀ କରିବା ପାଇଁ ଓଡିଶାକୁ ଶତକଡା ୬୭.୩% ସହିତ 'ଉଚ୍ଚ ପ୍ରଦର୍ଶନକାରୀ' ମାନ୍ୟତା ଦିଆଯାଇଛି ।

• Motor Vehicle Tax (MV Tax) ମୋଟର ଯାନ ରାଜସ୍ୱ ସଂଗ୍ରହ:

ବର୍ତ୍ତମାନ ମୋଟରଯାନ ରାଜସ୍ୱ ସଂଗ୍ରହ, ଫେବୃଆରୀ ୨୦୨୩ ପର୍ଯ୍ୟନ୍ତ ୧୮୮୭.୪୮ କୋଟି ସଂଗ୍ରହ କରାଯାଇଛି, ଯାହାକି ଗତବର୍ଷର ଏହି ଅବଧି ମଧ୍ୟରେ ସଂଗୃହିତ ରାଜସ୍ୱ ତୁଳନାରେ ୩୦% ଅଧିକ ।

• ଛାତ୍ରଛାତ୍ରୀଙ୍କ ବିମାନ ଯାତ୍ରାର ସୁବିଧା ପ୍ରଦାନ:

ବିଭିନ୍ନ ଅନୁଷ୍ଠାନର ଦିବ୍ୟାଙ୍ଗ (ଭିନ୍ନକ୍ଷମ ବ୍ୟକ୍ତି) ସମେତ ଅନେକ ଛାତ୍ରଙ୍କୁ ରାଉରକେଲାଠାରେ ଆୟୋଜିତ ପୁରୁଷ ହକି ବିଶ୍ୱକପ ମ୍ୟାଚ୍‌୨୦୨୨ ଦେଖିବା ପାଇଁ ବିମାନଯାତ୍ରାର ସୁବିଧା ପ୍ରଦାନ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ଅନେକେ ପ୍ରଥମଥର ପାଇଁ ଉଡ଼ାଣ ଅଭିଜ୍ଞତାକୁ ଉପଭୋଗ କରିବାର ସୁଯୋଗ ପାଇଥିଲେ ।

• ୨୦୨୩-୨୪ ଆର୍ଥିକ ବର୍ଷର ବଜେଟର ମୁଖ୍ୟାଂଶ:

ସାରା ରାଜ୍ୟରେ ସୁନିଶ୍ଚିତ ତଥା ସୁଲଭ ପରିବହନ ସହ ଓଡ଼ିଶାର ଲୋକଙ୍କୁ ସୁବିଧାଜନକ ସେବା ପାଇଁ Location Accessible multimodal Initiative (LACCMI) ନାମକ ଏକ ନୂତନ ଯୋଜନା କରାଯାଇଅଛି । ବସ୍, ରେଳଷ୍ଟେସନ୍, ବାଣିଜ୍ୟିକ କେନ୍ଦ୍ର, ସ୍ୱାସ୍ଥ୍ୟ ସେବା କେନ୍ଦ୍ର ଏବଂ ଶିକ୍ଷାନୁଷ୍ଠାନ ପାଇଁ ଗ୍ରାମରୁ ସହର ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଯାତାୟାତର ସୁଯୋଗ ସୃଷ୍ଟି କରିବା ପାଇଁ ୨୦୨୩-୨୪ ଆର୍ଥିକ ବର୍ଷପାଇଁ ୧୦୦ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଅଛି ।

• ଏତ୍‌ଦବ୍ୟତୀତ ବିଦ୍ୟୁତଚାଳିତ ଯାନ କ୍ରୟରେ ହିତାଧିକାରୀଙ୍କୁ ସବସିଡ୍ ପ୍ରଦାନ ପାଇଁ ୨୦୨୩-୨୪ ଆର୍ଥିକ ବର୍ଷରେ ୨୫ କୋଟି ଟଙ୍କାର ବଜେଟ୍ କରାଯାଇଅଛି ।

• ଡ୍ରାଇଭରଙ୍କର ଯାନ ଚାଳନା ଦକ୍ଷତାର ବିକାଶ ପାଇଁ ଚାରିଟି (୦୪) ଡ୍ରାଇଭିଙ୍ଗ ଟ୍ରେନିଂ ଓ ଗବେଷଣା ପ୍ରତିଷ୍ଠାନ Institute of Driving Training and Research (IDTR)ର ସ୍ଥାପନା,ମୋଟର ଗାଡିର ଫିଟ୍‌ନେସ୍ ଓ ପରୀକ୍ଷା

ପାଇଁ Automatic Testing Station (ATS) ସ୍ଥାପନ ଏବଂ ପଣ୍ୟବାହୀ ଟ୍ରକ ଯାନ ରହଣି ପାଇଁ ଟ୍ରକ୍ ଟର୍ମିନାଲ ପ୍ରତିଷ୍ଠା, ଜଳପଥରେ ଯାତ୍ରା ସମୟରେ (Inland Water Transport (IWT) ଭିତ୍ତିକ ଯାତ୍ରୀମାନଙ୍କ ନିରାପତ୍ତା ପାଇଁ Life buoy Life Jacket ପ୍ରଦାନ ପାଇଁ ବାଣିଜ୍ୟ ଓ ପରିବହନ ବିଭାଗର ୨୦୨୩–୨୪ ଆର୍ଥିକ ବର୍ଷରେ ମୋଟ ୧୫୬ କୋଟି ବଜେଟରେ ରଖାଯାଇଛି ।

• ବିମାନ ଚଳାଚଳ ପାଇଁ UDAN ଯୋଜନା ଅଧୀନରେ ବିମାନ ଅବତରଣ କେନ୍ଦ୍ର ନିର୍ମାଣ ଏବଂ ଉଡ଼ାଣର କ୍ଷତି ଭରଣା ପାଇଁ  Viability Gap Funding (VGF) ସବସିଡି ଏବଂ ଢେଙ୍କାନାଳ ଜିଲ୍ଲାର ବିରାଶାଲଠାରେ ଥିବା Pilot Training Institute,Biju Patnaik Aerospace Academy ବିଶ୍ୱସ୍ତରୀୟ ଉନ୍ନତିକରଣ ତଥା ଏଠାରେ ୫୦୦ ଜଣ ପାଇଲଟ୍‌ଙ୍କୁ ବିଶ୍ୱସ୍ତରୀୟ ପାଇଲଟ୍ ଟ୍ରେନିଙ୍ଗ୍ ପ୍ରଦାନର ସୁବିଧା ପାଇଁ ଆଗାମୀ ୨୦୨୩–୨୪ ଆର୍ଥିକ ବର୍ଷପାଇଁ ବଜେଟ୍‌ରେ ୩୨୫.୦୦ କୋଟି ଟଙ୍କା ରଖାଯାଇଛି  ।

• ରାଜ୍ୟରେ ଚାଲୁଥିବା ରେଳପ୍ରକଳ୍ପ ଏବଂ ନୂତନ ରେଳ ପ୍ରକଳ୍ପ ବିକାଶ ପାଇଁ ବଜେଟ୍‌ରେ ୩୬୦.୦୦ କୋଟି ଟଙ୍କା ରଖାଯାଇଛି ।

• ୨୦୨୩–୨୪ ଆର୍ଥିକ ବର୍ଷରେ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ (OSRTC) ପାଇଁ ୨୧୦.୦୦ କୋଟି ଟଙ୍କାର ବଜେଟରେ ରଖାଯାଇଛି ,ଏଥିରେ ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟରେ ଆମ ବସ୍‌ଷ୍ଟାଣ୍ଡ ନିର୍ମାଣ, ନୂତନ ବସ୍ କ୍ରୟ ଏବଂ Integrated Transport  Management  System (ITMS) କାର୍ଯ୍ୟକାରିତା ପାଇଁ ଭିତ୍ତିଭୂମିର ବିକାଶ କରାଯିବ ।



# ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ବଜେଟ୍ ୨୦୨୩-୨୪

ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ୨୦୦୨୩-୨୪ ଆର୍ଥିକ ବର୍ଷ ପାଇଁ ୨୨,୫୨୭.୮୦ କୋଟିର ଆଗତ ବଜେଟ୍ (ଯାହାର ଅଭିବୃଦ୍ଧି ହାର ୨୦୦୧-୦୨ ବଜେଟ୍‌ର ୧୭୨୮ ପ୍ରତିଶତ) ମୁଖ୍ୟତଃ ଦୁଇ ଗୋଟି ମୁଖ୍ୟ ଧାରା ଉପରେ ସନ୍ନିବେଶିତ ଯଥା:-

- ଗୁଣାତ୍ମକ ଶିକ୍ଷାର ମାନ ବିକାଶ ଏବଂ ବିକାଶର ଧାରାର ସୁବ୍ୟବସ୍ଥିତକରଣ ଓ ସୁସଂଯୋଗୀକରଣ । ପ୍ରଶାସନିକ ଖର୍ଚ୍ଚ ହିସାବରେ ୧୨,୮୬୨(ବାର ହଜାର ଆଠ ଶହ ବାଷଠି)କୋଟିର ବ୍ୟୟ ଅଟକଳ କରାଯାଇଥିବା ସ୍ଥଳେ, କାର୍ଯ୍ୟକ୍ରମ ଖର୍ଚ୍ଚ ହିସାବରେ ୯,୬୬୪(ନ ହଜାର ଛ ଶହ ଚୌଷଠି)କୋଟିର ବ୍ୟୟ ଅଟକଳ କରାଯାଇଅଛି ।

- ଗୁଣାତ୍ମକ ଶିକ୍ଷାର ବିକାଶର ଧାରାରେ ଶିକ୍ଷାନୁଷ୍ଠାନ ଗୁଡ଼ିକର ଭିତ୍ତିଭୂମିର ସର୍ବାଙ୍ଗୀନ ବିକାଶ, ଶିକ୍ଷାର୍ଥୀମାନଙ୍କର ବୌଦ୍ଧିକ, ମାନସିକ ଓ ଶାରିରୀକ ବିକାଶ ଏବଂ ଶିକ୍ଷକ ସମାଜର ସାମଗ୍ରିକ ବିକାଶର ରଞ୍ଜୁ ପରସ୍ପର ସହ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ।

ଶିକ୍ଷା ଅନୁଷ୍ଠାନଗୁଡିକର ଭିତ୍ତିଭୂମି ସର୍ବାଙ୍ଗୀନ ଉନ୍ନତି ପାଇଁ ୨୦୨୩-୨୪ ବଜେଟରେ ୨୭୭୮(ଦୁଇ ହଜାର ସାତ ଶହ ଅଠ ସ୍ତରୀ) କୋଟି ଟଙ୍କାର ପ୍ରାବଧାନ କରାଯାଇଛି । ସରକାରୀ ଏବଂ ସରକାରୀ ଅନୁଦାନପ୍ରାପ୍ତ ବିଦ୍ୟାଳୟଗୁଡ଼ିକରେ ଏବେ ସ୍ମାର୍ଟ ଶ୍ରେଣୀ ଗୃହ, ଅତ୍ୟାଧୁନିକ ଇ-ଲାଇବ୍ରେରୀ, ସାଇନ୍ସ ଲାବୋରେଟରୀ, ଛାତ୍ର ଓ ଛାତ୍ରୀଙ୍କ ପାଇଁ ପୃଥକ୍ ଶୌଚାଳୟ, ସ୍ୱଚ୍ଛ ପାନୀୟଜଳ ବ୍ୟବସ୍ଥା ଏବଂ ଅତ୍ୟାଧୁନିକ କ୍ରୀଡ଼ା ଭିତ୍ତିଭୂମିର ବିକାଶ କରାଯାଉଛି । ଏହି କ୍ରମରେ, ପ୍ରାଥମିକ ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ନିମନ୍ତେ ୧୭କୋଟି, ସୈନିକ ସ୍କୁଲର ନିର୍ମାଣ ନିମନ୍ତେ ୮କୋଟି, ମାଧ୍ୟମିକ ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ନିମନ୍ତେ ୨୬କୋଟି, ଉଚ୍ଚ ମାଧ୍ୟମିକ ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ନିମନ୍ତେ ୬୮କୋଟି ଏବଂ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନ ପାଇଁ ୧କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ, 5T HIGH SCHOOL TRANSFORMATION, ମୋ ସ୍କୁଲ ଅଭିଯାନ, ଓଡିଶା ଆଦର୍ଶ ବିଦ୍ୟାଳୟ ପରି ଅଭିନବ ଯୋଜନାକୁ କାର୍ଯ୍ୟକ୍ଷମ କରାଯାଇଅଛି । Technological Transformation based on Team work in a transparent manner within a stipulated time periodକୁ ମୂଳମନ୍ତ୍ର କରି ଆରମ୍ଭ କରାଯାଇଥିବା 5T HIGH SCHOOL TRANSFORMATION ଅଧୀନରେ ୬୮୭୨ ଗୋଟି ଉଚ୍ଚ ବିଦ୍ୟାଳୟର ରୂପାନ୍ତରଣ ପାଇଁ ୩୪୧୧ କୋଟି ଟଙ୍କା ଖର୍ଚ୍ଚ ହୋଇଛି । ୪ର୍ଥ ପର୍ଯ୍ୟାୟ ପାଇଁ ମୋଟ ୧,୦୦୦ ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ବିଦ୍ୟାଳୟ ରକ୍ଷଣାବେକ୍ଷଣ ନିମନ୍ତେ ୧୦୨କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

ସେହିପରି 'ମୋ ସ୍କୁଲ୍ ଅଭିଯାନ' ଦ୍ୱାରା ୮୦୨୪ ଉଚ୍ଚ ବିଦ୍ୟାଳୟ ଏବଂ ୪୨,୨୩୯ ପ୍ରାଥମିକ ବିଦ୍ୟାଳୟର ବିକାଶ ହୋଇ ଥିବାବେଳେ ୨୦୨୩-୨୪ ଆର୍ଥିକବର୍ଷରେ ୮୦୫କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଅଧୀନରେ ସମସ୍ତ ଆଦର୍ଶ ବିଦ୍ୟାଳୟରେ ଛାତ୍ରୀନିବାସର ବ୍ୟବସ୍ଥା କରାଯାଇଥିବାବେଳେ, ୭୬ ଗୋଟି ଆଦର୍ଶ ବିଦ୍ୟାଳୟରେ ଛାତ୍ର ନିବାସର ପରିକଳ୍ପନା କରାଯାଇଅଛି । ୨୦୨୩-୨୪ ଆର୍ଥିକ ବର୍ଷରେ ଆହୁରି ୨୩୭ଟି ଛାତ୍ରାବାସ ପ୍ରତିଷ୍ଠା କରିବାକୁ ୧୦୦୦ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏତଦ୍ ବ୍ୟତୀତ,ଓଡିଶା ଆଦର୍ଶ ବିଦ୍ୟାଳୟ ସଂଗଠନର ଭିତ୍ତିଭୂମିର ବିକାଶ ନିମନ୍ତେ ୨୦୨୩-୨୪ ବଜେଟ୍‌ରେ ୮୪୧କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

ଶିକ୍ଷାର୍ଥୀ ମାନଙ୍କର ବୌଦ୍ଧିକ, ମାନସିକ, ଓ ଶାରୀରିକ ବିକାଶ ନିମନ୍ତେ ୨୦୨୩-୨୪ ବଜେଟ୍ ରେ ୫୩୯୧ (ପାଞ୍ଚ ହଜାର ତିନି ଶହ ଏକାନବେ) କୋଟି ଟଙ୍କାର ପ୍ରାବଧାନ କରାଯାଇଛି ।

ତନ୍ମଧ୍ୟରୁ, Accessର ସୁବିଧା ନିମନ୍ତେ ୬୬୮ କୋଟି ଟଙ୍କା, ବେସରକାରୀ ଶିକ୍ଷାନୁଷ୍ଠାନରେ ଆର୍ଥିକ ଅନଗ୍ରସର ଶିକ୍ଷାର୍ଥୀମାନଙ୍କ ପ୍ରବେଶର ସୁପରିଚାଳନା ନିମନ୍ତେ ପରିକଳ୍ପିତ Paradarshi Portal ପାଇଁ ୧୦.୦୦ କୋଟି ଟଙ୍କା, କସ୍ତୁରବା ଗାନ୍ଧୀ ବିଦ୍ୟାଳୟ ନିମନ୍ତେ ୩୧୫୦.୦୦ କୋଟି ଟଙ୍କା, ଓଡିଶା ବାହାରେ ଥିବା ଓଡିଆ ଶିକ୍ଷାର୍ଥୀମାନଙ୍କ ନିମନ୍ତେ ୨ କୋଟି ଟଙ୍କା ଏବଂ ଅଧାରୁ ପାଠ ଛାଡିଥିବା ବିଦ୍ୟାର୍ଥୀମାନଙ୍କ ନିମନ୍ତେ, New India Literacy Programmeରେ ୭କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ସଂଖ୍ୟାଲଘୁ ସଂପ୍ରଦାୟର ଶିକ୍ଷାର୍ଥୀ ଏବଂ ଦିବ୍ୟାଙ୍ଗମାନଙ୍କ ନିମନ୍ତେ ସ୍ୱତନ୍ତ୍ର ପ୍ରାବଧାନ କରାଯାଇଅଛି ।

ମୁଖ୍ୟମନ୍ତ୍ରୀ ଶିକ୍ଷା ପୁରସ୍କାର ବାବଦରେ ୨୦୨୩-୨୪ ଆର୍ଥିକ ବର୍ଷରେ ମୋଟ ୧୩୮କୋଟି ଟଙ୍କା ବ୍ୟୟବରାଦ କରାଯାଇଛି । ୫୩,୬୧୮ ଛାତ୍ରଛାତ୍ରୀଏବଂ ୧୮୫୯ ଶିକ୍ଷକ/ଶିକ୍ଷୟିତ୍ରୀ, ୨୩୬୭ଟି ବିଦ୍ୟାଳୟ, ୩ଟି ଜିଲ୍ଲା, ୧୦ଟି ବ୍ଲକ୍, ୪୧୪ ଗ୍ରାମପଞ୍ଚାୟତ, ୪୧୯ SMC ଏବଂ ୪୧୯ଟି ଶ୍ରେଷ୍ଠ Alumniକୁ ମୁଖ୍ୟମନ୍ତ୍ରୀ ଶିକ୍ଷା ପୁରସ୍କାର ପ୍ରଦାନ କରାଯିବାର ବିଧି ବ୍ୟବସ୍ଥା କରାଯାଇଅଛି ।

ସେହିପରି, ମୁଖ୍ୟମନ୍ତ୍ରୀ ମେଧାବୀ ଛାତ୍ର ପ୍ରୋତ୍ସାହନ ବାବଦରେ ମୋଟ ୧୯କୋଟି ଟଙ୍କା ମଧ୍ୟରୁ ଗଣିତ କ୍ଷେତ୍ରରେ ୯କୋଟି, ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ୧କୋଟି ଏବଂ ଓଡିଆ ଭାଷାବୃତ୍ତି ବାବଦରେ ୧କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଅଛି । ବିଦ୍ୟାର୍ଥୀମାନଙ୍କ Ex-Gratia Grant ବାବଦରେ ୩କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଅଛି । "PM-POSHAN YOJANA" ରେ ରାଜ୍ୟର ଅଂଶଧନ ହିସାବରେ ୯୦୦.୦୦ କୋଟି ଟଙ୍କା ଦିଆଯିବାର ବ୍ୟବସ୍ଥାସହ ଏହି ଯୋଜନାକୁ ଅଧିକ କ୍ରିୟାଶୀଳ କରିବା ପାଇଁ ୧୦୨ କୋଟି ଟଙ୍କା ରାଜ୍ୟ ତରଫରୁ ଅତିରିକ୍ତ ବ୍ୟୟ ବରାଦ ଅଟକଳ କରାଯାଇଛି ।

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ବିଦ୍ୟାର୍ଥୀମାନଙ୍କ ପାଇଁ Tuition Fee Exemption ବାବଦରେ ୮କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ସରକାରୀ ବିଦ୍ୟାଳୟର ବିଦ୍ୟାର୍ଥୀମାନଙ୍କ ନିମନ୍ତେ Note Bookର ବ୍ୟବସ୍ଥା କରାଯାଇଅଛି ।

ଗଙ୍ଗାଧର ମେହେର ଶିକ୍ଷା ମାନବୃଦ୍ଧି ଯୋଜନା (ମାଗଣା ସାଇକେଲ ବଣ୍ଟନ)

ପୂର୍ବରୁ ପ୍ରତି ଶିକ୍ଷାର୍ଥୀଙ୍କୁ ସାଇକେଲ ବାବଦରେ ୨୬୦୦ଟଙ୍କା ଯୋଗାଇ ଦିଆଯାଉଥିବା ବେଳେ ୨୦୨୩-୨୪ ଆର୍ଥିକବର୍ଷଠାରୁ ଏହାକୁ ୩୫୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏଥିପାଇଁ ୧୫୫୦୦.୦୦ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ସେହିପରି ଗଙ୍ଗାଧର ମେହେର ଶିକ୍ଷା ମାନବୃଦ୍ଧି ଯୋଜନା (ମାଗଣା ସ୍କୁଲ ୟୁନିଫର୍ମ ଯୋଗାଣ) ଯୋଜନାରେ ପୂର୍ବରୁ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କୁ ୬୦୦ ଟଙ୍କା ପ୍ରଦାନ କରାଯାଉଥିବା ବେଳେ, ୨୦୨୩-୨୪ ଆର୍ଥିକ ବର୍ଷରେ ସ୍କୁଲ ୟୁନିଫର୍ମ ଓ ଅନ୍ୟାନ୍ୟ ସହାୟକ ସାମଗ୍ରୀ ପାଇଁ ତାହାକୁ ବୃଦ୍ଧି କରାଯାଇ ୧,୦୦୦ ଟଙ୍କା କରିବାକୁ ପ୍ରସ୍ତାବ ରହିଛି । ଏହାସହ ସରକାରୀ ତଥା ସରକାରୀ ଅନୁଦାନପ୍ରାପ୍ତ ବିଦ୍ୟାଳୟର ନବମ ଓ ଦଶମ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଇଁ ମଧ୍ୟ ମାଗଣା ସ୍କୁଲ ୟୁନିଫର୍ମ ଯୋଗାଇ ଦେବାକୁ ପ୍ରସ୍ତାବ ଦିଆଯାଇଛି । ୨୦୨୩-୨୪ ଆର୍ଥିକ ବର୍ଷରେ ଏହି ଯୋଜନା ନିମନ୍ତେ ୨୩୪କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଲୁକ୍କାୟିତ ପ୍ରତିଭାର ଉନ୍ମେଷ ନିମନ୍ତେ ବିଜ୍ଞାନ ଶିକ୍ଷାର ପ୍ରଚାର ଓ ପ୍ରସାର ନିମନ୍ତେ ୬କୋଟି ଟଙ୍କା, ୧୪,୧୭ ଏବଂ ୧୮ ବର୍ଷର ଶିକ୍ଷାର୍ଥୀଙ୍କର Games Sportsରେ ଦକ୍ଷତା ବୃଦ୍ଧି ନିମନ୍ତେ ୬କୋଟି ଟଙ୍କା, Red-Cross, Bharat Scouts Guides ନିମନ୍ତେ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିବା ପାଇଁ ୨କୋଟି ଟଙ୍କା, ଆତ୍ମରକ୍ଷା କୌଶଳ ଶିକ୍ଷା ନିମନ୍ତେ ୩କୋଟି ଟଙ୍କା ଏବଂ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା ମୂଳକ ପରୀକ୍ଷା କରିବା ନିମନ୍ତେ ୭କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ଓଡ଼ିଆ ଶିକ୍ଷାକୁ ଲୋକପ୍ରିୟ କରିବା ଏବଂ ଛାତ୍ରଛାତ୍ରୀଙ୍କୁ ଓଡ଼ିଆ ଭାଷା ପ୍ରତି ଆକୃଷ୍ଟ କରିବାକୁ ପ୍ରଥମରୁ ଅଷ୍ଟମ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଇଁ ପ୍ରସ୍ତୁତ ହେଉଥିବା 'ଶିଶୁ ଲେଖା' ପତ୍ରିକାକୁ ଏଣିକି ସବୁ ବିଦ୍ୟାଳୟକୁ ପଠାଇବାକୁ ନିଷ୍ପତ୍ତି ନିଆଯାଇଅଛି ।

୨୦୨୩-୨୪ରେ ୧୦୪୫ କୋଟି ଟଙ୍କାରୁ ଊର୍ଦ୍ଧ୍ୱର ପ୍ରାବଧାନ କରାଯାଇ ୫୧,୫୩୫ ପଦବୀରେ ନିଯୁକ୍ତି/ ନିୟୋଜନ ନିମିତ୍ତ ସୁଯୋଗ ସୃଷ୍ଟି କରାଯାଇଛି । ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ତରରେ ୨୨୪୫ ଗୋଟି ପଦବୀ, ମାଧ୍ୟମିକ ବିଦ୍ୟାଳୟ ସ୍ତରରେ ୧୭,୪୨୮ ଗୋଟି ପଦବୀ, ପ୍ରାଥମିକ ବିଦ୍ୟାଳୟସ୍ତରରେ ୨୦,୦୦୦ ଗୋଟି ପଦବୀ, ଓଡିଶା ଆଦର୍ଶ ବିଦ୍ୟାଳୟମାନଙ୍କରେ ୧୦୭୦ ପଦବୀ, ଓଡିଶା ସମଗ୍ରଶିକ୍ଷା ଅଧୀନରେ ୩୮୦ ଗୋଟି ପଦବୀ ଏବଂ ୧୦,୪୧୨ ଟି Watch Ward ପଦବୀ ପୂରଣ କରାଯିବା ପାଇଁ ପ୍ରସ୍ତାବ ରହିଅଛି ।

ଏତଦ୍‌ବ୍ୟତୀତ, କେନ୍ଦ୍ରୀୟ ଅନୁଦାନରୁ ବଞ୍ଚିତ ୧୧୧୭ IEV ଏବଂ ୨୧୭ MLEVs ମାନଙ୍କୁ ୮୬୩.୬୫ ଲକ୍ଷ ଟଙ୍କାର ବଜେଟ୍ ପ୍ରାବଧାନ କରାଯାଇ ପୁନଃ ନିଯୁକ୍ତି ଦିଆଯାଇଛି ।

କନ୍ଧମାଳ, ମାଲକାନାଗିରି, ମୟୂରଭଞ୍ଜ, ସମ୍ବଲପୁର ଓ ସୁନ୍ଦରଗଡ ଜିଲ୍ଲାରେ ନିୟୋଜିତ ୨୨୧ ଜଣ ବହୁଭାଷୀ ଶିକ୍ଷକଙ୍କର ମାସିକ ପାରିଶ୍ରମିକ ୩୨୦୦ ଟଙ୍କାରୁ ୫୩୭୯ ଟଙ୍କାକୁ ବୃଦ୍ଧି କରାଯାଇଅଛି । ସେହିପରି, ୯୦୬ ଟି ମାଧ୍ୟମିକ ବିଦ୍ୟାଳୟ ଏବଂ ୫୫ଟି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ କାର୍ଯ୍ୟରତ ୧୯୨୦ଜଣ ପ୍ରଶିକ୍ଷକ/ପ୍ରଶିକ୍ଷିକାଙ୍କର ମାସିକ ପାରିତୋଷିକ ଟ.୧୫,୦୫୦/- ରୁ ଟ.୨୦,୦୦୦/- କୁ ବୃଦ୍ଧି କରାଯାଇଥିବାବେଳେ, ୬୪ ଜଣ ସଂଯୋଜକ/ସଂଯୋଜିକାମାନଙ୍କର ମାସିକ ପାରିତୋଷିକ ଟ.୨୫,୦୦୦/- ରୁ ଟ.୩୦,୦୦୦/- କୁ ବୃଦ୍ଧି କରାଯାଇଅଛି ।

ଶିକ୍ଷକମାନଙ୍କ ପ୍ରଶିକ୍ଷଣ ଏବଂ ଦକ୍ଷତା ବୃଦ୍ଧି ନିମିତ୍ତ ୬୦କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଥିବା ବେଳେ, World Bank ସହାୟତାରେ ନୂତନ ଭାବେ ପ୍ରଚଳିତ Strengthening Teaching- Learning and Result for States (STARS) ନିମନ୍ତେ ରାଜ୍ୟ ଅଂଶଧନ ଭାବେ ୧୨୦.୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

ଦ୍ୱନ୍ଦ୍ୱାତୀତଂ, ଗୁଣାତୀତଂ ଏବଂ ତ୍ରିଗୁଣରହିତାଂ ପଦ୍ଧତିରେ ପ୍ରସ୍ତୁତ ହୋଇଥିବା ଆମର ବଜେଟ୍ Interest Articulation, Aggregation ଏବଂ Adjudication ପ୍ରକ୍ରିୟାରେ ସମସ୍ତ ଅଂଶୀଦାରଙ୍କ ପାଇଁ ସୃଷ୍ଟି କରିପାରିଛି ଏକ ନୂତନ ସୁଯୋଗ । ଏହି ପରିପ୍ରେକ୍ଷୀରେ, ଆମ ସରକାର ନୂତନ ଅନୁଦାନପ୍ରାପ୍ତ ବେସରକାରୀ ଉଚ୍ଚବିଦ୍ୟାଳୟ, ପ୍ରାଥମିକ ବିଦ୍ୟାଳୟ, ସଂସ୍କୃତ ଟୋଲ ଏବଂ ମାଦ୍ରାସାରେ କାର୍ଯ୍ୟରତ କର୍ମଚାରୀମାନଙ୍କୁ ୭ମ ବେତନ କମିଶନଙ୍କ ସୁପାରିସ୍ ଅନୁଯାୟୀ ବର୍ଦ୍ଧିତ ହାରରେ ଦରମା ପ୍ରଦାନ କରିବାକୁ ସ୍ଥିର କରିଛନ୍ତି। ଏଥିରେ, ୨୬,୧୬୪ କର୍ମଚାରୀ ଉପକୃତ ହୋଇବାକୁ ଯାଉଥିବାବେଳେ, ଏଥିପାଇଁ ୨୮୦.୪୮ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଅଛି ।

ଆମର ବିଶ୍ୱାସ-

When learning is purposeful, Creativity Blossoms
When Creativity Blossom, Thinking Emanates,
When Thinking Emanates, Knowledge is Fully Lit,
When Knowledge is Lit, Economy Flourishes.

ଆଗାମୀ ଦିନରେ ଆପଣ ସଭିଙ୍କର ସହଯୋଗିତା ଏବଂ ସହଭାଗିତାକୁ ପାଥେୟ କରି ଆମ ରାଜ୍ୟ ଓଡିଶା, ଶିକ୍ଷା କ୍ଷେତ୍ରରେ ସମଗ୍ର ଭାରତରେ ଏକ ଅଗ୍ରଣୀ ରାଜ୍ୟ ଭାବେ ବିବେଚିତ ହେବ ବୋଲି ଆଶା ଏବଂ ବିଶ୍ୱାସ ।



# ମିଶନ ଶକ୍ତି ବିଭାଗର ବଜେଟ୍ ୨୦୨୩-୨୪

ମିଶନ ଶକ୍ତି ଆଜି ଓଡ଼ିଶାର ୭୦ ଲକ୍ଷରୁ ଅଧିକ ମହିଳାଙ୍କ ଜୀବନରେ ପରିବର୍ତ୍ତନ ଆଣିଛି । ଏଥି ନିମନ୍ତେ ମହିଳାମାନଙ୍କୁ ୬ ଲକ୍ଷରୁ ଅଧିକ ସ୍ୱୟଂ ସହାୟକ ଗୋଷ୍ଠୀରେ ସଂଗଠିତ କରି ରୋଜଗାରଭିତ୍ତିକ କାର୍ଯ୍ୟକ୍ରମ ଏବଂ ବିଭିନ୍ନ ସରକାରୀ ଯୋଜନାରେ ସମ୍ପୃକ୍ତ କରାଇ ସଶକ୍ତ କରାଯାଉଛି । ନିରନ୍ତର ଆର୍ଥିକ ସହାୟତା, ଦକ୍ଷତା ବିକାଶ ତାଲିମ ଏବଂ ନୂତନ ଜୀବିକାର ରାହା ଦେଖାଇ ରାଜ୍ୟ ସରକାର ପ୍ରତ୍ୟେକ ମହିଳାଙ୍କ ମନରେ ଆତ୍ମବିଶ୍ୱାସ ଏବଂ ଗର୍ବର ଭାବନା ସୃଷ୍ଟି କରିଛନ୍ତି ।

**ବଜେଟ୍ ପାଣ୍ଠି**

ରାଜ୍ୟ ସରକାର ଏହି ବିଭାଗ ପାଇଁ ୨୦୨୩-୨୪ ଆର୍ଥିକ ବର୍ଷରେ ୨,୫୫୪ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରିଛନ୍ତି, ଯାହାକି ଗତ ବର୍ଷର ବଜେଟ୍ ତୁଳନାରେ ୨୭ ପ୍ରତିଶତ ଅଧିକ ।

**ମିଶନ୍ ଶକ୍ତି ସ୍କୁଟର ଯୋଜନା**

ଗତିଶୀଳତା ହେଉଛି ସଶକ୍ତିକରଣ । ମିଶନ ଶକ୍ତି ସ୍କୁଟର ଯୋଜନା - କମ୍ୟୁନିଟି ସପୋର୍ଟ ଷ୍ଟାଫ୍ ଏବଂ ଇସି ସଦସ୍ୟଙ୍କ ପାଇଁ ବୈଦ୍ୟୁତିକ ସ୍କୁଟର ନିମନ୍ତେ ସହାୟତା ଯୋଗାଇ ଦିଆଯିବ । ଏହି ଯୋଜନା ଅଧୀନରେ ଇଲେକ୍ଟ୍ରିକ୍ ସ୍କୁଟର କ୍ରୟ ପାଇଁ ଦିଆଯାଉଥିବା ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବ୍ୟାଙ୍କ ଋଣ ଉପରେ ସମ୍ପୂର୍ଣ୍ଣ ସୁଧ ରିହାତି ପ୍ରସ୍ତାବ ଦିଆଯାଇଛି । ଏଥିପାଇଁ ୫୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**ଇଣ୍ଡଷ୍ଟ୍ରିଆଲ୍ ପାର୍କ**

ମିଶନ ଶକ୍ତି ବିଭାଗ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ଉଦ୍ୟୋଗରେ ପରିଣତ କରିବାକୁ ଲକ୍ଷ୍ୟ ରଖିଛି । ଏଥିପାଇଁ ରାଜ୍ୟ ସରକାର ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ ଇଣ୍ଡଷ୍ଟ୍ରିଆଲ୍ ପାର୍କ ପ୍ରତିଷ୍ଠା କରିବା ପାଇଁ ଅନୁମୋଦନ କରିଛନ୍ତି । ଇଣ୍ଡଷ୍ଟ୍ରିଆଲ୍ ପାର୍କ ପ୍ରତିଷ୍ଠା ପାଇଁ ୧୫୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**ସୁଧ ଛାଡ**

ସ୍ୱୟଂ ସହାୟକ ଗୋଷ୍ଠୀର ମହିଳାମାନଙ୍କୁ ଉଦ୍ୟୋଗୀରେ ରୂପାନ୍ତରଣ କରିବା ଦିଗରେ ପ୍ରୋତ୍ସାହନ ଦେବା ପାଇଁ ରାଜ୍ୟ ସରକାର ବିନା ସୁଧରେ ମିଶନ ଶକ୍ତି ଋଣକୁ ୩ ଲକ୍ଷ ଟଙ୍କାରୁ ୫ ଲକ୍ଷ ଟଙ୍କାକୁ ବୃଦ୍ଧି କରିଛନ୍ତି । ମିଶନ ଶକ୍ତି ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ୧୦,୦୦୦ କୋଟି ଟଙ୍କାର ବ୍ୟାଙ୍କ ଋଣ ଯୋଗାଇ ଦେବା ପାଇଁ ୨୨୦ କୋଟି ଟଙ୍କାର ସୁଧ ଫେରସ୍ତ ବ୍ୟବସ୍ଥା କରାଯାଇଛି । ମା'ମାନଙ୍କ ବ୍ୟାଙ୍କ ଖାତାକୁ ସିଧାସଳଖ ସୁଧ ରିହାତି ଫେରସ୍ତ କରାଯାଉଅଛି ।

**ତାଲିମ ଏବଂ ଦକ୍ଷତା ବିକାଶ**

ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ଉଦ୍ୟୋଗୀରେ ପରିଣତ କରିବା ପାଇଁ ତାଲିମ, ଜୀବନ ଜୀବିକା ଓ ଦକ୍ଷତା ବିକାଶ ଉପରେ ମିଶନ ଶକ୍ତି ବିଭାଗ ଦ୍ୱାରା ଗୁରୁତ୍ୱ ଦିଆଯାଉଅଛି । ବ୍ଲକ୍ ସ୍ତରରେ କୃଷି ପ୍ରକ୍ରିୟାକରଣ, ବିୟୁଟି, ଡିଜିଟାଲ ଓ ବିଜନେସ୍ ମ୍ୟାନେଜମେଣ୍ଟ, ଫ୍ୟାଶନ୍ ଡିଜାଇନିଂ, କାଫେ ଏବଂ ଖାଦ୍ୟ ପ୍ରସ୍ତୁତି ଇତ୍ୟାଦି ଉପରେ ତାଲିମ ପାଇଁ ୭୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**ଜୀବିକା, ଦକ୍ଷତା ବିକାଶ ଏବଂ ବଜାର ବ୍ୟବସ୍ଥା**

ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ସାରା ରାଜ୍ୟରେ ୫୦୦ଟି ମିଶନ ଶକ୍ତି ବଜାର ପ୍ରତିଷ୍ଠା କରାଯିବ । ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ୧୦,୦୦୦ କୋଟି ଟଙ୍କା ମୂଲ୍ୟର ସରକାରୀ ବ୍ୟବସାୟ ଯୋଗାଇବାକୁ ରାଜ୍ୟ ସରକାର ଯୋଜନା କରିଛନ୍ତି । ଏଥିପାଇଁ ୩୭୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**ସଂଘ ଓ ମହାସଂଘ ସୁଦୃଢ଼ୀକରଣ**

୩୦ ଗୋଟି ଜିଲ୍ଲାସ୍ତରୀୟ ମିଶନ ଶକ୍ତି ମହାସଂଘକୁ ୧ କୋଟି ଟଙ୍କା ଲେଖାଏଁ ଆବର୍ତ୍ତନ ପାଣ୍ଠି ପ୍ରଦାନ ବ୍ୟବସ୍ଥା କରାଯାଇଛି । ୩୩୮ ଗୋଟି ବ୍ଲକସ୍ତରୀୟ ମହାସଂଘକୁ ୫୦ ଲକ୍ଷ ଟଙ୍କା ଲେଖାଏଁ ଆବର୍ତ୍ତନ ପାଣ୍ଠି ପ୍ରଦାନ ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ଜିଲ୍ଲା ଓ ବ୍ଲକସ୍ତରୀୟ ମହାସଂଘର ଦୈନନ୍ଦିନ କାର୍ଯ୍ୟ ପରିଚାଳନା ପାଇଁ ଆର୍ଥିକ ସହାୟତାର ବ୍ୟବସ୍ଥା କରାଯାଇଛି । ଗ୍ରାମପଞ୍ଚାୟତ ସ୍ତରୀୟ ମହାସଂଘ କାର୍ଯ୍ୟାଳୟ ନିମନ୍ତେ ଭିତ୍ତିଭୂମିର ବ୍ୟବସ୍ଥା କରାଯାଇଛି । ବ୍ଲକ ଓ ପଞ୍ଚାୟତସ୍ତରୀୟ ମହାସଂଘର କାର୍ଯ୍ୟନିର୍ବାହୀ କମିଟି ସଦସ୍ୟଙ୍କ ପାଇଁ ବୈଠକ ଓ ଗସ୍ତ ଭତ୍ତାର ମଧ୍ୟ ବ୍ୟବସ୍ଥା କରାଯାଇଛି । ଏହିସବୁ ବ୍ୟବସ୍ଥା ନିମନ୍ତେ ବାର୍ଷିକ ୨୬୬.୫୭ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

**ଭିତ୍ତିଭୂମ**

ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କର ନିୟମିତ ବୈଠକ ଓ ତାଲିମ ସହିତ ସ୍ୱୟଂ ସହାୟକ ଗୋଷ୍ଠୀ ସାମଗ୍ରୀର ବିକ୍ରି ବ୍ୟବସ୍ଥା ନିମନ୍ତେ ପ୍ରତ୍ୟେକ ଗ୍ରାମପଞ୍ଚାୟତ ଏବଂ ୱାର୍ଡରେ ମିଶନ ଶକ୍ତି ଗୃହ ଏବଂ ବ୍ଲକ ଓ ଜିଲ୍ଲା ସ୍ତରରେ ମିଶନ ଶକ୍ତି ଭବନ ନିର୍ମାଣ କରାଯାଉଛି । ସେହିଭଳି ପ୍ରତ୍ୟେକ ଗ୍ରାମପଞ୍ଚାୟତ ସ୍ତରୀୟ ସଂଘ ପାଇଁ କାର୍ଯ୍ୟାଳୟ ସହିତ ମାର୍କେଟ କମ୍ପ୍ଲେକ୍ସ ବ୍ୟବସ୍ଥା କରାଯାଇଛି । ଏଥିପାଇଁ ୩୨୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।



# ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ପଛୁଆ ବର୍ଗ କଲ୍ୟାଣ ବିଭାଗର ବଜେଟ୍ ୨୦୨୩-୨୪

୨୦୧୧ ମସିହା ଜନଗଣନା ଅନୁଯାୟୀ ଅନୁସୂଚିତ ଜନଜାତି ସମ୍ପ୍ରଦାୟର ତଥା ଅନୁସୂଚିତ ଜାତି ସମ୍ପ୍ରଦାୟର ମୋଟ ଜନସଂଖ୍ୟା ସମଗ୍ର ରାଜ୍ୟର ମୋଟ ଜନସଂଖ୍ୟାର ୩୯.୯୮% ଅଟେ । ଏତଦବ୍ୟତୀତ ସଂଖ୍ୟାଲଘୁ ସମ୍ପ୍ରଦାୟ ରାଜ୍ୟ ଜନସଂଖ୍ୟାର ୫.୫% ଅଟେ ଏବଂ ପଛୁଆ ବର୍ଗ ସମେତ ସମସ୍ତ ବର୍ଗର ଜନସାଧାରଣଙ୍କର ସାମାଜିକ, ଅର୍ଥନୈତିକ, ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ଜୀବିକା ନିର୍ବାହ ନିମନ୍ତେ ରାଜ୍ୟ ସରକାର ଅଗ୍ରାଧିକାର ଭିତ୍ତିରେ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ କରୁଛନ୍ତି ।

ଏହି ବିଭାଗ ରାଜ୍ୟ ସ୍ତରୀୟ ଯୋଜନା, କେନ୍ଦ୍ର ସ୍ତରୀୟ ଯୋଜନା, କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ତଥା ପ୍ରଶାସନିକ ବ୍ୟୟ ନିମନ୍ତେ ଭାରତ ସରକାରଙ୍କ ଜନଜାତି ବ୍ୟାପାର ମନ୍ତ୍ରଣାଳୟ, ସାମାଜିକ ନ୍ୟାୟ ତଥା ସଶକ୍ତିକରଣ ମନ୍ତ୍ରଣାଳୟ, ସଂଖ୍ୟାଲଘୁ ମନ୍ତ୍ରଣାଳୟ ସହାୟତା ମାଧ୍ୟମରେ ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି, ସଂଖ୍ୟାଲଘୁ ସମ୍ପ୍ରଦାୟ ତଥା ପଛୁଆ ବର୍ଗ ଲୋକମାନଙ୍କର କଲ୍ୟାଣ ନିମନ୍ତେ ଆର୍ଥିକ ସହାୟତା ପାଇଥାଏ । ଏହି ସବୁ ଆର୍ଥିକ ସହାୟତା ମଧ୍ୟରେ ଉଦ୍ଦିଷ୍ଟ ସମ୍ପ୍ରଦାୟମାନଙ୍କ ପାଇଁ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ, ଭିତ୍ତିଭୂମି ବିକାଶ ତଥା କାର୍ଯ୍ୟକ୍ରମର ସଫଳ କାର୍ଯ୍ୟାନ୍ୱୟନ ନିମନ୍ତେ ଆବଶ୍ୟକ ପଡୁଥିବା ରାଜସ୍ୱ ଖର୍ଚ୍ଚ, ଦରମା, ଭତ୍ତା ଇତ୍ୟାଦି ବାବଦରେ ବ୍ୟୟ କରାଯାଇଥାଏ ।

୨୦୨୩-୨୪ ଆର୍ଥିକ ବର୍ଷରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ପଛୁଆ ବର୍ଗ କଲ୍ୟାଣ ବିଭାଗ ନିମନ୍ତେ କାର୍ଯ୍ୟକ୍ରମ ବ୍ୟୟ ଏବଂ ପ୍ରଶାସନିକ ବ୍ୟୟର ସର୍ବମୋଟ ଅଟକଳ ୪୬୫୧ କୋଟି ୭୫ ଲକ୍ଷ ୬୯ ହଜାର ଟଙ୍କା ଓ ନିର୍ଦ୍ଦେଶିତ ରାଶି ୨ ଲକ୍ଷ ଟଙ୍କାର ବଜେଟ ଅଟକଳ ପ୍ରସ୍ତୁତ କରାଯାଇଅଛି ।

କାର୍ଯ୍ୟକ୍ରମ ବ୍ୟୟର ରାଜ୍ୟ ସ୍ତରୀୟ କାର୍ଯ୍ୟକ୍ରମ ବାବଦକୁ ୨୨୪୫ କୋଟି ୯୭ ଲକ୍ଷ ୪୫ ହଜାର ଟଙ୍କା, କେନ୍ଦ୍ର ସ୍ତରୀୟ ଯୋଜନା ବାବଦକୁ ୧୪୦ କୋଟି ଟଙ୍କା ଏବଂ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ବାବଦକୁ ୧୨୧୫ କୋଟି ୮୦ ଲକ୍ଷ ୨୪ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି । ଏହିପରି ମୋଟ କାର୍ଯ୍ୟକ୍ରମ ବ୍ୟୟ ବାବଦକୁ ୩୬୦୧ କୋଟି ୭୭ ଲକ୍ଷ ୬୯ ହଜାର ଟଙ୍କା ଓ ପ୍ରଶାସନିକ ବ୍ୟୟ ବାବଦକୁ ୧୦୪୯ କୋଟି ୯୮ ଲକ୍ଷ ଟଙ୍କା ଓ ନିର୍ଦ୍ଦେଶିତ ରାଶି ୨ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

ଉପରୋକ୍ତ ଯୋଜନା ଖର୍ଚ୍ଚ ଅଟକଳ ମଧ୍ୟରୁ ଅନୁସୂଚିତ ଜନଜାତିମାନଙ୍କର ଉନ୍ନୟନ ନିମନ୍ତେ ୨୫୩୧ କୋଟି ୮୮ ଲକ୍ଷ ୧୮ ହଜାର ଟଙ୍କା, ଅନୁସୂଚିତ ଜାତିମାନଙ୍କର ଉନ୍ନୟନ ନିମନ୍ତେ ୭୯୧ କୋଟି ୪୪ ଲକ୍ଷ ୫୦ ହଜାର ଟଙ୍କା, ଅନ୍ୟାନ୍ୟ ପଛୁଆ ବର୍ଗମାନଙ୍କ ଉନ୍ନୟନ ନିମନ୍ତେ ୨୪୬ କୋଟି ୧୦ ଲକ୍ଷ ୧୫ ହଜାର ଟଙ୍କା ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟ ଉନ୍ନୟନ ନିମନ୍ତେ ୩୨ କୋଟି ୩୪ ଲକ୍ଷ ୮୬ହଜାର ଟଙ୍କା ଖର୍ଚ୍ଚ ଧାର୍ଯ୍ୟ କରାଯାଇଅଛି ।

**କାର୍ଯ୍ୟକ୍ରମ ବ୍ୟୟ (ରାଜ୍ୟ ସ୍ତରୀୟ ଯୋଜନା)**

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କର ଶିକ୍ଷାର ବିକାଶ ନିମନ୍ତେ ପ୍ରାୟ ୧୬୩୮ଟି ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରି ଛାତ୍ରଛାତ୍ରୀମାନଙ୍କର ଗୁଣାତ୍ମକ ଶିକ୍ଷା ଦାନ ନିମନ୍ତେ ୫୫୬୮ରୁ ଉର୍ଦ୍ଧ୍ୱ ଛାତ୍ରାବାସର ବ୍ୟବସ୍ଥା କରାଯାଇଛି ।

ଏହି ବର୍ଗର ପ୍ରାୟ୧୫ ଲକ୍ଷରୁ ଉର୍ଦ୍ଧ୍ୱ ଛାତ୍ରଛାତ୍ରୀ ପ୍ରାକମାଟ୍ରିକ ବୃତ୍ତି ପାଉଛନ୍ତି । ଏହି ବିଭାଗର Resolution No.୯୮୦୫ ତା ୦୪.୦୬. ୨୦୨୨ ଅନୁସାରେ ଆବାସିକ ବିଦ୍ୟାଳୟର ଅନ୍ତେବାସୀ ଛାତ୍ରୀମାନଙ୍କ ପାଇଁ ମାସିକ ୧୦୦୦ ଟଙ୍କା ଏବଂ ଛାତ୍ରମାନଙ୍କ ପାଇଁ ୯୫୦ ଟଙ୍କା ଲେଖାଏଁ ଛାତ୍ରବୃତ୍ତି ଯୋଗାଇ ଦିଆଯାଉଅଛି । ଏହି ଅର୍ଥ ରାଶିରୁ ସେମାନଙ୍କ ଖାଦ୍ୟପେୟ ତଥା ଅନ୍ୟାନ୍ୟ ଖର୍ଚ୍ଚ ବହନ କରାଯାଉଛି ।

- ୨୦୨୩-୨୪ ଆର୍ଥିକ ବର୍ଷରେ ଅନୁସୂଚିତ ଜନଜାତି ଓ ଜାତି ଛାତ୍ରଛାତ୍ରୀମାନଙ୍କ ପ୍ରାକ ମାଟ୍ରିକ ବିଦ୍ୟାବୃତ୍ତି (ମୁଖ୍ୟମନ୍ତ୍ରୀ ମେଧାବୀ ଛାତ୍ର ପ୍ରୋତ୍ସାହନ ଯୋଜନା) ପାଇଁ ୫୮୭ କୋଟି ୮୨ଲକ୍ଷ ୯୨ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।
- ଅନୁସୂଚିତ ଜନଜାତି ଓ ଜାତିର ଛାତ୍ରଛାତ୍ରୀ ମାନଙ୍କ ମାଟ୍ରିକ ପରବର୍ତ୍ତୀ ବିଦ୍ୟାବୃତ୍ତି (ମୁଖ୍ୟମନ୍ତ୍ରୀ ମେଧାବୀ ଛାତ୍ର ପ୍ରୋତ୍ସାହନ ଯୋଜନା) ପାଇଁ ୬୩ କୋଟି ଟଙ୍କାର ଖର୍ଚ୍ଚ ଅଟକଳ କରାଯାଇଛି ।
- ନବମ ଶ୍ରେଣୀଠାରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନରତ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀ ମାନଙ୍କୁ ବିନା ମୂଲ୍ୟରେ ପୋଷାକ ଯୋଗାଇ ଦେବା ନିମନ୍ତେ ୮ କୋଟି ୯ ଲକ୍ଷ ୫୫ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।
- ଆବାସିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ସମୂହ ସ୍ୱାସ୍ଥ୍ୟ ରକ୍ଷା, ପରିଚାଳନା ତଥା ପରିଷ୍କାର ପରିଚ୍ଛନ କାର୍ଯ୍ୟ ନିର୍ବାହ କରିବା ପାଇଁ ନିଯୁକ୍ତ ANM ଓ Nurseଙ୍କ ପାରିଶ୍ରମିକ ବାବଦକୁ ୪ କୋଟି ୬୫ ଲକ୍ଷ ୮୬ ହଜାର ଟଙ୍କା ବଜେଟ ପ୍ରସ୍ତୁତ କରାଯାଇଅଛି ।
- ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀମାନଙ୍କୁ ବିନା ମୂଲ୍ୟରେ ପାଠ୍ୟ ପୁସ୍ତକ ଓ ଲିଖନ ସାମଗ୍ରୀ ଯୋଗାଇ ଦେବା ବାବଦକୁ ୫୬ କୋଟି ଟଙ୍କା ବଜେଟରେ ବ୍ୟୟବରାଦ କରାଯାଇଅଛି ।
- ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଅଧ୍ୟୟନରତ ଅନୁସୂଚିତ ଜନଜାତି / ଅନୁସୂଚିତ ଜାତିବିଜ୍ଞାନ ଏବଂ ବାଣିଜ୍ୟ ଛାତ୍ରଛାତ୍ରୀମାନଙ୍କୁ ପାଠ୍ୟପୁସ୍ତକ ପ୍ରଦାନ ନିମନ୍ତେ୨୦୨୩-୨୪ ଆର୍ଥିକ ବର୍ଷରେ ୨କୋଟି୬୩ ଲକ୍ଷ ୬୮ ହଜାର ଟଙ୍କାର ପ୍ରସ୍ତାବ ରଖାଯାଇଛି ।
- ଶିକ୍ଷା ପ୍ରତିଷ୍ଠାନ ଓ କର୍ମଚାରୀଙ୍କ ବାସଗୃହ ନିର୍ମାଣ, ପୂର୍ଣ୍ଣାଙ୍ଗ ଓ ମରାମତି ତଥା ବିଦ୍ୟୁତକରଣ ନିମନ୍ତେ ୨୫୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀ ମାନଙ୍କ ପାଇଁ ଛାତ୍ରାବାସ ନିର୍ମାଣ ନିମିତ୍ତ ବଜେଟରେ ୧୫୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।

- ଅନୁସୂଚିତ ଜାତିଙ୍କ ପାଇଁ ଉନ୍ନୟନ କାର୍ଯ୍ୟ ଯୋଜନାରେ ୨୦୨୩-୨୪ ଆର୍ଥିକ ବର୍ଷରେ ୧୦୦କୋଟିଟଙ୍କାର ବ୍ୟୟବରାଦ କରାଯାଇଅଛି ।
- ଆବାସିକ ବିଦ୍ୟାଳୟଗୁଡିକରେ ଛାତ୍ରଛାତ୍ରୀମାନଙ୍କର ରହିବା, ଖାଇବା, ଖଟ, କମ୍ବଳ ଏବଂ ମଶାରୀ ନିମନ୍ତେ ୯୮ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀମାନଙ୍କ ସୁରକ୍ଷା ବିଷୟ ତଦାରଖ କରିବା ନିମନ୍ତେ ଭୁବନେଶ୍ୱରଠାରେ କାର୍ଯ୍ୟକାରୀ କରାଯାଉଥିବା ଶିକ୍ଷା ପରିଚାଳନା କକ୍ଷ ନିମନ୍ତେ ୮୦ଲକ୍ଷ ୯୦ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।

– ସହରାଞ୍ଚଳର ସର୍ବୋତ୍ତମ ବିଦ୍ୟାଳୟରେ ପାଠ ପଢାଇବା ପାଇଁ ସାରା ରାଜ୍ୟର ଆଦିବାସୀ ଛାତ୍ରମାନଙ୍କୁ ସୁଯୋଗ ଯୋଗାଇବା ଉଦ୍ଦେଶ୍ୟରେ ଅନୁସୁଚିତ ଜାତି ଓ ଜନଜାତି ବିକାଶ, ସଖ୍ୟାଲଘୁ ଓ ପଛୁଆବର୍ଗ କଲ୍ୟାଣ ବିଭାଗ ANWESHA ଅଯୋଜନା ଆରମ୍ଭ କରିଛନ୍ତି । ରାଜ୍ୟର ୧୭ଟି ଜିଲ୍ଲାର ସହରାଞ୍ଚଳ କେନ୍ଦ୍ର / ଜିଲ୍ଲା ମୁଖ୍ୟାଳୟରେ ଅବସ୍ଥିତ ବେସରକାରୀ, ସରକାରୀ ସ୍ୱୀକୃତି ପ୍ରାପ୍ତ ତଥା ଅନ୍ୟାନ୍ୟ କେନ୍ଦ୍ର ସରକାର ପରିଚାଳିତ ବିଦ୍ୟାଳୟଗୁଡ଼ିକ ସହିତ ରାଜ୍ୟ ସରକାର ମିଶି ଅନୁସୁଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଶିକ୍ଷା ଯୋଗାଇ ଦେଉଛନ୍ତି । ସାରା ରାଜ୍ୟରେ ବର୍ତ୍ତମାନ ପ୍ରାୟ ୧୬୬ଟି ଘରୋଇ ବିଦ୍ୟାଳୟରେ ପ୍ରାୟ ୨୦ ହଜାର ୭୭୬ ଜଣ ଛାତ୍ରଛାତ୍ରୀ ଏହା ଦ୍ୱରା ଉପକୃତ ହେଉଛନ୍ତି ।

ଏହି ପରିପ୍ରେକ୍ଷୀରେ ଚଳିତ ବର୍ଷ ବଜେଟରେ ଅନ୍ୱେଷା ଯୋଜନା ପାଇଁ ୧୨୩ କୋଟି ୬୩ ଲକ୍ଷ ୧୮ ହଜାର ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରହିଛି । ଏହି କାର୍ଯ୍ୟକ୍ରମରେ ସହରାଞ୍ଚଳର ପ୍ରତିଷ୍ଠିତ ଇଂରାଜୀ ମାଧ୍ୟମ ପବ୍ଲିକ ସ୍କୁଲରେ ଇଂରାଜୀ ମାଧ୍ୟମ ଶିକ୍ଷା ହାସଲ କରିବା ପାଇଁ ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ଆବାସିକ ବୋର୍ଡିଂ ଏବଂ ଟ୍ୟୁସନ ଫି ପ୍ରଦାନ କରାଯାଉଛି ।

ଅନ୍ୱେଷା ଭଳି ମାଟ୍ରିକ ପରବର୍ତ୍ତୀ ପାଠ୍ୟକ୍ରମରେ ମାଗଣା ରହିବା ଓ ଖାଇବା ବ୍ୟବସ୍ଥା ଯୋଗାଇ ଦେବା ପାଇଁ ଅନୁସୂଚିତ ଜାତି ଓ ଜନଜାତି ଛାତ୍ରାଛାତ୍ରୀଙ୍କ ପାଇଁ ରାଜ୍ୟ ସରକାର ୨୦୧୬-୧୭ରୁ ଆକାଂକ୍ଷା ଯୋଜନାରେ ହଷ୍ଟେଲ ବ୍ୟବସ୍ଥା ଯୋଗାଇ ଦେଇଛନ୍ତି । ଖୋର୍ଦ୍ଧା, ଗଂଜାମ, ସୁନ୍ଦରଗଡ ଓ ସମ୍ବଲପୁର ଭଳି ୪ଟି ଜିଲ୍ଲାରେ ୮ଟି ହଷ୍ଟେଲ ଏହାର ଅନ୍ତର୍ଭୁକ୍ତ ରହିଛି । ଭୁବନେଶ୍ୱରର ପୋଖରିପୁଟ ଓ କଳିଙ୍ଗବିହାରରେ ବାଳକ ଓ ବାଳିକାଙ୍କ ପାଇଁ ଗୋଟାଏ ଲେଖାଏଁ ୫୦୦ ଶଯ୍ୟା ବିଶିଷ୍ଟ ହଷ୍ଟେଲ ତିଆରି କରାଯାଇଛି । ରାଉରକେଲାରେ ଦୁଇଟି ହଷ୍ଟେଲ କାର୍ଯ୍ୟକାରୀ ହେଉଥିବା ବେଳେ ସହରାଂଚଳରେ ୪ଟି ନୂଆ ହଷ୍ଟେଲର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ଚଳିତ ବର୍ଷ ବଜେଟରେ ଆକାଂକ୍ଷା ଯୋଜନାରେ ୩ କୋଟି ୬୮ ଲକ୍ଷ ୬୦ ହଜାର ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରହିଛି । ଏହି ଯୋଜନାରେ ସହରାଞ୍ଚଳରେ ଉଚ୍ଚଶିକ୍ଷା ନେଉଥିବା ଛାତ୍ରଛାତ୍ରୀଙ୍କୁ ଅନ୍ୟାନ୍ୟ ସୁବିଧା ସହିତ ଆବାସିକ ବାସଗୃହ ଯୋଗାଇ ଦିଆଯାଉଛି ।

- ଅନୁସୂଚିତ ଜନଜାତି ଓ ଜାତି ଛାତ୍ରଛାତ୍ରୀମାନଙ୍କୁ ଦିଆଯାଉଥିବା ଛାତ୍ରବୃତ୍ତିକୁ ତଦାରଖ କରିବା ନିମନ୍ତେ କାର୍ଯ୍ୟକାରୀ କରାଯାଉଥିବା ବୃତ୍ତି ପରିଚାଳନା କକ୍ଷର ପ୍ରଶାସନିକ ବ୍ୟୟ ନିମନ୍ତେ ୨ କୋଟି ୨୨ ଲକ୍ଷ ୭୦ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।

- ପଛୁଆ ବର୍ଗ ଛାତ୍ରଛାତ୍ରୀମାନଙ୍କ ପାଇଁ ପ୍ରାକ୍‌ମାଟ୍ରିକ ଛାତ୍ରବୃତ୍ତି (ମୁଖ୍ୟମନ୍ତ୍ରୀ ମେଧାବୀ ଛାତ୍ର ପ୍ରୋତ୍ସାହନ ଯୋଜନା) ବାବଦରେ ୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।

- ଆଦିମ ଜନଜାତି ପରିବାରଙ୍କ ଜୀବନ ଜୀବିକାର ମାନ ଉନ୍ନତିକରଣ ନିମନ୍ତେ ୧୨ ଗୋଟି ଜିଲ୍ଲାରେ ପରିଚାଳିତ ହେଉଥିବା ୧୭ ଗୋଟି ଅଣୁପ୍ରକଳ୍ପ ଅଞ୍ଚଳରେ ଓଡିଶା ଆଦିମ ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ ଉନ୍ନତିକରଣ ଯୋଜନା OPELIP (Odisha PVTG Empowerment and Livelihood Improvement Programme) ୨୦୧୬-୧୭ ଆର୍ଥିକ ବର୍ଷରୁ କାର୍ଯ୍ୟକାରୀ ହେଉଅଛି । ୨୦୨୩-୨୪ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମ ନିମିତ୍ତ ୯୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।

- ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ଓଡିଶା ଜନଜାତି ସଶକ୍ତିକରଣ ଓ ଜୀବିକା ର୍ନିବାହ କାର୍ଯ୍ୟକ୍ରମ - OTELP ସର୍ବ ସମ୍ମୁଖରେ ପ୍ରଶଂସିତ ହେବା ପରିପ୍ରେକ୍ଷୀରେ ଏହାର ଉନ୍ନତିକରଣ କରାଯାଇ OTELP Plus ଯୋଜନା ୫ ଗୋଟି ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଅଛି । ଚଳିତ ଆର୍ଥିକ ବର୍ଷ ବଜେଟରେ ଏଥି ନିମନ୍ତେ ୩୦ କୋଟି ୨୦ ଲକ୍ଷ ୧୦ ହଜାର ଟଙ୍କାର ବ୍ୟୟବରାଦକରାଯାଇଅଛି ।

- ଅନୁସୂଚିତ ଜନଜାତିମାନଙ୍କୁଆୟସୃଷ୍ଟିକାରୀଯୋଜନା (ମୁଖ୍ୟମନ୍ତ୍ରୀ ଜନଜାତି ଜୀବିକା ମିଶନ)ରେ ୨୦୨୩-୨୪ ଆର୍ଥିକ ବର୍ଷରେ ୧୨୦କୋଟିଟଙ୍କାର ପ୍ରସ୍ତାବ ରଖାଯାଇଅଛି ।

- ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ସାମାଜିକ କଲ୍ୟାଣ ନିମନ୍ତେ କାର୍ଯ୍ୟକାରୀ କରାଯାଉଥିବା ହଜ କମିଟିର ପ୍ରଶାସନିକ ଖର୍ଚ୍ଚ ନିମନ୍ତେ ୧ କୋଟି ୪୦ ଲକ୍ଷ ୨୦ ହଜାର ଟଙ୍କା, ୱାକଫ ବୋର୍ଡର ପରିଚାଳନା ନିମନ୍ତେ ୧ କୋଟି ୬୨ଲକ୍ଷ ୫୦ ହଜାର ଟଙ୍କା, ଅନ୍ୟାନ୍ୟ ୱାକଫ ଅନୁଷ୍ଠାନଗୁଡିକୁ ଅନୁଦାନ ନିମନ୍ତେ ୫୦ ଲକ୍ଷ ଟଙ୍କା ଓ ହଜ ହାଉସର କାର୍ଯ୍ୟକାରିତା ପାଇଁ ୧ ହଜାର ଟଙ୍କା ଏହିପରି ମୋଟ ୩ କୋଟି ୫୨ ଲକ୍ଷ ୭୧ ହଜାର ଟଙ୍କାର ବଜେଟ ପ୍ରସ୍ତୁତ କରି ୨୦୨୩-୨୪ ଆର୍ଥିକ ବଜେଟରେ ଅନୁମୋଦନ ନିମନ୍ତେ ଉପସ୍ଥାପନ କରାଯାଇଅଛି ।

- ଓଡ଼ିଶାରେ ବସବାସ କରୁଥିବା ୬୨ ପ୍ରକାରର ଜନଜାତି ସମ୍ପ୍ରଦାୟ ଓ ତନ୍ମଧ୍ୟରୁ ୧୩ଗୋଟି ପ୍ରାଚୀନ ଜନଜାତିମାନଙ୍କର ସାମାଜିକ, ସାଂସ୍କୃତିକ ବିକାଶ ନିମନ୍ତେ ରାଜ୍ୟ ସରକାର ୯ଟି ଜନଜାତି ବହୁଳ ଜିଲ୍ଲା ଯଥା : ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ, କନ୍ଧମାଳ, କୋରାପୁଟ, ଗଜପତି, ରାୟଗଡା, ନବରଙ୍ଗପୁର ଓ ମାଲକାନଗିରିରେ ସ୍ୱତନ୍ତ୍ର ଉନ୍ନୟନ ପରିଷଦ, ମାର୍ଚ୍ଚ, ୨୦୧୮ରୁ ଗଠନ କରିଛନ୍ତି । ଏହି ଯୋଜନାରେ ୧୧୭ଟି ବ୍ଲକ, ୨୦୨୨ ଗୋଟି ଗ୍ରାମପଞ୍ଚାୟତ ଓ ୧୮୬୮୭ ଗ୍ରାମର ୧୪ ଲକ୍ଷ ଜନଜାତି ପରିବାର ଅନ୍ତର୍ଭୁକ୍ତ ହୋଇଛନ୍ତି । ଚଳିତ୨୦୨୩-୨୪ ଆର୍ଥିକ ବର୍ଷରେ ସେଥିପାଇଁ ୧୭୫ କୋଟି ୫୦ ଲକ୍ଷଟଙ୍କାର ବ୍ୟୟ ବରାଦ ପ୍ରସ୍ତାବ ରଖାଯାଇଅଛି ।

- ଜଙ୍ଗଲ ଅଧିକାର ଅଧିନିୟମ, ୨୦୦୬ ର କାର୍ଯ୍ୟକାରିତା ନିମନ୍ତେ ରାଜ୍ୟ ବଜେଟରେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବା କ୍ଷେତ୍ରରେ ଓଡିଶା ସମଗ୍ର ଦେଶ ମଧ୍ୟରେ ପ୍ରଥମ ରାଜ୍ୟ ।

- ଜଙ୍ଗଲ ଜମିରେ ବସବାସ କରୁଥିବା ଅନୁସୂଚିତ ଜନଜାତି ଏବଂ ଅନ୍ୟାନ୍ୟ ପାରମ୍ପରିକ ବନବାସୀ ବର୍ଗର ବ୍ୟକ୍ତିଙ୍କର ଅଧିକାର ଏବଂ ନ୍ୟାୟକୁ ସୁନିଶ୍ଚିତ କରିବା ପାଇଁ ରାଜ୍ୟ ସରକାର ମୋ ଜଙ୍ଗଲ ଜମି ଯୋଜନା ଶୀର୍ଷକ ଏକ ରାଜ୍ୟସ୍ତରୀୟ ଯୋଜନା ଆରମ୍ଭ କରିବାକୁ ନିଷ୍ପତ୍ତି ନେଇଛନ୍ତି ।

- ନିମ୍ନଲିଖିତ କାର୍ଯ୍ୟଗୁଡ଼ିକୁ ସଫଳ କରିବା ଉଦ୍ଦେଶ୍ୟ ରଖି ରାଜ୍ୟ ସରକାର ୨୦୨୩-୨୪ ଆର୍ଥିକ ବର୍ଷ ପାଇଁ ବଜେଟରେ ୨୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।
- ଆଦିମ ଜନଜାତି ବର୍ଗଙ୍କ ସମେତ ସମସ୍ତ ଯୋଗ୍ୟ ଦାବୀଦାରଙ୍କୁ ବ୍ୟକ୍ତିଗତ ଜଙ୍ଗଲ ଜମି ଅଧିକାର ଶିରୋନାମା ପ୍ରଦାନ ।
- ସମସ୍ତ ଯୋଗ୍ୟ ଗ୍ରାମସଭାମାନଙ୍କୁ ଗୋଷ୍ଠୀଗତ ଜଙ୍ଗଲ ଅଧିକାର ଏବଂ ଗୋଷ୍ଠୀଗତ ଜଙ୍ଗଲ ସମ୍ବଳ ଅଧିକାର ଶିରୋନାମା ପ୍ରଦାନ ।
- ସମସ୍ତ ଜଙ୍ଗଲ ଗ୍ରାମ,ସର୍ବେକ୍ଷଣ ହୋଇ ନଥିବା ବସତିଗୁଡ଼ିକୁ ରାଜସ୍ୱ ଗ୍ରାମରେ ପରିବର୍ତ୍ତନ ।
- ସମସ୍ତ ଜଙ୍ଗଲ ଜମି ଅଧିକାର ଶିରୋନାମାଧାରୀଙ୍କୁ ସେମାନଙ୍କର ସ୍ୱତ୍ୱ ଲିପିର ପ୍ରାମାଣୀକୃତ ନକଲ ପ୍ରଦାନ ।
- ଜଙ୍ଗଲ ଜମି ଅଧିକାର ଅଧିନିୟମର ସମସ୍ତ ହିତାଧିକାରୀଙ୍କ କଲ୍ୟାଣ ନିମନ୍ତେ ସରକାରୀ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକର ସଂଯୋଜନା ।
- ଗୋଷ୍ଠୀଗତ ଜଙ୍ଗଲ ସମ୍ବଳଗୁଡ଼ିକର ସଂରକ୍ଷଣ ଓ ପରିଚାଳନା ନିମନ୍ତେ କମିଟି ଗଠନ ।
- ଆଜି ପର୍ଯ୍ୟନ୍ତ ଓଡ଼ିଶା ସର୍ବାଧିକ ବ୍ୟକ୍ତିଗତ ଜଙ୍ଗଲ ଜମି ଅଧିକାର ଶିରୋନାମା ବଣ୍ଟନ କରିଛି, ଯାହାକି ଦେଶର ପ୍ରାୟ ୨୧ ପ୍ରତିଶତ ।

- ଜାନୁଆରୀ ୨୦୨୩ ଶେଷ ସୁଦ୍ଧା ଗ୍ରହଣ କରାଯାଇଥିବା ମୋଟ ୬,୨୯,୯୩୨ ଗୋଟି ବ୍ୟକ୍ତିଗତ ଜଙ୍ଗଲ ଜମି ଅଧିକାର ଦାବୀ ଦରଖାସ୍ତ ମଧ୍ୟରୁ ୪,୫୫,୩୯୯ ଗୋଟି ଶିରୋନାମା ପ୍ରଦାନ କରାଯାଇଛି, ୧,୪୨,୨୩୭ ଗୋଟି ଦରଖାସ୍ତ ନାକଚ କରାଯାଇଛି ଏବଂ ୩୨,୨୯୬ ଗୋଟି ଦରଖାସ୍ତ ବିଭିନ୍ନ ସ୍ତରରେ ବିଚାରାଧୀନ ରହିଛି ।

- ଓଡ଼ିଶା ଏକମାତ୍ର ରାଜ୍ୟ, ଯିଏ କି ଜଙ୍ଗଲ ଜମି ଅଧିକାର ସମ୍ବନ୍ଧୀୟ ମାନଚିତ୍ର ବହି ପ୍ରକାଶନ କରିଛି, ଯେଉଁଥିରେ ଜଙ୍ଗଲ ଜମି ଥିବା ପ୍ରତ୍ୟେକ ସମ୍ଭାବ୍ୟ ଗ୍ରାମଗୁଡ଼ିକୁ ଏହି ଅଧିନିୟମ ମଧ୍ୟରେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ଦର୍ଶାଯାଇଛି ।

ଏହିପରି ଭାବରେ ରାଜ୍ୟ ସ୍ତରୀୟ ଯୋଜନାରେ ମୋଟ ବଜେଟ ଅଟକଳ ୨୨୪୫ କୋଟି ୯୭ ଲକ୍ଷ ୪୫ ହଜାର ଟଙ୍କାର ଖର୍ଚ୍ଚ ଦାବି ଉପସ୍ଥାପନ କରାଯାଇଅଛି ।

**କାର୍ଯ୍ୟକ୍ରମ ବ୍ୟୟ (କେନ୍ଦ୍ର ସ୍ତରୀୟ ଯୋଜନା)**

କେନ୍ଦ୍ର ସ୍ତରୀୟ ଯୋଜନା ବାବଦରେ ୧୪୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ଯଥା:-

- ଭାରତ ସମ୍ବିଧାନର ଧାରା ୨୭୫(୧) ଅନୁଯାୟୀ ପ୍ରତି ବର୍ଷ ଏହି ବିଭାଗକୁ କେନ୍ଦ୍ର ଅନୁସୂଚିତ ଜନଜାତି ମନ୍ତ୍ରଣାଳୟଠାରୁ ଅନୁଦାନ ମିଳିଥାଏ । ଏହି ଟଙ୍କା ଦ୍ୱାରା ଅନୁସୂଚିତ ଜନଜାତି ଅଞ୍ଚଳରେ ବସବାସ କରୁଥିବା ଜନଜାତି ମାନଙ୍କ ନିମନ୍ତେ ବିଭିନ୍ନ ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟ ଏବଂ ଏହି ଅଞ୍ଚଳର ପ୍ରଶାସନିକ ଉନ୍ନତି ନିମନ୍ତେ ଦରକାର ପଡୁଥିବା କାର୍ଯ୍ୟମାନ ସମ୍ପାଦାନ କରାଯାଏ । ତଦନୁଯାୟୀ୨୦୨୩-୨୪ ଆର୍ଥିକ ବର୍ଷରେ ୧୪୦ କୋଟି ଟଙ୍କାର ଅନୁଦାନ ମିଳିବା ନିମନ୍ତେ ଆକଳନ କରି ବଜେଟରେ ଖର୍ଚ୍ଚ ନିମନ୍ତେ ଉପସ୍ଥାପନ କରୁଅଛି ।

ଏହିପରି ଭାବରେ କେନ୍ଦ୍ର ସ୍ତରୀୟ ଯୋଜନାରେ ମୋଟ ବଜେଟ ଅଟକଳ ୧୪୦ କୋଟି ଟଙ୍କାର ଖର୍ଚ୍ଚ ଦାବି ଉପସ୍ଥାପନ କରାଯାଇଅଛି ।

**କାର୍ଯ୍ୟକ୍ରମ ବ୍ୟୟ (କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା)**

୨୦୨୩-୨୪ ଆର୍ଥିକ ବର୍ଷରେ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ବାବଦରେ ୧୨୧୫ କୋଟି ୮୦ଲକ୍ଷ ୨୪ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି ଯଥା:-

- ଅନୁସୂଚିତ ଜାତି ଉପଯୋଜନା ନିମନ୍ତେ ସ୍ୱତନ୍ତ୍ର କେନ୍ଦ୍ରୀୟ ଅନୁଦାନ (SCA to SCSP) ଅନୁସୂଚିତ ଜାତିମାନଙ୍କର ସାମୂହିକ ଉନ୍ନତି ନିମନ୍ତେ କେନ୍ଦ୍ର ସରକାରଙ୍କ ସାମାଜିକ ନ୍ୟାୟ ମନ୍ତ୍ରଣାଳୟ ପାଣ୍ଠି ମାଧ୍ୟମରେ ୫୨ କୋଟି ୮୬ ଲକ୍ଷ ୦୫ ହଜାର ଟଙ୍କା ବ୍ୟୟ ବରାଦ କରାଯାଇଛି ।
- ଅଣୁପ୍ରକଳ୍ପ ଅଞ୍ଚଳରେ ବସବାସ କରୁଥିବା PVTG ବା ଆଦିମ ଜନଜାତି ପରିବାରମାନଙ୍କ ନିମନ୍ତେ ଅର୍ଥନୈତିକ ତଥା ସାମାଜିକ ଅଭିବୃଦ୍ଧି ଯୋଜନା (Conservation-cum-Development Plan) ନିମନ୍ତେ ୩୫ କୋଟି ୮୦ଲକ୍ଷ ୦୧ ହଜାର ଟଙ୍କାର କେନ୍ଦ୍ରୀୟ ଅନୁଦାନ ବ୍ୟବସ୍ଥା କରାଯାଇଅଛି ।
- ପ୍ରଧାନମନ୍ତ୍ରୀ ଜନବିକାଶ କାର୍ଯ୍ୟକ୍ରମ (PMJVK)ଯୋଜନାରେ ସଂଖ୍ୟାଲଘୁ ସମ୍ପ୍ରଦାୟ ଅଞ୍ଚଳମାନଙ୍କର ବିଭିନ୍ନ ପ୍ରକାରର ଭିତ୍ତିଭୂମି ଉନ୍ନୟନ ନିମନ୍ତେ ୫ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।
- ଅନୁସୂଚିତ ଜନଜାତିମାନଙ୍କ ନିମନ୍ତେ ପ୍ରଧାନମନ୍ତ୍ରୀ ଆଦି ଆଦର୍ଶ ଗ୍ରାମ୍ୟ ଯୋଜନାରେ ୧୨୦ କୋଟି ୦୧ ହଜାର ଟଙ୍କାର ବ୍ୟୟବରାଦ କରାଯାଇଅଛି । ଏହି ଅର୍ଥ ଅନୁସୂଚିତ ଜନଜାତିମାନଙ୍କର ବିଭିନ୍ନ ଆୟ ସୃଷ୍ଟିକାରୀ ଯୋଜନା ଏବଂ ଅନ୍ୟାନ୍ୟ ଭିତ୍ତିଭୂମି ଉନ୍ନୟନ ନିମନ୍ତେ ଏହି ବିଭାଗ ଅଧୀନରେ ଥିବା ୨୨ ଗୋଟି ITDA ମାଧ୍ୟମରେ ବିନିଯୋଗ କରାଯିବ ।
- ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିମାନଙ୍କ ନିମନ୍ତେ ସିଭିଲ ଅଧିକାର ସଂରକ୍ଷଣ ଅଧିନିୟମ ୧୯୫୫ (PCR Act ୧୯୫୫) ଏବଂ ନିର୍ଯ୍ୟାତନା ନିବାରଣ ଅଧିନିୟମ ୧୯୮୯ (Protection of Atrocity Act, ୧୯୮୯)କୁ କାର୍ଯ୍ୟକାରୀ କରିବା ନିମନ୍ତେ ୧୦୦ କୋଟି ୮୮ଲକ୍ଷ ୫୦ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।
- ପଛୁଆ ବର୍ଗର ଛାତ୍ରଛାତ୍ରୀମାନଙ୍କ ପ୍ରାକ୍-ମାଟ୍ରିକ ଓ ମାଟ୍ରିକ ପରବର୍ତ୍ତୀ ବିଦ୍ୟାବୃତ୍ତି ପାଇଁ ୮୧କୋଟି ୮୬ ଲକ୍ଷ ୭୦ ହଜାର ଟଙ୍କାର ବ୍ୟୟବରାଦ କରାଯାଇଅଛି ।
- ଅନୁସୂଚିତ ଜାତି ଜନସାଧାରଣଙ୍କ ନିମିତ୍ତ ପ୍ରଧାନମନ୍ତ୍ରୀ ଆଦର୍ଶ ଗ୍ରାମ ଯୋଜନାରେ ୨୧୪କୋଟି ୨୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଅଛି । ଏହି ଅର୍ଥକୁ ଅନୁସୂଚିତ ଜାତି ଅଧ୍ୟୁଷିତ ଅଞ୍ଚଳମାନଙ୍କରେ ବିଭିନ୍ନ ପ୍ରକାରର ଭିତ୍ତିଭୂମି ପ୍ରକଳ୍ପମାନ ପ୍ରତିଷ୍ଠା କରାଯିବ ।
- ପଛୁଆ ବର୍ଗର ଛାତ୍ରଛାତ୍ରୀମାନଙ୍କ ଛାତ୍ରାବାସ ନିର୍ମାଣ ପାଇଁ ୨ କୋଟି ୩୯ ଲକ୍ଷ ୮୧ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

ଏହିପରି ଭାବରେ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନାରେ ମୋଟ ବଜେଟ ଅଟକଳ ୧୨୧୫ କୋଟି ୮୦ ଲକ୍ଷ ୨୪ ହଜାର ଟଙ୍କାର ଖର୍ଚ୍ଚ ଦାବି ଉପସ୍ଥାପନ କରାଯାଇଅଛି ।

ମୋଟ କାର୍ଯ୍ୟକ୍ରମ ବ୍ୟୟକୁ ହିସାବକୁ ନେଲେ ରାଜ୍ୟ ସ୍ତରୀୟ ଯୋଜନା ବାବଦରେ ୨୨୪୫ କୋଟି ୯୭ ଲକ୍ଷ ୪୫ ହଜାର ଟଙ୍କା, କେନ୍ଦ୍ର ସ୍ତରୀୟ ଯୋଜନା ବାବଦରେ ୧୪୦ କୋଟି ଟଙ୍କା ଏବଂ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ବାବଦରେ ୧୨୧୫ କୋଟି ୮୦ ଲକ୍ଷ ୨୪ ହଜାର ଟଙ୍କା ଏହିପରି ଭାବରେ ସର୍ବମୋଟ କାର୍ଯ୍ୟକ୍ରମ ବ୍ୟୟ ବାବଦରେ ୩୬୦୧ କୋଟି ୭୭ ଲକ୍ଷ ୬୯ ହଜାର ଟଙ୍କାର ବ୍ୟୟବରାଦ ଉପସ୍ଥାପନ କରାଯାଇଅଛି ।

**ପ୍ରଶାସନିକ ବ୍ୟୟ**

ଏହି ବିଭାଗ ଅଧୀନରେ ପରିଚାଳିତ ବିଭିନ୍ନ ପ୍ରତିଷ୍ଠାନମାନଙ୍କ ପରିଚାଳନା ଓ ରକ୍ଷଣାବେକ୍ଷଣ ତଥା ପ୍ରଶାସନିକ ବ୍ୟୟ ନିମିତ୍ତ ୧୦୪୯ କୋଟି ୯୮ ଲକ୍ଷ ଟଙ୍କା ଓ ନିର୍ଦ୍ଦେଶିତ ରାଶି ୨ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି ।

- ବିଭାଗୀୟ ବିଦ୍ୟାଳୟଗୁଡ଼ିକର ବିଭିନ୍ନ ସ୍ୱତନ୍ତ୍ର ଭିତ୍ତିଭୂମି ବିକାଶ ନିମନ୍ତେ ୧୫୯ କୋଟି ୪୧ ଲକ୍ଷ ୮୪ ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ଉଚ୍ଚ ବିଦ୍ୟାଳୟ, ସେବାଶ୍ରମ ପ୍ରତିଷ୍ଠାନ ଏବଂ ଆଶ୍ରମ ବିଦ୍ୟାଳୟଗୁଡ଼ିକରେ କାର୍ଯ୍ୟରତ ଶିକ୍ଷକ, ଶିକ୍ଷୟିତ୍ରୀ, ରୋଷେଇଆ ତଥା ପରିଚାରକମାନଙ୍କ ଦରମା ବାବଦକୁ ୬୮୦ କୋଟି ୭୩ ଲକ୍ଷ ୦୧ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- MADA ଏବଂ ମାଇକ୍ରୋ ପ୍ରୋଜେକ୍ଟ ପ୍ରତିଷ୍ଠାନ ନିମିତ୍ତ ୪ କୋଟି ୬୩ ଲକ୍ଷ ୮୦ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ୱାକଫ କମିଶନର ପ୍ରତିଷ୍ଠାନ ନିମନ୍ତେ ୧ କୋଟି ୯୯ ଲକ୍ଷ ୫୦ ହଜାର ୱାକଫ ନ୍ୟାୟାଧିକରଣ ପ୍ରତିଷ୍ଠାନ ପାଇଁ ୭୪ଲକ୍ଷ ୮୦ହଜାର ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ମାନ୍ୟବର କୋର୍ଟଙ୍କ ଆଦେଶ ଅନୁପାଳନ ନିମିତ୍ତ ନିର୍ଦ୍ଦେଶିତ ରାଶି (Charged)୨୦୨୩-୨୪ ଆର୍ଥିକ ବର୍ଷ ପାଇଁ ୨ ଲକ୍ଷ ଟଙ୍କା ଅଟେ ।

ଅତଏବ ମୁଁ ଅଦ୍ୟ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ଓ ପଛୁଆ ବର୍ଗ କଲ୍ୟାଣ ବିଭାଗ ନିମନ୍ତେ ୨୦୨୩-୨୪ ଆର୍ଥିକ ବର୍ଷ ପାଇଁ ମୋଟ ପ୍ରଶାସନିକ ବ୍ୟୟ ନିମନ୍ତେ ୧୦୪୯ କୋଟି ୯୮ଲକ୍ଷ ଟଙ୍କା ଏବଂ କାର୍ଯ୍ୟକ୍ରମ ବ୍ୟୟ ବାବଦରେ ମୋଟ ୩୬୦୧ କୋଟି ୭୭ଲକ୍ଷ ୬୯ ହଜାର ଟଙ୍କା ଏହିପରି ସର୍ବମୋଟ ୪୬୫୧ କୋଟି ୭୫ ଲକ୍ଷ ୬୯ ହଜାର ଟଙ୍କା ଏବଂ ନିର୍ଦ୍ଦେଶିତ ରାଶି ୦୨ ଲକ୍ଷ ଟଙ୍କାର ବ୍ୟୟ ମଞ୍ଜୁରି ପ୍ରସ୍ତାବ ଗୃହର ଅନୁମୋଦନ ନିମନ୍ତେ ମାନ୍ୟବର ସଦସ୍ୟ ଓ ସଦସ୍ୟାମାନଙ୍କୁ ନିବେଦନ କରୁଅଛି ।



# ତାଙ୍କ କଥା, ମୋ କଥା

## ମୁଁ କାହିଁକି ନାରୀ ଓ ପୁରୁଷର ସମାନତା ବିଷୟରେ ଆଶାବାଦୀ

ଦ୍ରୌପଦୀ ମୁର୍ମୁ

ମୁଁ ଗତବର୍ଷ ସମ୍ବିଧାନ ଦିବସରେ ଭାରତର ସର୍ବୋଚ୍ଚ ନ୍ୟାୟାଳୟ ଦ୍ୱାରା ଆୟୋଜିତ ଉତ୍ସବରେ ସମାପନୀ ଭାଷଣ ଦେଉଥିଲି । ନ୍ୟାୟ ପ୍ରସଙ୍ଗରେ କହିଲାବେଳେ ବିଚାରାଧୀନ କଏଦୀମାନଙ୍କ କଥା ମୋର ମନେ ପଡ଼ିଗଲା ଏବଂ ସେମାନଙ୍କ ଦୁର୍ଦ୍ଦଶା ବିଷୟରେ ନ କହି ମୁଁ ରହିପାରିଲି ନାହିଁ । ମୁଁ ସେଦିନ ଯାହାସବୁ କହିଥିଲି, ସେସବୁ ଥିଲା ମୋ ହୃଦୟର କଥା । ତେଣୁ ସେ କଥାର ସକାରାତ୍ମକ ପ୍ରଭାବ ପଡ଼ିଛି । ସେଦିନ ପରି, ଆଜି ଅନ୍ତର୍ଜାତୀୟ ମହିଳା ଦିବସ ଅବସରରେ, ମୁଁ ଆପଣମାନଙ୍କୁ ମୋ ହୃଦୟର ଆଉ କିଛି କଥା କହିବାକୁ ଇଚ୍ଛା କରୁଛି ।

ପିଲାଟି ଦିନରୁ ହିଁ ମୁଁ ସମାଜରେ ନାରୀର ସ୍ଥିତିକୁ ନେଇ ଚିନ୍ତିତ ହୋଇଆସିଛି । ଗୋଟିଏ ପକ୍ଷରେ କନ୍ୟା ସନ୍ତାନକୁ ଚାରିଆଡ଼େ ଖୁବ୍ ଆଦର କରାଯାଏ ଏବଂ ଶୁଭ ଦିନମାନଙ୍କରେ ପୂଜା ମଧ୍ୟ କରାଯାଏ । ଅପରପକ୍ଷେ, ତା' ବୟସର ପୁଅମାନଙ୍କ ତୁଳନାରେ ସମାଜରେ ତା' ପାଇଁ ସୁବିଧାସୁଯୋଗ ଯେ ଊଣା, ତାହା ସେ ଖୁବ୍ ଶୀଘ୍ର ଜାଣିପାରେ । ପୁଣି ଗୋଟିଏ ପକ୍ଷରେ ନାରୀକୁ ତା'ର ଅନ୍ତର୍ନିହିତ ପ୍ରଜ୍ଞା ପାଇଁ ସମ୍ମାନ ଦିଆଯାଏ ଏବଂ ସମସ୍ତଙ୍କର ଯତ୍ନ ନେଉଥିବାରୁ ତାଙ୍କୁ ପରିବାରର କେନ୍ଦ୍ର ଭାବରେ ବିବେଚନା କରାଯାଏ । ଅପର ପକ୍ଷରେ ପରିବାର କିମ୍ବା ତା' ନିଜ ବିଷୟରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବା କ୍ଷେତ୍ରରେ ତା'ର ଭୂମିକା ସୀମିତ ।

ସମୟକ୍ରମେ, ଯେତେବେଳେ ଜଣେ ଛାତ୍ରୀ ଭାବରେ, ତା'ପରେ ଜଣେ ଶିକ୍ଷୟିତ୍ରୀ ଏବଂ ପରେ ପରେ ଜଣେ ସମାଜସେବୀ ଭାବରେ ଘରୁ ଗୋଡ଼ କାଢ଼ିଲି, ସମାଜରେ ଏପରି ବିରୋଧାତ୍ମକ ମନୋଭାବ ଦେଖି ମୁଁ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲି ନାହିଁ । ବେଳେବେଳେ ମୁଁ ଅନୁଭବ କରିଛି ଯେ ବ୍ୟକ୍ତିଗତ ସ୍ତରରେ ଆମ ମଧ୍ୟରୁ ଅନେକେ ପୁରୁଷ ଏବଂ ମହିଳାଙ୍କୁ ସମାନ ବୋଲି ବିଚାର କରନ୍ତି । କିନ୍ତୁ ସାମୂହିକ ସ୍ତରରେ ସେମାନେ ସମାଜର ଅଧାଲୋକ, ଅର୍ଥାତ୍ ନାରୀମାନଙ୍କ ଉପରେ କଟକଣା ଲଦି ଦିଅନ୍ତି । ମୋ ଜୀବଦ୍ଦଶା ମଧ୍ୟରେ ଅଧିକାଂଶ ଲୋକ ନାରୀ-ପୁରୁଷ ସମାନତାର ଅବଧାରଣା ଆଡ଼କୁ ଅଗ୍ରସର ହେଉଥିବା ମୁଁ ଲକ୍ଷ୍ୟ କରିଛି । ତେବେ ପୁରୁଣା ଅଭ୍ୟାସ ପରି ପୁରୁଣା ରୀତିନୀତି ଓ ପରମ୍ପରା ସାମାଜିକ ସ୍ତରରେ ଚାଲୁ ରହିଛି ।

ଏହା ପୃଥିବୀର ସବୁ ମହିଳାଙ୍କ କରୁଣ କାହାଣୀ । ବିଶ୍ୱ ଜନସଂଖ୍ୟାର ଅଧାଲୋକଙ୍କ ଅର୍ଥାତ୍ ନାରୀମାନଙ୍କ ଜୀବନ ବାଧାବିଘ୍ନରୁ ହିଁ ଆରମ୍ଭ ହୋଇଥାଏ । ଏକବିଂଶ ଶତାବ୍ଦୀରେ, ଆମେ କଳ୍ପନାତୀତ ଭାବରେ ସର୍ବାଙ୍ଗୀନ ପ୍ରଗତି ହାସଲ କରିଥିବାବେଳେ ଅନେକ ରାଷ୍ଟ୍ରରେ ଏପର୍ଯ୍ୟନ୍ତ ମହିଳାମାନେ ରାଷ୍ଟ୍ରମୁଖ୍ୟ କିମ୍ବା ଶାସନମୁଖ୍ୟ ହୋଇପାରି ନାହାନ୍ତି । ଅଧିକନ୍ତୁ ପୃଥିବୀରେ ଏମିତି କିଛି ସ୍ଥାନ ଅଛି, ଯେଉଁଠି ଦୁର୍ଭାଗ୍ୟବଶତଃ ଆଜି ବି ମହିଳାମାନଙ୍କୁ ତୁଚ୍ଛ ମନେ କରାଯାଏ । ସେଠାରେ ଜଣେ ଝିଅ ପାଇଁ ସ୍କୁଲକୁ ଯିବା ମଧ୍ୟ ଜୀବନ ମରଣର ପ୍ରଶ୍ନ !

କିନ୍ତୁ ଏମିତି ଯେ ସବୁବେଳେ ହେଉଥିଲା ତା' ନୁହେଁ । ଅତୀତରେ ଭାରତର ମହିଳାମାନେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାର ମଧ୍ୟ ଦୃଷ୍ଟାନ୍ତ ଅଛି । ମହିଳାମାନଙ୍କର ବୀରତ୍ୱ, ପାଣ୍ଡିତ୍ୟ ଓ ପ୍ରାଶାସନିକ ଦକ୍ଷତା ବିଷୟରେ ଆମ ପୁରାଣ ଓ ଇତିହାସରେ ଉଲ୍ଲେଖ ରହିଛି । ଆଜି ଅଗଣିତ ମହିଳା ନିଜ ନିଜର ରୁଚି ଅନୁଯାୟୀ ଦେଶ ଗଠନ କ୍ଷେତ୍ରରେ ଅବଶ୍ୟ ଅଂଶଗ୍ରହଣ କରୁଛନ୍ତି । ସେମାନେ କର୍ପୋରେଟ୍ ସଂସ୍ଥାର ନେତୃତ୍ୱ ନେଉଛନ୍ତି, ଏପରିକି ସୈନ୍ୟବାହିନୀରେ ମଧ୍ୟ କାର୍ଯ୍ୟ କରୁଛନ୍ତି । କିନ୍ତୁ ପୁରୁଷ ଓ ମହିଳାଙ୍କ ମଧ୍ୟରେ ପାର୍ଥକ୍ୟ ଏହି ଯେ ମହିଳାମାନଙ୍କୁ କର୍ମକ୍ଷେତ୍ର ଓ ପରିବାର ଉଭୟରେ ନିଜର ପାରଦର୍ଶିତା ପ୍ରମାଣ କରିବାକୁ ପଡ଼େ । ସେଥିପାଇଁ ମହିଳାମାନେ ଅଭିଯୋଗ ନ କଲେ ବି ଆଶା କରନ୍ତି ଯେ ସମାଜ ସେମାନଙ୍କ ଉପରେ ଆସ୍ଥା ରଖୁ ।

ଏହାଦ୍ୱାରା ଏକ ବିଚିତ୍ର ପରିସ୍ଥିତି ସୃଷ୍ଟି ହୋଇଛି । ଆମ ଦେଶର ବିଭିନ୍ନ ପ୍ରତିନିଧିମୂଳକ ସଂସ୍ଥାର ତୃଣମୂଳ ସ୍ତରରେ ମହିଳାମାନଙ୍କର ଉତ୍ତମ ପ୍ରତିନିଧିତ୍ୱ ରହିଛି ସତ, କିନ୍ତୁ ଆମେ ଯେତେ ଉପର ସ୍ତରକୁ ଯିବା ମହିଳାମାନଙ୍କର ସଂଖ୍ୟା ସେତେ ହ୍ରାସ ପାଉଥିବା ଲକ୍ଷ୍ୟ କରିବା । ଏହା କେବଳ ରାଜନୈତିକ କ୍ଷେତ୍ରରେ ନୁହେଁ, ଅମଲାତନ୍ତ୍ର, ନ୍ୟାୟପାଳିକା ଓ କର୍ପୋରେଟ୍ ସଂସ୍ଥା ଆଦିରେ ମଧ୍ୟ ଦେଖିବାକୁ ମିଳୁଛି । ଏଠାରେ ଉଲ୍ଲେଖନୀୟ ଯେ ଅଧିକ ସାକ୍ଷରତା ହାର ଥିବା ରାଜ୍ୟଗୁଡ଼ିକରେ ମଧ୍ୟ ଏହା ପରିଲକ୍ଷିତ ହେଉଛି । ଏଥିରୁ ସ୍ପଷ୍ଟ ଯେ, ଶିକ୍ଷା ଏକାକୀ, ମହିଳାମାନଙ୍କ ଆର୍ଥିକ ଏବଂ ରାଜନୈତିକ ସ୍ୱାବଲମ୍ବନକୁ ସୁନିଶ୍ଚିତ କରେ ନାହିଁ ।

ସୁତରାଂ ସମାଜର ମାନସିକତାରେ ପରିବର୍ତ୍ତନ ଆସିବା ଆବଶ୍ୟକ ବୋଲି ମୁଁ ଦୃଢ଼ ଭାବରେ ବିଶ୍ୱାସ କରେ । ଏକ ଶାନ୍ତିପୂର୍ଣ୍ଣ ଓ ସମୃଦ୍ଧ ସମାଜ ଗଠନ ନିମନ୍ତେ ନାରୀ ଓ ପୁରୁଷ ମଧ୍ୟରେ ଥିବା ବଦ୍ଧମୂଳ ଭେଦଭାବକୁ ଚିହ୍ନଟ କରାଯିବା ସହିତ ତା'ର ଦୂରୀକରଣ ପାଇଁ ଉପଯୁକ୍ତ ପଦକ୍ଷେପ ନିଆଯିବା ଉଚିତ । ସାମାଜିକ ନ୍ୟାୟ ଓ ସମାନତାକୁ ପ୍ରୋତ୍ସାହିତ କରିବା ପାଇଁ ସଚେତନ ଭାବରେ ଅବଶ୍ୟ ପ୍ରୟାସ କରାଯାଇଛି । କିନ୍ତୁ ଏସବୁ ପଦକ୍ଷେପ ନାରୀ-ପୁରୁଷ ପ୍ରତିନିଧିତ୍ୱ କ୍ଷେତ୍ରରେ ସନ୍ତୁଳନକୁ ସୁନିଶ୍ଚିତ କରିବା ପାଇଁ ପର୍ଯ୍ୟାପ୍ତ ସାବ୍ୟସ୍ତ ହୋଇନାହିଁ । କୌଣସି ଯୋଜନାବଦ୍ଧ କାର୍ଯ୍ୟ ଯୋଗୁଁ ନୁହେଁ, ବରଂ ରକ୍ଷଣଶୀଳତା ହେତୁ ଉଭୟ ଶିକ୍ଷା ଓ ଚାକିରି କ୍ଷେତ୍ରରେ ମହିଳାମାନେ ପୁରୁଷଙ୍କଠାରୁ ବହୁ ପଛରେ ପଡ଼ିଛନ୍ତି ।

ମୁଁ ଦେଶର ବିଭିନ୍ନ ସ୍ଥାନରେ ଏକାଧିକ ସମାବର୍ତ୍ତନ ଉତ୍ସବରେ ଯୋଗଦେଇ ଲକ୍ଷ୍ୟ କରିଛି ଯେ ଉପଯୁକ୍ତ ସୁଯୋଗ ପାଇଲେ ଅନେକ ସମୟରେ ମହିଳାମାନେ ଶିକ୍ଷାକ୍ଷେତ୍ରରେ ପୁରୁଷମାନଙ୍କୁ ଅତିକ୍ରମ କରିଯାଉଛନ୍ତି । ଆମ ସମାଜର ଏବଂ ବିଶେଷ କରି ଭାରତୀୟ ନାରୀର ଏପରି ଅଦମ୍ୟ ଉତ୍ସାହ ଦେଖି ମୁଁ ଦୃଢ଼ନିଶ୍ଚିତ ଯେ, ଭାରତ ବିଶ୍ୱରେ ନାରୀ-ପୁରୁଷ ସମାନତାର ପଥ ପ୍ରଦର୍ଶକ ହେବ ।

ସମାଜର ଅଧାଲୋକଙ୍କୁ ଅର୍ଥାତ୍ ନାରୀମାନଙ୍କୁ ପଛରେ ରଖି ଆର ଅଧିକ ଅର୍ଥାତ୍ ପୁରୁଷମାନେ ଯେ ଆଗକୁ ବଢ଼ିପାରିଛନ୍ତି, ତା' ନୁହେଁ । ପ୍ରକୃତ କଥା ହେଉଛି, ମଣିଷଜାତିର ଚଳମାନ ଶଗଡ଼ର ଦୁଇ ଚକ ସମାନ ନ ଥିବାରୁ, ଏପରି ଅସାମଞ୍ଜସ୍ୟ ସମସ୍ତଙ୍କର କ୍ଷତି କରୁଛି । ମହିଳାମାନଙ୍କୁ ନିଷ୍ପତ୍ତି ନେବା ପ୍ରକ୍ରିୟାରେ ସାମିଲ କରାଗଲେ, କେବଳ ଯେ ଅର୍ଥନୈତିକ ପ୍ରଗତି ହେବ ତା' ନୁହେଁ, ଜଳବାୟୁ ସଂକ୍ରାନ୍ତୀୟ କାର୍ଯ୍ୟ ମଧ୍ୟ ତ୍ୱରାନ୍ୱିତ ହୋଇପାରିବ । ମୁଁ ନିଶ୍ଚିତ ଯେ ମଣିଷଜାତିର ପ୍ରଗତିରେ ମହିଳାମାନଙ୍କୁ ସମାନ ଅଂଶୀଦାର କରାଗଲେ ପୃଥିବୀ ଆହୁରି ସୁନ୍ଦର ହୋଇପାରିବ ।

ଆମର ଭବିଷ୍ୟତ ଯେ ଉଜ୍ଜ୍ୱଳ, ଏଥିରେ ମୁଁ ବେଶ୍ ଆଶାବାଦୀ । ମୋ ଜୀବନର ଅନୁଭୂତିରୁ ମୁଁ ଜାଣିଛି ଯେ ସମୟକ୍ରମେ ଲୋକେ ବଦଳନ୍ତି ଏବଂ ମନୋଭାବ ବଦଳେ । ଏହା ହିଁ ମଣିଷଜାତିର କାହାଣୀ : ଅନ୍ୟଥା ଆମେ ଏବେ ମଧ୍ୟ ଗୁମ୍ଫାରେ ରହିଥା'ନ୍ତେ । ନାରୀ-ମୁକ୍ତିର କାହାଣୀ ମନ୍ଥର ଗତିରେ ଆଗକୁ ଚାଲିଛି । ଅନେକ ସମୟରେ ଏହାର ଶିଥିଳତା ଯନ୍ତ୍ରଣାଦାୟକ ।

କିନ୍ତୁ ସନ୍ତୋଷର କଥା, ଏହା ତା'ର ନିର୍ଦ୍ଦିଷ୍ଟ ଗତିପଥରେ ସର୍ବଦା ଆଗେଇ ଚାଲିଛି, କେବେ ବି ବିପରୀତ ଦିଗରେ ଗତି କରିନାହିଁ । ଏହା ମୋର ବିଶ୍ୱାସକୁ ଦୃଢ଼ କରିଛି ଏବଂ ସେଥିପାଇଁ ମୁଁ ବାରମ୍ବାର କହିଆସିଛି ଯେ ଭାରତର ସ୍ୱାଧୀନତାର ଶତବାର୍ଷିକୀ ପର୍ଯ୍ୟନ୍ତ ଲମ୍ବିଥିବା ଏହି ଅମୃତ କାଳ ହେଉଛି ଆମ ଝିଅମାନଙ୍କର ।

ନାରୀ-ପୁରୁଷ ସମାନତା ଭାବର ସୁଦୃଢ଼ ମୂଳଦୁଆରୁ ଆମେ ଏକ ଜାତି ଭାବରେ ଯାତ୍ରା ଆରମ୍ଭ କରିଛନ୍ତି- ଏହା ମୋତେ ବେଶ୍ ଆଶାବାଦୀ କରିଛି । ପ୍ରାୟ ଏକ ଶତାବ୍ଦୀ ପୂର୍ବେ ସ୍ୱାଧୀନତା ସଂଗ୍ରାମ ସମୟରେ ମହାତ୍ମା ଗାନ୍ଧୀଙ୍କ ଜନଆନ୍ଦୋଳନ ମହିଳାମାନଙ୍କୁ ଏରୁଣ୍ଡି ଡେଇଁ ବାହାର ଦୁନିଆରେ ପାଦ ରଖିବାକୁ ଅନୁପ୍ରାଣିତ କରିଥିଲା । ସେହିଦିନଠାରୁ ଆମ ସମାଜ ଏବଂ ବିଶେଷ କରି ଆମ ମହିଳାମାନେ ଏକ ଉନ୍ନତ ଭବିଷ୍ୟତ ଗଠନ କରିବା ପାଇଁ ସ୍ୱପ୍ନ ଦେଖିଆସୁଛନ୍ତି । ମହିଳାଙ୍କ ପାଇଁ ଅନୁକୂଳ ହେଉ ନଥିବା କୁସଂସ୍କାର ଓ କୁପ୍ରଥାଗୁଡ଼ିକୁ ଆଇନ କିମ୍ବା ସଚେତନତା ମାଧ୍ୟମରେ ଦୂର କରାଯାଉଅଛି । ଆମ ସମାଜ ଉପରେ ଏହାର ସକାରାତ୍ମକ ପ୍ରଭାବ ପଡୁଥିବା ଲକ୍ଷ୍ୟ କରାଯାଉଛି । ଉଦାହରଣ ସ୍ୱରୂପ, ଆଜିର ସଂସଦରେ ମହିଳାମାନଙ୍କ ପ୍ରତିନିଧିତ୍ୱ ସର୍ବାଧିକ ରହିଛି । କହିବା ବାହୁଲ୍ୟ ଯେ, ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ରର ରାଷ୍ଟ୍ରପତି ଭାବରେ ମୁଁ ନିର୍ବାଚିତ ହେବା ମହିଳା ସଶକ୍ତିକରଣ ମହାଗାଥାର ଏକ ଅଂଶବିଶେଷ । ମୁଁ ବିଶ୍ୱାସ କରେ ଯେ ନାରୀ-ପୁରୁଷ ସମାନତାର ବିଚାରକୁ ପ୍ରୋତ୍ସାହିତ କରିବା ପାଇଁ ''ମାତୃତ୍ୱରେ ନେତୃତ୍ୱ ନିହିତ'' ଭାବନାକୁ ଉଜାଗର କରିବା ଆବଶ୍ୟକ । 'ବେଟି ବଚାଓ, ବେଟି ପଢ଼ାଓ' ଭଳି ଅନେକ ସରକାରୀ କାର୍ଯ୍ୟକ୍ରମ ସିଧାସଳଖ ମହିଳାମାନଙ୍କୁ ସଶକ୍ତ କରିବା ଦିଗରେ ଗୋଟିଏ ଗୋଟିଏ ଉପଯୁକ୍ତ ପଦକ୍ଷେପ ।

ଯେକୌଣସି ସମାଜ ଶ୍ରେଷ୍ଠ ପ୍ରଗତିଶୀଳ ଚିନ୍ତାଧାରା ସହିତ ତାଳ ଦେଇ ଆଗକୁ ଚାଲିବା ନିଶ୍ଚୟ ସମୟସାପେକ୍ଷ । ଏହାକୁ ଆମେ ହୃଦୟଙ୍ଗମ କରିବା ଉଚିତ । ପ୍ରତି ସମାଜ ମଣିଷକୁ ନେଇ ଗଠିତ, ଯାହାର ଅଧା ହେଉଛନ୍ତି ନାରୀ । ଏହି ସମାଜର ପ୍ରଗତିକୁ ତ୍ୱରାନ୍ୱିତ କରିବା ଆମ ସମସ୍ତଙ୍କର ଦାୟିତ୍ୱ । ମୁଁ ଆଜି ଅନୁରୋଧ କରିବାକୁ ଚାହେଁ ଯେ ଆପଣମାନେ ନିଜ ପରିବାର, ପଡ଼ୋଶୀ ଏବଂ କର୍ମକ୍ଷେତ୍ରରେ ଏପରି ପରିବର୍ତ୍ତନ ଆଣିବାକୁ ସଂକଳ୍ପ କରନ୍ତୁ, ଯଦ୍ଦ୍ୱାରା ଗୋଟିଏ ଝିଅ ମୁହଁରେ ହସ ଫୁଟିବ ଏବଂ ତା' ଜୀବନରେ ଆଗକୁ ଯିବାର ଅବସର ବୃଦ୍ଧି ପାଇବ । ମୁଁ ଆଗରୁ କହିଛି ଏବଂ ଏବେ ମଧ୍ୟ କହୁଛି ଯେ, ଏହା ମୋ ହୃଦୟର କଥା ।

ଭାରତର ରାଷ୍ଟ୍ରପତି
ନୂଆଦିଲ୍ଲୀ



# ଓଡ଼ିଶାରେ ଦୁଇ ବର୍ଷ

ପ୍ରଫେସର ଗଣେଶୀ ଲାଲ

ମହାମହିମ ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶକ୍ରମେ ମୁଁ ୨୦୧୮ ମଇ ୨୯ ତାରିଖରେ ଓଡ଼ିଶାରେ ପହଂଚିଥିଲି ଏବଂ ରାଜ୍ୟପାଳ ଦାୟିତ୍ୱ ଗ୍ରହଣ କରିଥିଲି । ଇତି ମଧ୍ୟରେ ଦୁଇ ବର୍ଷ ବିତି ଗଲାଣି । ସମୟ କେମିତି ଚାଲିଗଲା, ଜଣାପଡ଼ିଲାନି । ଯେଉଁ ସମୟ ଚାଲିଯିବା ଜଣାପଡ଼େନି, ତାହା ସୁଖର ସମୟ ବୋଲି ମୋର ବିଶ୍ୱାସ । ଏଣୁ ଗତ ଦୁଇ ବର୍ଷ ମୋ ପାଇଁ ମୋ ଜୀବନର ବିଶେଷ ସୁଖପ୍ରଦ ମହାର୍ଘ ସମୟ ବୋଲି ମୁଁ ବିଚାର କରୁଛି ।

ଓଡ଼ିଶା ସଂପର୍କରେ ମୋର ଅଳ୍ପ ଧାରଣା ଥିଲା ବିଶେଷ ଜ୍ଞାନ ନଥିଲା । ଆଗରୁ ଝାଡ଼ଖଂଡ଼ ରାଜ୍ୟର ବିଜେପି ପ୍ରଭାରୀ ଥିଲାବେଳେ ଦୁଇଥର ଓଡ଼ିଶା ଆସିଛି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରି ଫେରିଛି । ସେହି ମହାପ୍ରଭୁଙ୍କ ଅପାର କରୁଣାରୁ ଓଡ଼ିଶାରେ ରହିବାର ଏବଂ ଏହି ମାଟିର ସେବା କରିବାର ସୁଯୋଗ ପାଇଥିବାରୁ ମୁଁ ନିଜକୁ ଧନ୍ୟ ଓ ଭାଗ୍ୟବାନ ମନେ କରୁଛି । ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଏହାଠୁ ଅଧିକ ମୁଁ କିଛି ମାଗିପାରି ନଥାନ୍ତି । ଓଡ଼ିଶାର ରାଜ୍ୟପାଳ ଭାବରେ ଶପଥ ନେଲା ପରେ ମୁଁ ସଂକଳ୍ପ ନେଇଥିଲି ଯେ ମୁଁ ରାଜ୍ୟର ପାଳକ ନୁହେଁ  ରାଜ୍ୟର ବାଳକ ହେବାକୁ ଚେଷ୍ଟା କରିବି ଓ ରାଜଭବନକୁ ଜନଭବନ କରିବାକୁ ଉଦ୍ୟମ କରିବି । ମୁଁ ସେଥିରେ କେତେଦୂର ସଫଳ ହେଇଛି, ତାହା ସମୟ କହିବ । କିନ୍ତୁ ଯଦି ରାଜ୍ୟର ବାଳକ ହେଇପାରିଲି ତାହା ହେବ ମୋ ପାଇଁ ଚରମ ଉପଲବ୍ଧି ।

ଗତ ଦୁଇ ବର୍ଷ ମଧ୍ୟରେ ମୁଁ ଓଡ଼ିଶାର ଅନେକ ଅଂଚଳକୁ ଯାଇଛି । ମୋ ତରଫରୁ ଖବର ପଠେଇ ଗାଁକୁ ଯାଇଛି । ଗଲାବେଳେ କେଉଁଠି କେଉଁଠି ଓହ୍ଲେଇପଡ଼ି ଲୋକମାନଙ୍କ ସହ ମିଶିଛି । ପ୍ରୋଟୋକଲ ଭାଂଗିଥିବାରୁ ପ୍ରଶାସନର ନିରବ ବିରକ୍ତିର ସାମନା କରିଛି । କିନ୍ତୁ ଲୋକମାନଙ୍କର ଆକର୍ଷଣ, ବିଶେଷ କରି ପଲ୍ଲୀ ଅଂଚଳର, ମତେ ପ୍ରୋଟୋକଲ ଭାଂଗିବାକୁ ବାଧ୍ୟ କରିଛି । ସାରା ଓଡ଼ିଶା ଥରେ ନୁହେଁ ଅନେକ ଥର ବୁଲିଲା ପରେ, ମତେ ଲାଗୁଛି ମୋର ଆହୁରି ଦେଖିବାର ଅଛି । ମୁଁ ସମାଜର ପ୍ରତ୍ୟେକ ବର୍ଗର ହଜାର ହଜାର ଲୋକଙ୍କ ସଂସ୍ପର୍ଶରେ ଆସିଛି । ତେବେ ବି ମନ ପୂରିନି । ମୋର ଆହୁରି ଶିଖିବାର ଅଛି । ଓଡ଼ିଶାକୁ କେବଳ ଦେଖିବାକୁ ନୁହେଁ ଅନୁଭବିବାକୁ ମୋର ଆଗ୍ରହ । ଓଡ଼ିଶାକୁ ଆତ୍ମସ୍ଥ କରିବାକୁ ମୋର  ଅଭୀପ୍‌ସା ।

ଓଡ଼ିଶା ସଂପର୍କରେ ମୋର ଅନୁଭବ ଓ ଉପଲବ୍ଧିକୁ ମୁଁ କବିବର ରାଧାନାଥଙ୍କ ଭାଷାରେ କହିବାକୁ ଚାହିଁବି: ‘ବଚନ ବିଷୟ ନୁହଁଇ ଏ ଛବି, ହୃଦ ସେ କେବଳ ପାରେ ଅନୁଭବୀ ।’ ଓଡ଼ିଶା ରାଜନୀତିକ କି ଭୌଗଳିକ ଦୃଷ୍ଟିକୋଣରୁ ଏକ ପ୍ରଦେଶ ହେଇଥାଇପାରେ ମୋ ମତରେ ଏହା ସ୍ୱୟଂସଂପୂର୍ଣ୍ଣ ଏକ ବିଶ୍ୱ । ଏହାକୁ କଳ୍ପନା କରାଯାଇପାରେ କଳନା କରିବା ଅସଂଭବ । ନ ହେଲେ ଜଗତର ନାଥ ଜଗନ୍ନାଥ ଏହାକୁ ନିବାସ ଭାବରେ ବାଛିଥାନ୍ତେ କାହିଁକି ?

ଓଡ଼ିଶା ହେଉଛି ଏକ ଦିବ୍ୟ ଭୂମି ଓ ଏହାର ଭାଷା ହେଉଛି ଦିବ୍ୟବାଣୀ । ଉତ୍କଳ ଭୂମିର ବିକଳ୍ପ ସମଗ୍ର ବିଶ୍ୱରେ ନାହିଁ । ଏହା ଭୂଗୋଳ ନୁହେଁ, ଏକ ଭାବ । ଚିତ୍ର ନୁହେଁ ଚେତନା । ଆଧ୍ୟାତ୍ମିକତା ଏହାର ଆଧାର । ଅନାହତ ନାଦ ଚାଲିଛି ଅନବରତ, ଯାହା ପୂର୍ଣ୍ଣତାର ପରିପ୍ରକାଶ କରିଛି । ଏଠି ଦୃଶ୍ୟ

ଓଡ଼ିଶାରେ ମୁଁ ଦେଖିଛି ତଥାକଥିତ ଦାରିଦ୍ର୍ୟ ଭିତରେ ପ୍ରାଣପ୍ରାଚୁର୍ଯ୍ୟ ଓ ତଥାକଥିତ ପ୍ରାଚୁର୍ଯ୍ୟ ଭିତରେ ବୈରାଗ୍ୟ । ଏହା ଅନ୍ୟ କେଉଁଠି ଦୃଶ୍ୟମାନ ହୁଏ ନାହିଁ । ମୁଁ ଅନେକ ସମୟରେ ନିପଟ ପଲ୍ଲୀ ଅଂଚଳର ମା'ମାନଙ୍କୁ ପଚାରିଛି । ମୁଁ କ'ଣ କରିପାରିବି, କ'ଣ ମୋ ପାଇଁ ଆଦେଶ ? କେହି କିଛି ମାଗିନାହାନ୍ତି, ବରଂ କହିଛନ୍ତି, ତମେ ଆସିଲ, ଆମର ଅତିଥି, ତାହା ବଡ଼ କଥା । ମୋର କିଛି ଲୋଡ଼ା ନାହିଁ, ମୁଁ ଭଲ ଅଛି, ଏଭଳି ଆଧାତ୍ମିକ ଶୁଦ୍ଧତା ଅନ୍ୟଠି ବିରଳ । ଏହି ଛୋଟ ଲାଗୁଥିବା କଥାରେ ଅଛି ଏକ ଜାତିର ବଡ଼ପଣ, ମହନୀୟତା । ଆତ୍ମସଂତୁଷ୍ଟି । ସାଂପ୍ରତିକ ସମୟର ଏକ ବିରଳ ଅନୁଭୂତି, ଏହା ଦୀର୍ଘ ସାଧନାର ଫଳଶୃତି । ଅନ୍ୱେଷଣର ଅଂତିମ ସ୍ତର । ତେବେ ଓଡ଼ଶାର ସାଧାରଣ ଲୋକମାନଙ୍କୁ ସେହି ସ୍ତରରେ ସାକ୍ଷାତ୍ କରି ମୁଁ ଆଶ୍ଚର୍ଯ୍ୟଚକିତ । ଏଭଳି ସ୍ୱାଭାବିକତାର ସମାଂତର ନାହିଁ । ସବୁ ସେଇ କାଳିଆ ବୁଝିବ । ମହାପ୍ରଭୁଙ୍କ ଉପରେ ଏତେ ବିଶ୍ୱାସ, ଆସ୍ଥା ଓ ଭରସା ଉତରିତ ଚେତନାର ଲକ୍ଷଣ । ତେବେ ଏହି ଆତ୍ମସନ୍ତୋଷ ଭାବ କ'ଣ ଆଧୁନିକ ମାନଦଣ୍ଡରେ ପ୍ରଗତିର ପରିପନ୍ଥୀ କି ? ଏହି ପ୍ରଶ୍ନର ସଠିକ ଉତ୍ତର ମୁଁ ଖୋଜି ପାଇପାରୁନାହିଁ ।

ମୁଁ ଜାଣିଲି ଯେ, ଓଡ଼ିଶାର ପିଲାମାନେ ଯେତେବେଳ ଅକ୍ଷର ଶିକ୍ଷା ଆରମ୍ଭ କରନ୍ତି, ସେମାନଙ୍କୁ ତିନିଗୋଟି ମୁଂଡ଼ଳା କାଟି, ତା ଉପରେ ଖଡ଼ି ମଡ଼େଇ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କହି ଅଭ୍ୟାସ କରିବାକୁ ପଡ଼େ । ଯେଉଁଠି ବିଦ୍ୟାରଂଭ ଏଭଳି ହୁଏ, ସେଠି ଆଧାତ୍ମିକତାର ନିରଂତର ପ୍ରବାହ ରହିବ ହିଁ ରହିବ । ଜୀବନ ବୃକ୍ଷ ଯେତେ ଶାଖା ପ୍ରଶାଖା ମେଲାଇ ବାହାରର ପରିବେଶ ଅନୁସାରେ ଝଂକେଇଲେ ମଧ୍ୟ ଚେର ତ ଅଧାତ୍ମ ରସରେ । ଏଭଳି ବିଦ୍ୟାରଂଭର ପରଂପରା ଅନ୍ୟ କେଉଁଠି ଅଛି କି  ନାହିଁ, ମୁଁ ଜାଣି ନାହିଁ । ଓଡ଼ିଆମାନଙ୍କର ରୀତି ନୀତି ଜୀବନ ଶୈଳୀରେ ଆଧାତ୍ମିକତା ଭରିରହିଛି । ଯେତେଯେତେ ଓଡ଼ିଆ ଜୀବନଚର୍ଯ୍ୟା ସଂସ୍ପର୍ଶରେ ଆସୁଛି, ସେତେ ସେତେ ମୁଁ ବାରିପାରୁଛି । ସାଧାରଣ ଅଭ୍ୟାସରେ କିଭଳି ରହିଛି ଅତିଂନ୍ଦ୍ରୀୟତା । ନିତିଦିନିଆ କାର୍ଯ୍ୟରେ, ମାମୁଲି ମନେ ହେଉଥିବା ଆଚରଣରେ କିଭଳି ପ୍ରକାଶିତ ସାତ୍ତ୍ୱିକ କାରଣ ଓ ଉଚ୍ଚାରଣ । ଭିତରେ ଭରିରହିଛି ଦର୍ଶନ । ଏଠି ଘଟଣା ପଛରେ ଅଛି ଚେତନା । ଓଡ଼ିଶାର ଅସଲ ରୂପ ଦେଖିବାକୁ ଲୋଡ଼ା ମହନ୍ୱିତ ଦୃଷ୍ଟି ଶକ୍ତି । ଅନେକ ଅଧାତ୍ମ ଗ୍ରଂଥରେ ମୁଁ ଓଡ଼ିଶାକୁ ଦେଖିପାରୁଛି ହୁଏତ ଓଡ଼ିଶାକୁ ଦେଖିଲା ପରେ ବୁଝିପାରୁଛି । ଓଡ଼ିଶା ସହ ଆତ୍ମୀୟ ସଂପର୍କ ଯୋଡ଼ିବାକୁ ମୁଁ ଭାଗବତ, ରାମଚରିତ ମାନସ, ଭଗବଦ୍ ଗୀତାର ସହାୟତା ଲୋଡ଼ିଛି । ଏଠାରେ ମୁଁ କେବଳ ଶ୍ରୀ ଅରବିଂଦଙ୍କ 'ସାବିତ୍ରୀ'ର କେତୋଟି ଧାଡ଼ି ଉଦ୍ଧାର କରି ମୋର ଆତ୍ମବୋଧ ପ୍ରକାଶ କରିବାକୁ ପ୍ରୟାସ କରୁଛି ।

Thy servitudes on earth are greater,
King, Than all the glorious liberties of heaven.

The heavens were once to me my natural home,

I too have wandered in star-jewelled groves,

Paced sun-gold pastures and moon-silver swards

And heard the harping laughter of their streams

And lingered under branches dropping myrrh;

I too have reveled in the fields of light

Touched by the ethereal raiment of the winds

Thy wonder-rounds of music I have trod

Lived in the rhyme of bright unlabouring thoughts

I have beat swift harmonies of rapture vast

Danced in spontaneous measures of the soul

The great and easy dances of the gods.

ମୁଁ ଦେଖିଛି ଅନ୍ୟ ରାଜ୍ୟରେ, ଲୋକମାନେ ଭଗବତ ପାରାୟଣ ଆୟୋଜନ କରଂତି । ପ୍ରବଚକଙ୍କୁ ଡ଼ାକି ନିର୍ଦ୍ଦିଷ୍ଟ କେତେଦିନ ଏକାଠି ହୋଇ ଭାଗବତ କଥା ଶୁଣନ୍ତି । ଓଡ଼ିଶାରେ ମଧ୍ୟ ବେଳେ ବେଳେ ହୁଏ, ମୁଁ କେତୋଟିରେ ଅଂଶ ଗ୍ରହଣ କରିଛି । ମୁଁ ଯେତେବେଳେ ଜାଣିଲି ଯେ ଓଡ଼ିଶାର ଗାଁରେ ଗାଁରେ ଭାଗବତ ଟୁଂଗି ଅଛି, ଯେଉଁଠାରେ ପ୍ରତିଦିନ ସଂଧ୍ୟାରେ ଭାଗବତ ପାଠ ହୁଏ ମୁଁ ପ୍ରଥମେ ବିଶ୍ୱାସ କରିପାରିଲିନି । ଅନୁମାନ କରନ୍ତୁ, ସଂଧ୍ୟା ହୋଇ ଆସୁଥିବ । ଗାଁର ପ୍ରତ୍ୟେକଙ୍କ ଦ୍ୱାରରେ ସଂଜବତୀ ଲାଗିଥିବ । ଭାଗବତ ଟୁଂଗିରୁ ପରମ ଶାସ୍ତ୍ରର ବାଣୀ ଧ୍ୱନି ହୋଇ ଆକାଶରେ ଖେଳୁଥିବ । ଏକ ଅମୃତମୟ ପରିବେଶ । ସାରା ପ୍ରଦେଶ । ଏ ତ ଏକ ଅକଳ୍ପନୀୟ ଅବସ୍ଥା । କିନ୍ତୁ ଏହା ବାସ୍ତବାୟିତ ଯେଉଁ ପ୍ରଦେଶରେ ସେ ପ୍ରଦେଶକୁ ସ୍ୱର୍ଗ ନୁହେଁ ତ ଆଉ କ'ଣ କୁହାଯାଇପାରେ ।

ଓଡ଼ିଶାର ଲୋକମାନଙ୍କର ଆତିଥ୍ୟର ପଟାନ୍ତର ନାହିଁ । ଲୋକମାନଙ୍କର ଅକୃତ୍ରିମ ସ୍ନେହ ଶ୍ରଦ୍ଧାରେ ମୁଁ ଅଭିଭୂତ । ଯେଉଁ ଗାଁକୁ ଯାଇଛି ସେ ଗାଁରେ ଆବାଳବୃଦ୍ଧବନିତା ମତେ ଋଣୀ କରିଦେଇଛନ୍ତି । ମୁରୁଜ ପଡ଼ିଥିବ, ଦୁଇ ପଟେ କଦଳୀ ଗଛ, ପୂର୍ଣ୍ଣ କୁଂଭ, ହରିବୋଲ, ହୁଳହୁଳି, ମଥାରେ ଚଂଦନ ସିନ୍ଦୂର ଲଗାଇ ବଂଦାପନା ଏସବୁରେ ମୁଁ ଲଜ୍ଜିତ ଅନୁଭବ କରେ । ନିଜକୁ ପଚାରେ, ମୁଁ କିଏ? ଏତେ ଆପଣାର ହେଲି କେମିତି? ବିନା ପ୍ରତ୍ୟାଶାରେ ଏଭଳି ସଂବର୍ଦ୍ଧନାର କାରଣ କ'ଣ? ଉତ୍ତର ମିଳିଛି ଆପଣ କ'ଣ ହୁଅନ୍ତୁ ନ ହୁଅନ୍ତୁ ଆପଣ ଜଣେ ଅତିଥି । ଓଡ଼ିଶାର ଆତିଥେୟତାର ଅନେକ ବିଭବ ମତେ ନମ୍ର, ଆତ୍ମ ସଚେତନ ଓ ଅଧ୍ୟାତ୍ମମନସ୍କ କରିଛି । ପ୍ରତ୍ୟେକ ବ୍ୟକ୍ତି ମତେ ଜଗନ୍ନାଥଙ୍କୁ ସ୍ମରଣ କରେଇ ଦେଇଛନ୍ତି । ଓଡ଼ିଶାର ପ୍ରତ୍ୟେକ କ୍ଷେତ୍ରରେ ଶ୍ରୀକ୍ଷେତ୍ରର ବାସ୍ନା ବାରିପାରିଛି । ଆଦିବାସୀ ଅଂଚଳରେ ଲୋକମାନଙ୍କର ନିର୍ଭେଜାଲ ସରଳତା ଓ ଆତ୍ମୀୟତା, ପରିପୂର୍ଣ୍ଣ ଅଂତରୀକ୍ଷ ଭଳି ଆଖିର ଭାଷା ମତେ ଶ୍ରୀରାମ-ଶବରୀ ସମୟକୁ ନେଇଯାଇଛି । ଓଡ଼ିଶା ମୋ ବ୍ୟକ୍ତିଗତ ଉତ୍ତରଣର ଉତ୍‌ପ୍ରେରକ ହୋଇପାରିଛି ।

ସତ କହିବାକୁ ଗଲେ, ଉତ୍ତର ଭାରତରେ ଓଡ଼ିଶାକୁ ଜଗନ୍ନାଥଙ୍କ ଦେଶ ବୋଲି ଲୋକମାନେ ଜାଣନ୍ତି । ଓଡ଼ିଶାର ବିଭବ, ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ଓ ସ୍ୱଭାବ- ମାଧୁର୍ଯ୍ୟ ସଂପର୍କରେ ବିଶେଷ ଧାରଣା ନାହିଁ । ବଂର କେତେକ ନକାରାତ୍ମକ ଦୃଶ୍ୟ, ଘଟଣା, ଖବର ଆଦିରେ ଓଡ଼ିଶାର ରୂପ ଅଂକିତ । ଏହା କାହିଁକି ? ଏହି ପ୍ରଶ୍ନ ମତେ ସବୁବେଳେ ଆଂଦୋଳିତ କରିଛି । ଏଠି ଯାହା ଅଛି, ତାହା ଅନ୍ୟ କୋଉଠି ନାହିଁ ଯାହା ଅନ୍ୟଠି ଅଛି ଏଠି ମଧ୍ୟ ତାହା ଅଛି । ବୋଧହୁଏ ଓଡ଼ିଶାକୁ ଠିକ୍ ଭାବରେ ଉପସ୍ଥାପିତ କରାଯାଇପାରିନାହିଁ । ଓଡ଼ିଶାର ସମୃଦ୍ଧ ଇତିହାସ ଓ ଐତିହ୍ୟ ସଂପଦ ଓ ସଂପତ୍ତି ଚିତ୍ର ଓ ଚରିତ୍ର, ମାନବଜାତିକୁ ଏହାର ଅମୂଲ୍ୟ ଅବଦାନ ଭାରତକୁ ଏହାର ବରଦାନ ଏବଂ ସର୍ବୋପରି ଓଡ଼ିଶାର ଚିରଂତନ ଭାବବୋଧର ପ୍ରଚାର ପ୍ରଚାର ଅଭାବରୁ ବୃହତର ଜନସମୂହ ଏକ ଅମୃତ ଉପଲବ୍ଧିରୁ ବଂଚିତ ହୋଇଛନ୍ତି । ଏହା ଓଡ଼ିଶାର କ୍ଷତି ତ ନିଶ୍ଚୟ ତେବେ ବେଶି କ୍ଷତି ସାରା ଭାରତର, ଏପରିକି ପୃଥିବୀର । ମୁଁ ଅନେକ ସମୟରେ ଏହି ପ୍ରସଂଗରେ ଓଡ଼ିଶାର ଚିନ୍ତାନାୟକ ବୁଦ୍ଧୀଜୀବୀମାନଙ୍କ ସହ ଆଲୋଚନା କରିଛି ଏବଂ ଏ କ୍ଷେତ୍ରରେ କାର୍ଯ୍ୟ କରିବାକୁ ନିବେଦନ କରିଛି । ଆଧୁନିକ ଇତିହାସରେ ମଧ୍ୟ ଓଡ଼ିଶା ନ୍ୟାଯ୍ୟ ସ୍ଥାନ ପାଇନି । ବର୍ତ୍ତମାନ ସମୟ ହେଉଛି ଆତ୍ମ ପ୍ରଚାରର ସମୟ । ଏ ତ ଆତ୍ମ ପ୍ରଚାର ନୁହେଁ, ଓଡ଼ିଶାର ଆତ୍ମିକ ପ୍ରଚାର । ପ୍ରଥମେ ଲୋକପ୍ରିୟ ସାଂସ୍କୃତିକ ପ୍ରସାର ମାଧ୍ୟମର ଉପଯୋଗ କରାଯାଇପାରେ । ହିଂଦୀ ଚଳଚ୍ଚିତ୍ର, ସିରିଆଲ ଆଦିରେ ଓଡ଼ିଶାକୁ ଲୋକଙ୍କ ପାଖରେ ପହଂଚାଯାଇପାରେ । ବିଷୟର ଅଭାବ ନାହିଁ । ଏହା ପ୍ରାରଂଭିକ ଆକର୍ଷଣ ସୃଷ୍ଟି କରିବ ଏବଂ ପରେ ବୁଦ୍ଧିଦୀପ୍ତ ଅନ୍ୱେଷୀମାନଙ୍କ ପାଇଁ ପଥ ପ୍ରଶସ୍ତ କରିବ । କୋଣାର୍କ ମଂଦିର ନିର୍ମାଣକୁ ନେଇ ବଲିଉଡ୍‌ରେ କ'ଣ, ହଲିଉଡ୍‌ରେ ମଧ୍ୟ ସଫଳ ସିନେମା ନିର୍ମାଣ ହୋଇପାରିବ ।

ମୁଁ ଗତ ଦୁଇ ବର୍ଷ ମଧ୍ୟରେ ପାଇକ ବିଦ୍ରୋହର ଦୁଇଶତ ବର୍ଷ ପୂର୍ତ୍ତି ସଂପର୍କିତ ଏକାଧିକ କାର୍ଯ୍ୟକ୍ରମରେ ଯୋଗ ଦେବାର ସୁଯୋଗ ପାଇଛି । ମୋର ଆଖି ଖୋଲିଯାଇଛି ।

ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଇତିହାସ ଜାଣି ମୁଁ ରୋମାଂଚିତ ହୋଇଛି । ମାଟି ମା'ର ସ୍ୱାଧୀନତା ପାଇଁ ଏଭଳି ଏକ ବିଶାଳ ତତ୍ତ୍ୱ ଚାଳିତ ଆନ୍ଦୋଳନ ଓ ପାଇକମାନଙ୍କର ବୀର ଗାଥାର ତତ୍କାଳୀନ ଉଦାହରଣ ଅନ୍ୟ କେଉଁଠି ନାହିଁ । ବକ୍ସି ଜଗବନ୍ଧୁ ବାସ୍ତବରେ ଜଣେ ବିଶ୍ୱସ୍ତରୀୟ ବୀର ପୁରୁଷ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଏହି ମୁକ୍ତି ଆଂଦୋଳନ, ଯାହାକି ଏକ ବିଦ୍ରୋହ ବୋଲି ବ୍ରିଟିଶମାନେ ବର୍ଣ୍ଣନା କରି ଏହାର ଅବମୂଲ୍ୟାୟନ କରିଛନ୍ତି, ସେଥିରେ ସଂଶୋଧନ ଆସିବା ଦରକାର ଏବଂ ସଂଗ୍ରାମର ଏହି ଜାତୀୟ ଗୌରବର ଭାଗିଦାରୀ ହେବାକୁ ସାରା ଭାରତ ପାଇଁ ସୁଯୋଗ ସୃଷ୍ଟି କରିବାର ଆବଶ୍ୟକତା ଅଛି ବୋଲି ମୋର ବିଶ୍ୱାସ ।

କେବଳ ପାଇକ ଆଂଦୋଳନ ନୁହେଁ, ଓଡ଼ିଶା ମାଟିର ଅନେକ ବୀର ସଂଗ୍ରାମୀ ସାଧକଂକୁ ଇତିହାସ ଯେଭଳି ଅବହେଳା କରିଛି, ତାହା ମତେ ବ୍ୟଥିତ କରିଛି । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଜୀବନ ଚରିତ ପଢ଼ିବାର ସୁଯୋଗ ପାଇଥିଲି । ମତେ ଲାଗିଲା, ସେ ତ ପ୍ରକୃତ ପକ୍ଷେ ଭାରତଗୌରବ । କୁଟୀର ଶିଳ୍ପ, ସମବାୟ, ଅସ୍ପୃଶ୍ୟତା ବିରୋଧୀ କାର୍ଯ୍ୟକ୍ରମ, ଭାଷାଭିତ୍ତିକ ପ୍ରଦେଶ ଗଠନ ଆଦି ଅନେକ ଚିନ୍ତା ଓ ଚେତନାରେ ସେ ତାଙ୍କ ସମୟଠୁ ବହୁ ଆଗରେ ଥିଲେ । ମହାତ୍ମା ଗାନ୍ଧୀ ତାଙ୍କ ଦ୍ୱାରା ଅନୁପ୍ରାଣିତ ବୋଲି ସ୍ୱୀକାର କରିଛନ୍ତ । ତାଙ୍କ ସମୟରେ ଭାରତରେ ତାଙ୍କ ଉଚ୍ଚତାର କେତେ ଜଣ ଥିଲେ? ତାଙ୍କର ଗୋଟିଏ ପଦ 'ଜାତି ନଂଦିଘୋଷ ଚଳିବ କି ଭାଇ ସ୍ୱାର୍ଥକୁ ସାରଥି କଲେ ...' କେତେ ମାର୍ମିକ କହିଲେ ? ସେହିପରି ଉତ୍କଳମଣି । ମୁଁ ତାଙ୍କ ବିଷୟରେ କିଛି କିଛି ପଢ଼ିଛି, ସୁଆଂଡ଼ୋ ଯାଇ ତାଙ୍କ ଷଠିଘର ଦେଖିଛି । ସେ ତ ଭାରତମଣି ହେବାକୁ ଯୋଗ୍ୟ । ଶିକ୍ଷା କ୍ଷେତ୍ରରେ ବନ ବିଦ୍ୟାଳୟର ଅଭିନବ ପ୍ରୟୋଗ ସାଙ୍ଗକୁ ସଂଗ୍ରାମ, ସାହିତ୍ୟ, ସଂସ୍କୃତି ଓ ସମାଜସେବାକୁ ପଂଚସଖାଙ୍କ ଅବଦାନ ସାରା ଭାରତ ଜାଣିବା ଦରକାର । ଓଡ଼ିଶାର କେତେ କେତେ ବରପୁତ୍ର ମୁଁ ଯେତିକି ଜାଣିବାର ସୁଯୋଗ ପାଇଛି, ଲାଗିଛି ଓଡ଼ିଶା ହେଉଛି ଭାରତରତ୍ନର ଖଣି । ଏବେ ହରେକୃଷ୍ଣ ମହତାବଙ୍କ ବିଷୟରେ ପଢ଼ିଲି । ତାଙ୍କ ବ୍ୟକ୍ତିତ୍ୱର ବ୍ୟାପ୍ତିକୁ ଆଖିପାଉନି । ସଂଗ୍ରାମ, ସାହିତ୍ୟ, ଦେଶ ନିର୍ମାଣ – ସବୁଠି ସେ ଶୀର୍ଷତ୍ୱର ପ୍ରତୀକ । ସେମିତି ବିଜୁ ପଟ୍ଟନାୟକ – ଯାହାଙ୍କ ଶବ ଉପରେ ପଡୁଛି ଏକାଧିକ ରାଷ୍ଟ୍ରର ପତାକା ସେଭଳି ବ୍ୟକ୍ତି ଅନ୍ୟ କେଉଁ ପ୍ରଦେଶରେ ଅଛନ୍ତି କି ନାହିଁ ମତେ ଜଣାନାହିଁ । ଦୃଢ଼ତା ଓ କୋମଳତାର ଏଭଳି ବିରଳ ବ୍ୟକ୍ତିତ୍ୱ ଭାରତକୁ ସମୟର ଏକ ବରଦାନ ବୋଲି ମୁଁ ବିଚାର କରେ । ଓଡ଼ିଶାର ବରପୁତ୍ରମାନଙ୍କ ମଧ୍ୟରେ ଏକ ସମାନତା ମୁଁ ଲକ୍ଷ୍ୟ କରିଛି । ବୀର ସୁରେନ୍ଦ୍ର ସାଏ କି ନେତାଜୀ ସୁଭାଷ ଚନ୍ଦ୍ର ବୋଷ କି ଚାଖି ଖୁଂଟିଆ ସମସ୍ତଙ୍କର ବ୍ୟାପ୍ତି ବିଭିନ୍ନ ଦିଗରେ / ବାଗରେ ହୋଇଥାଇପାରେ, କିନ୍ତୁ ମୂଳ ହେଉଛି ଆଧାତ୍ମିକତା । ସମାଜଜୀବନ, ରାଜନୀତି, ସାହିତ୍ୟ, ଏପରିକି ଧର୍ମର ଆଧାତ୍ମିକୀକରଣ ହେଉଛି ସେମାନଙ୍କର ବିଶେଷତା । ଏହା ନିଶ୍ଚିତ ଓଡ଼ିଶା ମାଟିର ବିଭୂତି, ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ବିନା ସଂଭବ ନୁହେଁ । ଏହି ପରଂପରା ଏବେ ମଧ୍ୟ ଜାରୀ ରହିଥିବା ମୁଁ ଲକ୍ଷ୍ୟ କରିଛି । ୨୦୧୯ ସାଧାରଣ ନିର୍ବାଚନ ଦେଖିଲି । ନିର୍ବାଚନ ଯୁଦ୍ଧ ଦେଖିବା ମୋ ପାଇଁ ନୂଆ ନୁହେଁ । ଓଡ଼ିଶାର ଦୃଶ୍ୟ କିନ୍ତୁ ମୋ ପାଇଁ ନୂଆ ଥିଲା । ଏଠାରେ କେବେ ବି ରାଜନୀତି ଶାଳୀନତାର ସୀମା ଲଙ୍ଘନ କରୁନାହିଁ । ଲୋକମାନେ ଯେପରି, ଜନତା ମଧ୍ୟ ସେପରି । ମୁଁ ପ୍ରାୟ ସବୁ ଦଳର ବହୁ ରାଜନେତାକୁ ବ୍ୟକ୍ତିଗତ ଭାବରେ ଜାଣିଛି ଆଳାପ ଆଲୋଚନା କରିଛି । ଆଦର୍ଶଗତ ଓ ଦଳଗତ ମତ ପାର୍ଥକ୍ୟ ଥିଲେ ମଧ୍ୟ ପାରସ୍ପରିକ ସଂପର୍କ ଓ ସଂପ୍ରୀତି ମତେ ପ୍ରଭାବିତ କରିଛି । ମୋର ମନେ ହୁଏ, ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ବହୁ ସଂଖ୍ୟାରେ ଭଦ୍ର ଶିକ୍ଷିତ ଓ ମାର୍ଜିତ ବ୍ୟକ୍ତିଙ୍କ ଯୋଗଦାନ ଏବଂ ସେମାନଙ୍କ ପ୍ରତି ଜନସାଧାରଣଙ୍କ ସ୍ୱୀକୃତି ଏହାର କାରଣ ହେଇପାରେ ।

ଓଡ଼ିଶାର ଯେଉଁ ସ୍ଥାନକୁ ଯାଇଛି ସେଠି କେବଳ ଚଳିତ ସମୟକୁ ନୁହେଁ ଅତୀତକୁ ମଧ୍ୟ ଅନୁଭବ କରିବାକୁ ପ୍ରୟାସ କରିଛି । ଭବିଷ୍ୟତକୁ ଦେଖିବାକୁ ଆଗ୍ରହୀ ହୋଇଛି । ସଇଁତଳା ଗୋଳାବାରୁଦ କାରଖାନା, ସୁନାବେଡ଼ା ମିଗ୍ ବିମାନ କାରଖାନା, ଚାନ୍ଦିପୁର କ୍ଷେପଣାସ୍ତ୍ର ଘାଟୀ ବୁଲି ଦେଖିଲା ବେଳେ 'ଉତ୍କଳ ସୁରବର-ଦର୍ପିତ-ଗେହା, ଅରିକୁଳ-

ଶୋଣିତ-ଚର୍ଚିତ-ଦେହା' ମନେ ପଡ଼ିଛି । ପାରାଦୀପ ଓ ଧାମରା ବନ୍ଦର ଦେଖିଛି । ନୀଳ ସମୁଦ୍ରରେ ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ପରଂପରାକୁ ଅନୁଭବରେ ଆଣିଛି ।

ଏବେ 'ବଂଦେ ଉତ୍କଳ ଜନନୀ' ଗାନ କରାଯାଇ କରୋନା ଯୋଦ୍ଧାଙ୍କ ଉଦ୍ଦେଶ୍ୟରେ ସମ୍ମାନ ପ୍ରଦର୍ଶନ କରାଗଲା । ମହତ ପ୍ରୟାସ । ମୁଁ ଗାଇଛି । କୌଣସି ଏକ କାର୍ଯ୍ୟକ୍ରମରେ ମୁଁ ଯେତେବେଳେ ପ୍ରଥମେ ଏହାକୁ ଶୁଣିଲି ଏହାର ଶବ୍ଦ, ଭାବ ଓ ସ୍ୱରର ପ୍ରେମରେ ପଡ଼ିଗଲି । ଏହି ସଂଗୀତର ଅପୂର୍ବ ଜୀବନୀ ଶକ୍ତି ଥିବା ମନେ ହେଲା ଏବଂ ଏଥିରେ ଓଡ଼ିଶାର ଯେଉଁ ରୂପ ବର୍ଣ୍ଣନା କରାଯାଇଛି ତାହାକୁ ମୁଁ ସାକ୍ଷାତ୍ କରିଚାଲିଛି । 'ବଂଦେ ମାତରମ୍' ସମକକ୍ଷ ଏଭଳି ପ୍ରେରଣାଦାୟୀ ଭାବଗର୍ଭକ ଓ ମଧୁର ପ୍ରାଦେଶିକ ସଂଗୀତ ମୁଁ ଜାଣିବାରେ ଅନ୍ୟ କେଉଁ ରାଜ୍ୟରେ ନାହିଁ । ଚାରୁ ହାସମୟୀ, ଚାରୁ ଭାଷମୟୀ, କରୁଣାମୟୀ, କ୍ଷମାମୟୀ, ମଂଗଳମୟୀ, ବାତ୍ସଲ୍ୟମୟୀ, ଶୋଭାମୟୀ ଉତ୍କଳ ଜନନୀଙ୍କ ବନ୍ଦନା ଗାଇ ମୁଁ କୃତାର୍ଥ । ଓଡ଼ିଆ ଭାଷା ଓ ସାହିତ୍ୟ ବେଶ୍ ସମୃଦ୍ଧ । ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଛି, ଏହା ତ ଦେବତାଙ୍କର ଭାଷା । ଏହି ଭାଷାର ସ୍ୱତଂତ୍ର ମିଠାପଣ ଅଛି । ଶୁଣିବାକୁ ଆନନ୍ଦ ଲାଗେ । ଏହି ଭାଷାରେ ଏମିତି ରଚନା ଅଛି, ଯାହା ସମଗ୍ର ବିଶ୍ୱକୁ ଆଲୋକିତ କରିଦେବ । 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ', ଏହା ପରେ ଆଉ କ'ଣ କିଛି କରିବାକୁ ଅଛି ! ଏମିତି ଅନେକ ପଦ ସଂସ୍ପର୍ଶରେ ଆସିଛି, ଯାହା ମୋର ଚେତନାକୁ ଆନନ୍ଦ ଓ ପୁଲକରେ ଭରି ଦେଇଛି । ଏହି ଭାଷାରେ ଅନେକ ସ୍ରଷ୍ଟା ଏବେ କ୍ରିୟାଶୀଳ ଥିବା ସୁଖର କଥା । ଓଡ଼ିଶାସାରା ବୁଲିଲା ବେଳେ ଅନେକ ସାହିତ୍ୟିକଙ୍କୁ ଭେଟିଛି । ମତେ ଇତିମଧ୍ୟରେ ଶହ ଶହ ନୁହେଁ, ହଜାର ହଜାର ବହି ଉପହାର ଆକାରରେ ମିଳିଛି । ଓଡ଼ିଶାରେ ଯେତେ ସଂଖ୍ୟାରେ କବି ଲେଖକ ସକ୍ରିୟ ଅଛନ୍ତି ମତେ ଲାଗୁନି ଅନ୍ୟ କେଉଁ ଭାଷାରେ ଏତେ ସଂଖ୍ୟାରେ ଥିବେ । ଓଡ଼ିଆ ଭାଷାର କୃତି ବିଶେଷକରି ମତେ ବହି ଉପହାର ଦେଇଥିବା ଲେଖକଙ୍କୁ ଯେଭଳି ପଢ଼ିପାରିବି, ସେଥିପାଇଁ ଓଡ଼ିଆ ଭାଷା ଶିଖୁଛି । ମୁଁ ଏବେ ପ୍ରାୟ ପଢ଼ିପାରୁଛି ଓ ଓଡ଼ିଆ ଶୁଣି ବୁଝିପାରୁଛି । ଏହାକୁ ମୋର ଏକ ବ୍ୟକ୍ତିଗତ ସୁଖ, ସଂତୋଷ ଓ ସଫଳତା ବୋଲି ମନେ କରୁଛି ।

ଓଡ଼ିଆ ଲୋକମାନେ ସ୍ୱଭାବତଃ ସୃଜନଶୀଳ । ସୃଜନଶୀଳତା ଓଡ଼ିଶାର ଜୀବନଶୈଳୀ ସହିତ ସମନ୍ୱିତ । ଗାଁରେ କାଂଥରେ ଝୋଟି ଚିତା ଦେଖିଛି, ଦେଖିଛି ବି ପ୍ରସ୍ତର କଳା, ବାଲୁକା କଳା, ଚିତ୍ରକଳା, ବୟନ କଳା । ଅନେକ ଶିଳ୍ପୀଙ୍କୁ ବ୍ୟକ୍ତିଗତ ସ୍ତରରେ ଭେଟିଛି । ମତେ ଲାଗେ ଈଶ୍ୱର ସେମାନଙ୍କୁ ଏଠାକୁ ପଠାଇଛନ୍ତି, ତାଙ୍କ ସୃଷ୍ଟିକୁ ଆହୁରି ଟିକେ ସୁନ୍ଦର କରିବାକୁ । ଓଡ଼ିଶା ପ୍ରକୃତରେ ଈଶ୍ୱରଙ୍କର ଆଶୀର୍ବାଦପ୍ରାପ୍ତ ନ ହେଲେ ଏତେ କଳାକାର ଶିଳ୍ପୀ ଏହି ମାଟିରେ ଜନ୍ମ ନେଉନଥାନ୍ତେ । ଉତ୍କର୍ଷ କଳାର ଦେଶ ଉତ୍କଳ ତାର ସାର୍ଥକତା ପ୍ରତିପାଦନ କରିଚାଲିଛି । ସବୁ ସୃଜନର ପ୍ରେରଣା ଭୂମି ହେଉଛି ଆଧାତ୍ମିକ ଭାବ । ସେ ଗୀତ ହେଉ କି ନୃତ୍ୟ ହେଉ କି ଚାରୁକଳା କାରୁକଳା ହେଉ, ସବୁର ଗତି ସେଇଆଡ଼କୁ । ଓଡ଼ିଶୀ ନୃତ୍ୟ ତ ନୃତ୍ୟ କେବଳ ନୁହେଁ, ଏହା ମୋକ୍ଷ ମୁହାଁ ଗତି । ତଲ୍ଲୀନଭାବ ଓଡ଼ିଶୀ ନୃତ୍ୟର ଭୂଷଣ । ସବୁ ଏକାକାର ହୋଇଯାଏ, ମଂଚ, ପ୍ରେକ୍ଷାଳୟ, ଦର୍ଶକ, ନର୍ତ୍ତକୀ, ବାଦକ, ଗାୟକ । ସବୁ ମିଶିଯାଏ ଯେମିତି ଆତ୍ମା ସହ ପରମାତ୍ମା, ନଈ ସହ ସମୁଦ୍ର କି ବାସ ସହ ପୁଷ୍ପ । ମନ୍ଦିରରୁ ମଂଚକୁ ଆସିଥିବା ଏହି ନୃତ୍ୟରେ ମନ୍ଦିରର ପବିତ୍ରତା ବଜାୟ ରହିଥିବା ବଡ଼କଥା । ମୁଁ ଯେତେଥର ଓଡ଼ିଶୀ ନୃତ୍ୟ ଦେଖିଛି, ଶେଷଆଡ଼କୁ ମୁଁ ଯେମିତି ନୃତ୍ୟ ହୋଇଯାଇଛି । ଏହା ଯେମିତି ଯୋଗର ଏକ ମଧୁମୟ ମାର୍ଗ । ଓଡିଶୀ ଭିନ୍ନ ଅନ୍ୟ କେତେକ ନୃତ୍ୟ ଦେଖିବାର ସୁଯୋଗ ପାଇଛି । ମୁଗ୍ଧ ହେଇଛି । ମତେ ଲାଗୁଛି, ଓଡ଼ିଶାର ପ୍ରତ୍ୟେକ ଲୋକ ନିଜ କର୍ମ ଛଡ଼ା କୌଣସି ନା କୌଣସି ସୃଜନ କର୍ମରେ ରହିଥାନ୍ତି । ଏମିତି ଦେଖିଲେ ଓଡ଼ିଶା ହେଉଛି ପ୍ରତିଭାଙ୍କ ଗନ୍ତାଘର । କେବଳ ଭାରତ ନୁହେଁ ସମଗ୍ର ପୃଥିବୀର ଅନନ୍ୟ ସଫ୍ଟ ପାୱାର ହେବାର ସାମର୍ଥ୍ୟ ରହିଛି ଓଡ଼ିଶାର । କେବଳ ଦରକାର ପ୍ରସାର । ପ୍ରତିଭାର ଆବିଷ୍କାର, ଉପଯୁକ୍ତ ଲାଳନପାଳନ ଓ ଅନୁକୂଳ ପରିବେଶ ନିର୍ମାଣ ।

ମୁଁ ୨୦୧୮ ମସିହା ମଇ ଶେଷରେ ଓଡ଼ିଶାରେ ପହଂଚିଥିଲି । ତା'ପରେ ଗୋଟିଏ ପରେ ଗୋଟିଏ ଉତ୍ସବ

ଲାଗିଚାଲିଲା । ପ୍ରାୟ ଆଠ ମାସ ଧରି ଯେମିତି ଓଡ଼ିଶା କଂପୁ ଥିଲା । ଏସବୁ ଥିଲା ସାର୍ବଜନୀନ ଉତ୍ସବ । ଶୁଣିଲି, ବ୍ୟକ୍ତିଗତ ସ୍ତରରେ, ଗୋଷ୍ଠୀ ତଥା ପାରିବାରିକ କ୍ଷେତ୍ରରେ ଆହୁରି କେତେ ଓଷା, ପର୍ବ ଉତ୍ସବ ପାଳିତ ହୁଏ । ଜୀବନ ଏଠି ଉତ୍ସବମୟ, ପର୍ବମୟ । କୁହାଯାଏ, ଓଡ଼ିଶାରେ ବାରମାସରେ ତେର ପର୍ବ । କିନ୍ତୁ ବାସ୍ତବରେ ବହୁତ ଅଧିକ । ପାରଂପରିକ, ସାଂସ୍କୃତିକ, ଧର୍ମୀୟ ପର୍ବ ସହିତ ନୂଆ ନୂଆ ମେଳା ମହୋତ୍ସବ । ସାଂସ୍କୃତିକ କାର୍ଯ୍ୟକ୍ରମ । ଜିଲ୍ଲା ଉତ୍ସବ, ବ୍ଲକ୍ ସ୍ତରୀୟ ଉତ୍ସବ, ପଂଚାୟତ ସ୍ତରୀୟ ଉତ୍ସବ । ଅନ୍ୟ ରାଜ୍ୟର ଉତ୍ସବକୁ ଆପଣେଇବାରେ ମଧ୍ୟ ନାହିଁ ନଥିବା ଆଗ୍ରହ । ଏହା ସୂଚାଏ ଓଡ଼ିଆମାନଙ୍କର ବିଶାଳ ହୃଦୟବତା ଓ ମହାନୁଭବତା । କଟକର ଦୁର୍ଗା ପୂଜା, ଢେଂକାନାଳର ଗଜଲକ୍ଷ୍ମୀ ପୂଜା, ଜଟଣିର ଗଣେଶ ପୂଜା .... ମୁଁ ଯାଇ ଦେଖିଛି । ଭକ୍ତି, ଭାବ, ଆବେଗ ଓ ଉଚ୍ଛ୍ୱାସର ଉଚ୍ଚକିତ ସ୍ଥିତି । ସମନ୍ୱୟ ଓ ସମ୍ମିଳିତ ଭାବ । ଏସବୁ କେଉଁଠି ମିଳିବ? ଏ ତ ମୋ ପାଇଁ ଚେତନାର ଭିନ୍ନ ଭିନ୍ନ ପ୍ରକାଶ । ସ୍ୱର୍ଗୀୟ ରାଗ ଓ ସୁଷମା ବିମଣ୍ଡିତ ମୁହୂର୍ତ୍ତ । ଏଠି ଶୋକ ଦୁଃଖ କେଉଁଠି ଉଧେଇ ପାରିବ? ଯଦି ଥିବ ତେବେ ରହିଥିବ ବାହାରେ ବାହାରେ, ଭିତରେ ତା ପାଇଁ ସ୍ଥାନର ଅଭାବ ।

ସବୁ ଯାତ୍ରା ଭିତରେ ପୁରୀର ରଥଯାତ୍ରାର ଅନୁଭବ ଓ ଅନୁଭୂତି ମୋ ପାଇଁ ନିଆରା । ଏହା ନିଃସଂଦେହ ନୈସର୍ଗିକ । ରଥଯାତ୍ରା ଦୁଇବର୍ଷ ଦେଖିବାର ସୌଭାଗ୍ୟ ହୋଇଛି । ଖାଲି ଆଖିକୁ ଦିଶୁଥିବା ଏହି ଯାତ୍ରା ବାସ୍ତବରେ ବେଦାଂତ ଦର୍ଶନର ଲୀଳାୟିତ ପ୍ରକାଶ । ଆତ୍ମା ଓ ପରମାତ୍ମାର ମିଳନ, ଅଦ୍ୱୈତବାଦର ଆଖ୍ୟାନ । ସବୁ ମଣିଷ ସମାନ କେବଳ ନୁହଁନ୍ତି, ଏକ ଓ ଅଭିନ୍ନ । ଏକୋଇ ଉତ୍ସରୁ ଉତ୍ପନ୍ନ । ମନୁଷ୍ୟକୃତ ବଂଧନ, ପାଚିରୀ, ସୀମା, ସଂଜ୍ଞା ଭୁଷୁଡ଼ିଯାଏ । ବିଲୀନ ହେଇଯାଏ ବ୍ୟକ୍ତିର ବାହ୍ୟିକ ପରିଚୟ । ମହାପ୍ରଭୁ ଶ୍ରୀଜଗନ୍ନାଥ ଯେତେବେଳେ ବଡ଼ଦାଣ୍ଡକୁ ଆସନ୍ତି ଆଲୋକ ସମସ୍ତ ଅଂଧାରକୁ ଗଭସ୍ଥ କଲାଭଳି, ସେ ପ୍ରତିଟି ମଣିଷକୁ ନିଜ ଭିତରକୁ ନେଇଯାଆନ୍ତି । ଭକ୍ତ ଭଗବାନ ହେବାର ଦିବ୍ୟ ଅନୁଭବ ପାଏ । ଛୋଟ ବଡ଼ ଲହରୀର ଯେଉଁ ପ୍ରତିଦ୍ୱଂଦ୍ୱିତା ଚାଲିଥାଏ, ତାହା ସମୁଦ୍ରରେ ମିଶିଯାଏ । ଚୈତନ୍ୟ ଉଦୟ ହୁଏ, ସମୁଦ୍ର ବିନା ଲହରୀର ଜନ୍ମ କାହିଁ? ସ୍ଥିତି ବି କାହିଁ? ରଥଯାତ୍ରା ତ ଏବେ ବିଶ୍ୱର କୋଣ ଅନୁକୋଣରେ ଆୟୋଜିତ ହେଉଛି । ଦିନ ଆସିବ, ଏଇ ରଥ ଦଉଡ଼ି ପୃଥିବୀର ସବୁଲୋକଙ୍କୁ ଏକାଠି କରିଦେବ । ଅଂତଃକରଣର ପ୍ରେମ ପ୍ରବାହ ପୃଥିବୀକୁ ପୁଷ୍କଳ କରିବ । ମୁଁ ପୁରୀର ରଥଯାତ୍ରା ଭିତରେ ଦେଖିପାରିଛି ମଣିଷ ଜାତିର ଉଦ୍ଧରଣର ମାର୍ଗ ଓ ଉପାୟ । କେବେ ପୃଥିବୀ ପୁରୀକୁ ଆପଣେଇବ?

ଓଡ଼ିଶାରେ ଭରି ରହିଛି ପୁରୁଣା ମନ୍ଦିର ବିଭିନ୍ନ ପଂଥାର, ମାର୍ଗର । ନୂଆ ମଂଦିର ବି ନିର୍ମାଣ ହେଉଛି । ମନ୍ଦିର ତିଆରି କରିବାର ତାତ୍ତ୍ୱିକ କଳା ରହିଛି ଓଡ଼ିଆମାନଙ୍କ ରକ୍ତରେ । ଓଡ଼ିଶାର ବିଭିନ୍ନ ଅଂଚଳରେ ରହିଛି ଶକ୍ତି ପୀଠ । ଉତ୍କଳ ଜନନୀ ବିଭିନ୍ନ ରୂପରେ ଆବିର୍ଭୂତା ହୋଇଛନ୍ତି ବିଭିନ୍ନ ପୀଠରେ । ଶ୍ରୀକ୍ଷେତ୍ରଠୁ ଶାବର ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ଓଡ଼ିଶାରେ ଖାଲି ମନ୍ଦିର ଆଉ ମନ୍ଦିର । ମତେ ସୂଚନା ଦିଆଗଲା ଯେ ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଅଛନ୍ତି ଜଣେ ଜଣେ ଗ୍ରାମ ଦେବତୀ ଏବଂ ତାଙ୍କର ପ୍ରଥମ ପୂଜା ପରେ ଯାହା କିଛି ଶୁଭକାର୍ଯ୍ୟ କରାଯାଏ । ଏହା ଅବିଶ୍ୱସନୀୟ ଭାବରେ ସତ୍ୟ ବୋଲି ଜାଣିଲା ପରେ ମୁଁ ସତରେ ଓଡ଼ିଶାର ଆଧ୍ୟାତ୍ମିକ ଆଂଗିକ ଗଠନକୁ କୋଟି ପ୍ରଣାମ କରୁଛି ।

ପ୍ରକୃତି ହେଉଛି ଭଗବାନଙ୍କର ଦୃଶ୍ୟମାନ ପୋଷାକ । ଓଡ଼ିଶାକୁ ପ୍ରକୃତିର ଆଶୀର୍ବାଦର ତୁଳନା ନାହିଁ । ମାଟି ଉପରେ ଯେତିକି, ମାଟି ତଳେ କାହିଁରେ କେତେ । ପ୍ରକୃତିର ସବୁ ବିଭବ ଏଠାରେ ବିଦ୍ୟମାନ । ଚାନ୍ଦିପୁରରେ ସମୁଦ୍ର ପ୍ରାୟ ୫ କି.ମି ଚାଲିଯାଉଛି ପୁଣି ଫେରୁଛି । ପୁରୀ ବେଳାଭୂମିରେ ସମୁଦ୍ର ତ ଅନବରତ ରିୟାଜ କରୁଛି । ନଈ, ଜଂଗଲ, ପର୍ବତ, ହ୍ରଦ, ପ୍ରପାତ, କ'ଣ ନାହିଁ ଓଡ଼ିଶାରେ? ମୁଁ ପର୍ଯ୍ୟଟନ ସଂପର୍କିତ ଏକ ସେମିନାରରେ ଯୋଗ ଦେବା ପାଇଁ ପ୍ରସ୍ତୁତି କଲାବେଳେ ଦେଖିଲି ଯେ ଏବେ ପର୍ଯ୍ୟଟନକୁ ବହୁ ଭାଗରେ ବିଭକ୍ତିକରଣ କରାଯାଇଛି । ଯେମିତି ଐତିହ୍ୟ ପର୍ଯ୍ୟଟନ, ପ୍ରକୃତି ପର୍ଯ୍ୟଟନ, କ୍ରୀଡ଼ା ପର୍ଯ୍ୟଟନ, ସ୍ୱାସ୍ଥ୍ୟ ପର୍ଯ୍ୟଟନ ଇତ୍ୟାଦି । ମୁଁ ଦେଖିଲି ଯେ ପ୍ରତ୍ୟେକ ବିଭାଗ ଅନୁସାରେ ଓଡ଼ିଶାରେ କିଛି ନା କିଛି ଅଛି । ଏହା ଈଶ୍ୱରଙ୍କର ଆଶୀର୍ବାଦ ନୁହେଁ କି? ତେବେ ଏହି ସାମର୍ଥ୍ୟର ସଫଳ ଉପଯୋଗ ଦରକାର ଏବଂ ସୁଖର କଥା ଯେ ଓଡ଼ିଶା ସେହି ରାସ୍ତାରେ ଅଛି ।

ମୁଁ ଓଡ଼ିଶାରେ ରହଣି କାଳରେ ଦୁଇଟି ବାତ୍ୟାକୁ ସାମ୍ନା କରିଛି । ବାତ୍ୟା ପୂର୍ବରୁ ସ୍ୱାଭାବିକ ଭାବରେ ଭୟଭୀତ ହୋଇଛି । କିନ୍ତୁ ଏହି ଭୟର ଲେଶମାତ୍ର ଚିହ୍ନ ଲୋକଙ୍କ ପାଖରେ ଦେଖିନାହିଁ । ସେମାନେ ଯେମିତି ବାତ୍ୟାକୁ ସାମ୍ନା କରିବାକୁ ପ୍ରସ୍ତୁତ । ଏଭଳି ଅଂତର୍ନିହିତ ଶକ୍ତି ଓ ସାମର୍ଥ୍ୟ, ସାହସିକତା ଓ ଦୃଢ଼ପଣ କ୍ୱଚିତ ଦେଖିବାକୁ ମିଳେ । ବାହାରକୁ ନରମ ଦିଶୁଥିବା ମଣିଷ ଭିତରର ଦୃଢ଼ପଣ ମତେ ପ୍ରଭାବିତ କରିଛି । ବାତ୍ୟା ଆସିଛି, ବହୁତ ନଷ୍ଟଭ୍ରଷ୍ଟ କରିଛି । ଦିନ କେଇଟାରେ ଓଡ଼ିଶା ପୁଣି ସଜାଡ଼ି ହୋଇ ଉଠଛି । ମୁଁ ଆଶ୍ଚର୍ଯ୍ୟ ଚକିତ ହେଇଛି ।

ମୁଁ ଲକ୍ଷ୍ୟ କରିଛି ଓଡ଼ିଶାର ଲୋକମାନେ ସ୍ୱଭାବତଃ ଶାନ୍ତ ଓ ମନ୍ଥର । ବ୍ୟସ୍ତ ବିବ୍ରତ ହୋଇ ଧାଁଧପଡ଼ କରନ୍ତି ନାହିଁ । ସମୟକୁ ସୁଖ ଓ ଶାନ୍ତିରେ ପରିଣତ କରିବାର ମଂତ୍ର ତାଙ୍କୁ ଜଣା । ଏହି ସ୍ୱଭାବକୁ କେହି କେହି ନକାରାତ୍ମକ ଦୃଷ୍ଟିରେ ଦେଖୁଥାଇପାରନ୍ତି । ଆଧୁନିକ ସମୟ କାଳେ ଚାହୁଁଛି କିଲର୍ ଇନ୍‌ଷ୍ଟିଂକ୍ଟ । କିନ୍ତୁ ମୁଁ ଏ ତତ୍ତ୍ୱରେ ବିଶ୍ୱାସ କରେ ନାହିଁ । ବିକ୍ଷୁବ୍ଧ ସମୁଦ୍ରରେ ହିଂସା ଥାଏ, ସ୍ଥିର ସମୁଦ୍ରରେ ଶାନ୍ତି ବିରାଜମାନ କରୁଥାଏ । ଶାନ୍ତି ପ୍ରିୟ ଓଡ଼ିଶା ବିଶ୍ୱକୁ ଶାନ୍ତିର ବାର୍ତ୍ତା ଦେଇଛି, ଚଣ୍ଡାଶୋକକୁ ଧର୍ମାଶୋକରେ ପରିଣତ କରିଛି । ସେ ମଧ୍ୟ ଖାରବେଳ ହେଇଛି । ସେ ମଧ୍ୟ ବରୁଣେଇ ପାହାଡ଼ ତଳେ ଦୁର୍ଦ୍ଧର୍ଷ ବ୍ରିଟିଶର ଅଂଟା ଭାଂଗିଛି । ସେ ନଅଂକ ଦୁର୍ଭିକ୍ଷକୁ ଡ଼େଇଁ ଓଡ଼ିଶାର ନବ କଳେବର କରିଛି । ଉତ୍‌ଥାନ ପତନର ଓଡ଼ିଶାର ଇତିହାସରେ ଓଡ଼ିଶାର ଶକ୍ତି ହେଉଛନ୍ତି ଶ୍ରୀଜଗନ୍ନାଥ । ଦରକାରବେଳେ ସେ ଖଂଡ଼ାଧରି ଓଡ଼ିଶା ସପକ୍ଷରେ ଯୁଦ୍ଧ କ୍ଷେତ୍ରରେ ଓହ୍ଲାଇପାରନ୍ତି । ଓଡ଼ିଆ ଲୋକମାନଙ୍କଠାରେ ମୁଁ ଲକ୍ଷ୍ୟ କରିଛି ଆତ୍ମିକ ବିକାଶର ସମସ୍ତ ଗୁଣ ଓ ଲକ୍ଷଣ ।

ଓଡ଼ିଶାର ଦର୍ଶନ ହେଉଛି ଯାହା ପସଂଦ ତାକୁ ପାଇବା ପାଇଁ ପ୍ରୟାସଠୁ ଶ୍ରେୟସ୍କର, ଯାହା ପାଇଛ ତାକୁ ପସଂଦ କରିବା ଅହଂ କୈନ୍ଦ୍ରିକତା ନୁହେଁ ପୃଥ୍ୱୀକୈନ୍ଦ୍ରିକତା, କ୍ଷମତା ପ୍ରେମ ନୁହେଁ ପ୍ରେମର କ୍ଷମତା । ଇଂଟରନେଟ୍ ସହ ଇନରନେଟ୍, ବାହ୍ୟ ଦୃଷ୍ଟି ସହ ଅଂତର୍ଦୃଷ୍ଟି ଏବଂ ଫିଜିକ୍ସ ସହ ମେଟାଫିଜିକ୍ସର ସହାବସ୍ଥାନ । ସତରେ ଯାହାସବୁ ଗଣାଯାଇପାରେ ହୁଏତ ଜୀବନରେ ତାର ଅର୍ଥ ନଥାଇପାରେ କିନ୍ତୁ ଯାହା ଜୀବନକୁ ଅର୍ଥପୂର୍ଣ୍ଣ କରେ ତାକୁ ଗଣିବା ସଂଭବ ହୁଏ ନାହିଁ ।

ହଁ, ଓଡ଼ିଶାର ଆତ୍ମିକ ବିକାଶ ହୋଇଛି ଏବେ ଲୋଡ଼ା ଆହୁରି ଆଂଗିକ ବିକାଶ । ଏହି ବିକାଶ ଯେ ହେଉନାହିଁ ତାହା ନୁହେଁ ଆହୁରି ଗତି ଯୁକ୍ତ ହେବା ଦରକାର । ଓଡ଼ିଶାର ସାମର୍ଥ୍ୟ ଅଛି ଏବଂ ଅଚିରେ ଓଡ଼ିଶା ଯେ ଜାଗତିକ ଓ ମହାଜାଗତିକ ଉଭୟ ମାନଦଣ୍ଡରେ ନିଜକୁ ପ୍ରମାଣିତ କରିବ ଏବଂ ଅନ୍ୟମାନଙ୍କ ପାଇଁ ଅନୁସରଣୀୟ ହେବ ଏ ବିଶ୍ୱାସ ମୋର ଅଛି । ଓଡ଼ିଶା ଯେଭଳି କରୋନା ମହାମାରୀ ବିରୋଧରେ ଲଢ଼ୁଛି ସେଥିରେ ମୋ ବିଶ୍ୱାସ ଦୃଢ଼ତର ହୋଇଛି ।

ଓଡ଼ିଶାରେ ମୁଁ ଦେଖିଛି ନିରବତାର ଶକ୍ତି ଓ ଶକ୍ତିର ନିରବତା । ଓଡ଼ିଶାରେ ମୁଁ ଦେଖିଛି ପଥର ଉପରେ କବିତା । ଓଡ଼ିଶା ଚିର ଆଲିଙ୍ଗନ ମୁଦ୍ରାରେ । କେତେ ଦୂରଦୂରାନ୍ତରୁ ପକ୍ଷୀ ଆସୁଛନ୍ତି ଏହାର ଆକର୍ଷଣରେ । ଇତିହାସସାରା ମହାତ୍ମାମାନଙ୍କ ଧାଡ଼ି ଲାଗିଛି ଓଡ଼ିଶାକୁ । ଶଂକାରାଚାର୍ଯ୍ୟ, ଚୈତନ୍ୟ, ନାନକ, କବୀର .. .. ଯେ ଆସିଛନ୍ତି ଏ ମାଟି ତାଙ୍କୁ ଖାଲି ହାତରେ ଫେରାଇଦେଇନି । ଗତି ମୁକ୍ତି ପ୍ରଦାୟିନୀ ଏ ମାଟି । ଡ଼ବ୍ଲୁ ଡ଼ବ୍ଲୁ ହଂଟର କହୁଛନ୍ତି, ଯେ ଏ ମାଟିରେ ପାଦ ଦେବ ତା'ର ସମସ୍ତ ପାପ ଉଭେଇ ଯିବ । ଯୋଗୀ ଋଷିଗଣ- ଉଟଜ-ପବିତ୍ରା । ଧନ୍ୟ ଓଡ଼ିଶା ।

ମୋର ଭାଗ୍ୟ ମୁଁ ଓଡ଼ିଶାର ପ୍ରଥମ ସେବକ । ଓଡ଼ିଶା ମାଟିର ସେବା କରି ନିଜକୁ ଧନ୍ୟ ମନେକରୁଛି । ଆସନ୍ତୁ, ମୋ ରାଜ୍ୟ, ଆପଣଙ୍କର ରାଜ୍ୟ, ଆମ ସମସ୍ତଙ୍କର ରାଜ୍ୟ ଓଡ଼ିଶାର ସେବାରେ ନିଜକୁ ସମର୍ପିତ କରିବା ।

ବନ୍ଦେ ଉତ୍କଳ ଜନନୀ ।

ରାଜ୍ୟପାଳ, ଓଡ଼ିଶା

# ଓଡ଼ିଆ ଜାତିର ଦୁଃସାହସିକ ଜନନେତା : ବିଜୁ ପଟ୍ଟନାୟକ

ମୀରା ବେଉରା

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେତେବେଳେ ଓଡ଼ିଆ ଭାଷା ସାହିତ୍ୟ ଓ ଓଡ଼ିଆଙ୍କ ଅସ୍ତିତ୍ୱ ଲୋପ ହେବାକୁ ଯାଉଥିଲା ଠିକ୍ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଶାର ଯେଉଁ ବରପୁତ୍ରମାନେ ହୃତ ଗୌରବ ଫେରାଇ ଆଣିବା ପାଇଁ ପ୍ରତିଶ୍ରୁତିବଦ୍ଧ ଥିଲେ ଏବଂ ଓଡ଼ିଶାର ସାମାଜିକ, ଅର୍ଥନୈତିକ ସ୍ତରରେ ଉନ୍ନତି ଆଣି ଓଡ଼ିଶାକୁ ଜାତୀୟସ୍ତରରେ ଏକ ସ୍ୱତନ୍ତ୍ର ପରିଚୟ ଦେବା ପରେ ଆପ୍ରାଣ ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରେ କଳିଙ୍ଗଗୌରବ ବିଜୁବାବୁ ଥିଲେ ଏକମାତ୍ର ଦୂରଦୃଷ୍ଟି ସମ୍ପନ୍ନ, ଜାତୀୟତାବାଦୀ, ଦୁଃସାହସିକ ପ୍ରଦର୍ଶନ ପୂର୍ବକ ବ୍ୟକ୍ତିତ୍ୱ । ଏକାଧାରରେ ସେ ଥିଲେ ଜଣେ ପ୍ରଚଣ୍ଡ ସ୍ୱାଭିମାନୀ, ସ୍ୱାଧୀନତା ସଂଗ୍ରାମୀ, ଜାତୀୟତା ଭାବର ମୂର୍ତ୍ତିମନ୍ତ ପ୍ରତୀକ । ସେ ନିଜର ଦୁଃସାହସିକତା ପ୍ରଦର୍ଶନ କରି ଓଡ଼ିଆମାନଙ୍କ ବୀରତ୍ୱ, ନିର୍ଭୀକତା ଓ ସାହସିକତାର ପରିଚୟ ଦେଇଛନ୍ତି । ବିଶ୍ୱକର୍ମା ସାଜି ଓଡ଼ିଶା ଭଳି ଏକ ପଛୁଆ, ଦରିଦ୍ର, ଅନୁନ୍ନତ ରାଜ୍ୟକୁ ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିପାରୁଥିବା ମହାନାୟକମାନଙ୍କ ମଧ୍ୟରେ ଭୂମିପୁତ୍ର ବିଜୁବାବୁ ଥିଲେ ଅନ୍ୟତମ ସାରଥି । ତାଙ୍କର କୃତିତ୍ୱ ଏବଂ ବୀରତ୍ୱର କାହାଣୀ କେବଳ ଓଡ଼ିଶା ମାଟିରେ ନୁହେଁ ସମଗ୍ର ଭାରତବର୍ଷରେ ପ୍ରତିଧ୍ୱନିତ ହେଉଛି । ତାଙ୍କପରି ତ୍ୟାଗୀ, ସାହସୀ, ଦୟାଳୁ, କର୍ମନିଷ୍ଠ, ବୀରପୁରୁଷ ଆଜିର ସମାଜରେ ବିରଳ । ଆଜି କେବଳ ଓଡ଼ିଶା ଇତିହାସ ନୁହେଁ, ଭାରତ ଇତିହାସ ଓଡ଼ିଆମାନଙ୍କ ଗୌରବ ଗାଥା ବଖାଣୁଥିବାବେଳେ ଏବେ ତାଙ୍କର ସୁପୁତ୍ର ବିଶିଷ୍ଟ ଇଂରାଜୀ ଲେଖକ ତଥା ଓଡ଼ିଶାର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବିଜୁବାବୁଙ୍କ ନାମରେ ଅନେକଗୁଡ଼ିଏ ଯୋଜନା ଓଡ଼ିଶାବାସୀଙ୍କୁ ଯୋଗାଇଦେଇ ଓଡ଼ିଶାର ଘରେ ଘରେ ବିଜୁବାବୁଙ୍କ ନାମକୁ ଆହୁରି ଉଜ୍ଜୀବିତ କରିବାରେ ବେଶ୍ ସଫଳ ହୋଇଛନ୍ତି । ବିଜୁ ଗ୍ରାମୀଣ ପକ୍କାଘର ଯୋଜନା ହେଉ, ବିଜୁ କୃଷକ ଯୋଜନା, ବିଜୁ ଛାତ୍ରବୃତ୍ତି ଯୋଜନା, ବିଜୁ ଯୁବବାହିନୀ, ଇନ୍ଦିରା ଆବାସ ଯୋଜନା ହେଉ, ମଧୁବାବୁ ପେନସନ୍ ଯୋଜନା ହେଉ, ପିଠା ଯୋଜନା ହେଉ ବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଯୋଜନା ହେଉ, ମିଶନ ଶକ୍ତି ଯୋଜନା ହେଉ ଏହିପରି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯୋଜନା କରି ଓଡ଼ିଶା ଇତିହାସରେ ଆଜି ବିସ୍ମୟ ସୃଷ୍ଟି କରି ବିକାଶର ମଙ୍ଗ ଧରିଛନ୍ତି ବିଜୁବାବୁଙ୍କ ସୁପୁତ୍ର ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ । ଆଜିବି ବିଜୁବାବୁଙ୍କ ପରି ଯୋଦ୍ଧା, ବୀରପୁରୁଷ, ଅଦ୍ୱିତୀୟ ନେତା, ସ୍ୱଷ୍ଟ ଓ ନିର୍ଭୀକ ବ୍ୟକ୍ତିତ୍ୱ, ଚତୁର ଶିଳ୍ପ ଉଦ୍ୟୋଗୀ, କର୍ମୀ ଓ ଜାତିପ୍ରେମୀ, ଦେଶପ୍ରେମୀ ମା' ମାଟିକୁ ଭଲ ପାଉଥିବା ମଣିଷ ଏହି ଓଡ଼ିଶା ମାଟିରେ ଜନ୍ମନେବା ପାଇଁ ପ୍ରତିଟି ଓଡ଼ିଆ ଇଚ୍ଛା ପ୍ରକାଶ କରି ସ୍ୱପ୍ନ ଦେଖନ୍ତି ।



ଆଜି ଯଦି ଏ ଉତ୍କଳ ଭାଷାର ପ୍ରାଣ ପ୍ରାଚୁର୍ଯ୍ୟରେ, ସଂସ୍କୃତିରେ, କଳାରେ, ଶିଳ୍ପରେ, ଖଣି ଖାଦାନରେ, କୃଷିରେ, ପଶୁ ପାଳନରେ ଅର୍ଥନୈତିକ ବିକାଶରେ ସମୃଦ୍ଧ ହୋଇଛି ଏବଂ ଓଡ଼ିଶା ଏକ ସ୍ୱାଭିମାନୀ ରାଷ୍ଟ୍ରଭାବେ ମୁଣ୍ଡ ଟେକିଛି, ତାହା କେବଳ ବିଜୁବାବୁଙ୍କ ପାଇଁ ସମ୍ଭବ ହୋଇଛି ।

କଟକ ତୁଳସୀପୁରସ୍ଥିତ ଆନନ୍ଦ ଭବନଠାରେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ ବିଜୁବାବୁଙ୍କ ଜନ୍ମ । ତାଙ୍କର ପିତା ଥିଲେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଥିଲେ ଆଶାଲତା ଦେବୀ । ତୁଳସୀ ଦୁଇପତ୍ରରୁ ବାସିଲା ଭଳି ପିଲାଟି ଦିନରୁ ବାରି ହୋଇପଡୁଥିଲା । ଏହି ବାଳକ ଦିନେ ବିରାଟ ବ୍ୟକ୍ତିତ୍ୱ ସାଜି ମହାନାୟକ ହେବ । ପିଲାଦିନେ ମା'ଙ୍କଠାରୁ ସଂଗ୍ରାମୀ ଏବଂ ବୀରତ୍ୱର କାହାଣୀ ତାଙ୍କ ମନରେ ଗଭୀର ରେଖାପାତ ମଧ୍ୟ କରିଥିଲା । ଦେଶ ପାଇଁ, ମାଟି ପାଇଁ, ଉତ୍କଳବାସୀଙ୍କ ପାଇଁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼ି ବାରମ୍ବାର ଜେଲ୍ ଯାଇ ଦେଶମାତୃକା ପାଇଁ ଥିବା ଭଲ ପାଇବାକୁ ହିଁ ପ୍ରତିଭାତ କରୁଥିଲା । ପ୍ରଥମେ ସେ ମିଶନ ସ୍କୁଲ ପରେ ରେଭେନ୍ସା କଲିଜିଏଟ୍ ସ୍କୁଲ ଏବଂ ପରେ ରେଭେନ୍ସା ମହାବିଦ୍ୟାଳୟ ଏବଂ ତା'ପରେ ପାଟନା ବିଶ୍ୱବିଦ୍ୟାଳୟରେ ନିଜର ଶିକ୍ଷାପ୍ରାପ୍ତି ସମାପ୍ତି କରି ବେସାମରିକ ବିମାନସେବାରେ ଯୋଗଦେଇଥିଲେ । ବିଜୁବାବୁ ପ୍ରଥମେ କଟକରୁ ପେଶାୱାରକୁ କିଛି ବନ୍ଧୁଙ୍କ ସହ ସାଇକେଲରେ ଯାତ୍ରା କରିଥିଲେ । ବାପାଙ୍କ ପ୍ରେରଣାରେ ବିଜୁବାବୁ ଏହାପରେ ବିମାନ ଚଳାଇବା ଟ୍ରେନିଂ ମଧ୍ୟ ନେଇଥିଲେ ଏବଂ ଇଣ୍ଡିଆନ ଏୟାରୱେଜ୍‌ର ଜଣେ ପାଇଲଟ୍ ଭାବେ ଯୋଗଦେଇଥିଲେ । ପ୍ରକୃତରେ ବିଜୁ ବାବୁ ଏଭଳି ବ୍ୟକ୍ତିତ୍ୱ ଥିଲେ ଯିଏ ଓଡ଼ିଶାର ଚିତ୍ରକୁ ସମଗ୍ର ବିଶ୍ୱରେ ପହଞ୍ଚାଇ ପାରିଥିଲେ । ଜାତିର ପିତା ମହାତ୍ମାଗାନ୍ଧୀ ଯେତେବେଳେ ସ୍ୱରାଜ ଆଶ୍ରମ ଆସିଥିଲେ, ସେତେବେଳେ ପୋଲିସ୍‌ର ନାଲିଆଖି ଏବଂ ଲାଠିମାଡ଼ ବିଜୁବାବୁଙ୍କୁ ଅଟକାଇ ପାରିନଥିଲା । ସେ ଲାଠିମାଡ଼ ଖାଇ ମଧ୍ୟ ଦୌଡ଼ିଯାଇ ଗାନ୍ଧୀଙ୍କ ସହିତ କରମର୍ଦ୍ଦନ କରିଥିଲେ । ଏହି ଜାତୀୟତା ମନୋଭାବ ହିଁ ଭବିଷ୍ୟତରେ ତାଙ୍କୁ ଓଡ଼ିଶାର ରାଜନୀତିରେ ଯୋଗଦେବା ପାଇଁ ପ୍ରେରଣା ଯୋଗାଇ ଥିଲା । ବିଜୁବାବୁଙ୍କ ବିବାହ ହୋଇଥିଲା କାଶ୍ମିରୀର ଏକ ସମ୍ଭ୍ରାନ୍ତ ପରିବାରର ଝିଅ ଜ୍ଞାନଦେବୀଙ୍କ ସହିତ । ଜ୍ଞାନଦେବୀ ପ୍ରକୃତରେ ଏଭଳି ଜଣେ ମହୀୟସୀ ମହିଳା ଥିଲେ, ଯାହାଙ୍କର ଧନର ଗର୍ବ ନଥିଲା, ପ୍ରାଚୁର୍ଯ୍ୟର ଅହଂକାର ନଥିଲା, ପଦପଦବୀର ଅମର୍ଯ୍ୟାଦା ନଥିଲା । ସତରେ ତାଙ୍କ ପରି ସ୍ନେହୀ, ଶ୍ରଦ୍ଧାବାନ କରୁଣାର ଏକ ମୂର୍ତ୍ତିମନ୍ତ ପ୍ରତୀକ, ବାତ୍ସଲ୍ୟ ମମତାର ସମ୍ମିଶ୍ରଣ ଆଦର୍ଶ ମହିଳା ଆଜିର ସମାଜରେ ବିରଳ । ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କୁ ଗୁପ୍ତ ସହଯୋଗ ପ୍ରଦାନ କରୁଥିବା ଅଭିଯୋଗରେ ବ୍ରିଟିଶ୍ ଗୁଇନ୍ଦା ବିଭାଗ ଦ୍ୱାରା ବିଜୁବାବୁ ଗିରଫ ହେଲା ପରେ ମଧ୍ୟ ସେ ଆଦୌ ବ୍ରିଟିଶ ସରକାରଙ୍କୁ ଖାତିର କରୁନଥିଲେ ।

ଯେତେବେଳେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଭଳି ଦୂରଦ୍ରଷ୍ଟା ରାଷ୍ଟ୍ରନୀତିଜ୍ଞ, ବିଦ୍ୱାନ ଭାରତର ପ୍ରଧାନମନ୍ତ୍ରୀ ହୋଇଥିଲେ ସେତେବେଳେ ସେ ବିଜୁ ପଟ୍ଟନାୟକଙ୍କ ଦୁଃସାହସ, ଦୂରଦୃଷ୍ଟି, ସ୍ୱାଭିମାନ ଦେଶପ୍ରୀତିର ଥିଲେ ଜଣେ ଉଚ୍ଚ ପ୍ରଶଂସକ । ୧୯୬୨ ମସିହା ଜାନୁଆରୀ ୩ ତାରିଖରେ ବିଜୁବାବୁ ପାରାଦ୍ୱୀପ ବନ୍ଦର ଶୁଭ ଦେବା ପାଇଁ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ସେ ଆମନ୍ତ୍ରଣ କଲେ । ଅନେକ ଘାତ ପ୍ରତିଘାତ ସତ୍ତ୍ୱେ ସେ ପାରାଦ୍ୱୀପରେ ବନ୍ଦର, ରାଉରକେଲାରେ ଇଞ୍ଜିନିୟରିଂ କଲେଜ, ସମ୍ବଲପୁର ଓ ବ୍ରହ୍ମପୁରରେ ଦୁଇଟି ମେଡିକାଲ କଲେଜ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ସୈନିକ ସ୍କୁଲ, ଚାରବାଟିଆ ମିଲିଟାରୀ ବିମାନ ଅବତରଣ କେନ୍ଦ୍ର ନିର୍ମାଣ କରିବାରେ ଖୁବ୍ କମ୍ ସମୟ ମଧ୍ୟରେ ସକ୍ଷମ ହୋଇଥିଲେ । ୧୯୪୭ରେ ଇଣ୍ଡୋନେସିଆର ରାଷ୍ଟ୍ରପତି କର୍ଣ୍ଣେଲ ହଟ୍ଟା ଓ ପ୍ରଧାନମନ୍ତ୍ରୀ ମହମ୍ମଦ ସାହାରିୟାରଙ୍କୁ ତାଙ୍କ ଡାକୋଟା ବିମାନରେ ଡଚ୍‌ମାନଙ୍କ କବଳରୁ ଦିଲ୍ଲୀ ନେଇ ଆସିଥିଲେ । ଏହି ଦୁଃସାହସିକ କାର୍ଯ୍ୟ ପାଇଁ ଇଣ୍ଡୋନେସିଆ ସରକାରଙ୍କ ଦ୍ୱାରା ସେ ଭୂମିପୁତ୍ର ଉପାଧିରେ ସମ୍ମାନିତ ହୋଇଥିଲେ । ମହାତ୍ମା ଗାନ୍ଧୀଙ୍କ

କଟକସ୍ଥିତ ସ୍ୱରାଜ ଆଗମନ ସମୟରେ ତତ୍କାଳୀନ ଗୋରା ସାହେବ ଏସ୍.ପି. ହାରଗ୍ରୀବଙ୍କ ଲାଠି ପ୍ରହାରରେ ବିଜୁବାବୁଙ୍କ ମୁଣ୍ଡଫାଟି ଝରୁଥିବା ରକ୍ତକୁ ସେଦିନ ମହାତ୍ମାଗାନ୍ଧୀଙ୍କ ନିଜ ହାତରେ ପୋଛି ଦେଇଥିଲେ । ଯାହା କେବଳ ସ୍ପର୍ଶ ନ ଥିଲା ମନ୍ତ୍ର ଥିଲା ବିଜୁ ବାବୁଙ୍କ ପାଇଁ । ପିଲାଦିନୁ ଗାନ୍ଧୀ ଏବଂ ଜୟ ପ୍ରକାଶ ନାରାୟଣଙ୍କ ଆଦର୍ଶରେ ସେ ଅନୁପ୍ରାଣିତ ହୋଇଥିଲେ । ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ନିଜକୁ ଉତ୍ତର ଦାୟାଦ ମନେକରି ଦାୟିତ୍ୱବଦ୍ଧତାର ସହିତ ଗ୍ରହଣ କରିଥିଲେ । ସେ କଦାପି ଭୁଲିଯାଇ ନଥିଲେ ମା' ମାଟି ମମତାର ଅନ୍ତର୍ନିହିତ କଥା ବ୍ୟଥାକୁ, ବ୍ରିଟିଶ ନିର୍ଯାତନାର ସ୍ପଷ୍ଟୀକରଣକୁ । ସେ ବିଶ୍ୱାସ କରିଥିଲେ ଯେ ଜନଗଣମାନଙ୍କର ଅର୍ଥନୈତିକ, ଶିକ୍ଷାନୈତିକ ଓ ସ୍ୱାସ୍ଥ୍ୟଗତ ପରିବର୍ତ୍ତନ ଆସିଲେ ଦେଶର ବିକାଶ ଅବଶ୍ୟମ୍ଭାବୀ ।

ଯେତେବେଳେ ପ୍ରଳୟଙ୍କରୀ ବନ୍ୟା ଓଡ଼ିଶାର ପୁରପଲ୍ଲୀରେ ବିଶେଷ କରି ବରୀ ଅଞ୍ଚଳରେ ନାହିଁ ନ ଥିବା ଦୁର୍ଦ୍ଦଶା ଦେଖାଯାଇଥିଲା । ସେହି ବନ୍ୟା ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ଉତ୍କଳମଣି ନିଜେ ତାଙ୍କର କିଛି ଛାତ୍ରମାନଙ୍କ ସହ ବନ୍ୟାଞ୍ଚଳକୁ ବାହାରିଲେ । ହଠାତ୍ ଦଲକାଏ ପବନ ଆସି ଦାସେଙ୍କ ହାତରୁ ଛତାଟିକୁ ଉଡ଼ାଇ ନେଲା । ଠିକ୍ ଏହି ସମୟରେ ବିଜୁବାବୁ ପାଣିକୁ କୁଦି ପଡ଼ି ପ୍ରବଳ ସ୍ରୋତରେ ଭାସିଯାଉଥିବା ଛତାଟିକୁ ପାଣିରୁ ଆଣି ଗୋପବନ୍ଧୁଙ୍କ ହାତକୁ ବଢ଼ାଇ ଦେଲେ । ପଛରେ ସେହି ପିଲାଟିର ପରିଚୟ ପାଇଲେ ସେ ତାଙ୍କ ବନ୍ଧୁ ଲକ୍ଷ୍ମୀ ନାରାୟଣ ବାବୁଙ୍କ ପୁଅ ବିଜୟାନନ୍ଦ ପଟ୍ଟନାୟକ । ଯେତେବେଳେ ଗୋପବନ୍ଧୁ କହି ଉଠିଲେ ସାମାନ୍ୟ ଛତାଟିକୁ ଆଣିବାକୁ ଯାଇ ଆଜି ଯଦି ତୋର ଜୀବନ ଚାଲିଯାଇଥାନ୍ତା ତେବେ ମୁଁ ତୋ ବାପାଙ୍କୁ ମୁହଁ କିପରି ଦେଖାଇଥାନ୍ତି? ବିଜୁ ବାବୁ ସେଦିନ ଅତି ବିନମ୍ରତାର ସହ କହିଲେ, ମୁଁ ଯଦି ପାଣିରେ ଏଭଳି ମରିଥାନ୍ତି ମୋ ବାପା ନିଶ୍ଚିତ ଗର୍ବ କରିଥାନ୍ତେ । ଆଉ ଆପଣଙ୍କ ଛତା ଗୋଟିଏ ମାମୁଲି ଛତା ନୁହେଁ । ଏହା ଓଡ଼ିଆ ଜାତିର ଅମୂଲ୍ୟ ସମ୍ପଦ । ଏହି କଥାପଦକ ଶୁଣି ଗୋପବନ୍ଧୁ ସେଦିନ କାନ୍ଦି ପକାଇଲେ । ଆଉ କହିଥିଲେ, 'ତୁ ଏତେ ବକଟେ ପିଲା ତୋ' ମୁଣ୍ଡରେ ପୁଣି ଏ ଓଡ଼ିଆ ଜାତି ପାଇଁ ଏତେ ଭାବନା । ତୁ ନିଶ୍ଚିତ ଜଣେ ବଡ଼ ମଣିଷ ହେବୁ, ଆଉ ଦେଶବିଦେଶରେ ନାଁ ରଖିବୁ । ସେଦିନ ଗୋପବନ୍ଧୁଙ୍କ କଥା ସତ ହେଲା । ବିଜୁବାବୁ କେବଳ ଓଡ଼ିଶା ନୁହେଁ ଶେଷରେ ସମଗ୍ର ଦେଶ ବିଦେଶରେ ମଧ୍ୟ ଖୁବ୍ ପରିଚିତ ହେଲେ । ୧୯୯୭ ମସିହା ଏପ୍ରିଲ ମାସ ୧୭ ତାରିଖରେ ସେ ଇହଲୀଳା ସମ୍ବରଣ କଲେ । ମାତ୍ର ଏକ ସତ୍ୟ ନିଛକ କାହାଣୀଟିଏ ହୋଇ ରହିଲା । ତାଙ୍କର ମୃତ୍ୟୁ ଥିଲା ଏ ଓଡ଼ିଆ ଜାତି ପାଇଁ ଏକ ଅପୂରଣୀୟ ଜାତୀୟ କ୍ଷତି । ପ୍ରକୃତରେ ସେ ହିଁ ଥିଲେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଭାଷାରେ, ଝଡ଼ର ଇଗଲ୍ ଏବଂ ମାଟିର ମୂର୍ତ୍ତିକାର । ତାଙ୍କ ଭଳି ଦୁର୍ଦ୍ଧର୍ଷ ସଂଗ୍ରାମୀ ମହାନ୍ ବ୍ୟକ୍ତିତ୍ୱ ଏବେ ମଧ୍ୟ ଓଡ଼ିଶା ଇତିହାସରେ ବିରଳ । ସବୁଠାରୁ ଓଡ଼ିଶାର ସଫଳ ଯୋଜନା ହେଉଛି ଓଡ଼ିଶାର ପ୍ରଗତିର ମୁଖଶାଳା ପାରାଦ୍ୱୀପ ବନ୍ଦର । ଆଜି ବିଜୁବାବୁ ନାହାନ୍ତି ସତ ମାତ୍ର ତାଙ୍କ ଶିଳ୍ପ ସମୃଦ୍ଧର ଓଡ଼ିଶା ଆଜି ବିକାଶ ପଥରେ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । ତାଙ୍କରି ଆଦର୍ଶରେ ଯଦି ଆଜିର ଯୁବଗୋଷ୍ଠୀ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରିବେ, ତେବେ ତାହା ହିଁ ହେବ ବିଜୁବାବୁଙ୍କ ପ୍ରତି ଆମର ପ୍ରକୃତ ଶ୍ରଦ୍ଧାଞ୍ଜଳି ।

---

ରଘୁନାଥଜୀଉ ମହାବିଦ୍ୟାଳୟ, ଦେଉଳ ସାହି
ତୁଳସୀପୁର, କଟକ



# ସ୍ୱତନ୍ତ୍ର ଓଡ଼ିଶାର ଦ୍ୱିତୀୟ ଶତାବ୍ଦୀରେ ଓଡ଼ିଆ ଭାଷା

**ଅଜିତ ମହାନ୍ତି**

ଆଜିର ବିଶ୍ୱରେ ପ୍ରାୟ ୬୯୦୦ଟି ଭାଷା, ତହିଁରୁ ଅନ୍ୟୂନ ୩୦୦୦ଟି ଭାଷା ନିକଟ ଭବିଷ୍ୟତରେ ବିଲୁପ୍ତ ହୋଇଯିବାର ସମ୍ଭାବନା ଅଧିକ । ପ୍ରତ୍ୟେକ ଦୁଇ-ତିନି ସପ୍ତାହର ବ୍ୟବଧାନରେ ପୃଥିବୀର ବିଭିନ୍ନ କୋଣରେ ଗୋଟିଏ ଭାଷା ଲୁପ୍ତ ହୋଇଯାଉଛି, ସେ ଭାଷାର ଶେଷ ଭାଷାଭାଷୀର ମୃତ୍ୟୁରେ ଭାଷାର ଅନ୍ତ । ତା'ପରେ ହୁଏତ ସେ ଭାଷାର ନାଆଁଟିଏ ଥିବ ଇତିହାସ ପୃଷ୍ଠାରେ, କିନ୍ତୁ ସେ ଭାଷା ସହିତ ହଜିଯିବ ସେ ଭାଷାର ସାମୂହିକ ଚେତନାରେ ସାଇତା ହୋଇଥିବା ଜ୍ଞାନର ଭଣ୍ଡାର, ପରିବେଶକୁ ପୁଷ୍ଟ କରିବାର ନିଜସ୍ୱ ଜ୍ଞାନ, ପରିବେଶର ଗଛ ଲତା, ଚେରମୂଳି ଏବଂ ଜୀବଜଗତକୁ ଆଉ ଚିହ୍ନି ହେବ ନାହିଁ । ସେ ଭାଷାର ହଜାର ହଜାର ବର୍ଷର ସାଇତା ସଂସ୍କୃତି, ଲୋକକଥା, ବିଜ୍ଞତା ସବୁ ହଜିଯିବେ । ଭାଷାଟିଏ ହଜିଗଲେ ମାନବ ସମାଜ କେବଳ ଦରିଦ୍ର ହୁଏ ନାହିଁ, ବିପନ୍ନ ମଧ୍ୟ ହୁଏ, କାରଣ ଭାଷାଗତ ଓ ସାଂସ୍କୃତିକ ବିବିଧତା ସହିତ ହ୍ରାସ ହୁଏ ଜୈବ-ବିବିଧତା, ଯାହା ମାନବ ଜାତି ପାଇଁ ଅଶୁଭ । ଗତ ସତୁରୀ-ଅଶୀ ବର୍ଷରେ ଲୋପ ପାଇଛନ୍ତି ୫୦୦ରୁ ଅଧିକ ଭାଷା । ବର୍ତ୍ତମାନ ୧୮ଟି ଭାଷାର ଅଛନ୍ତି ଜଣେ ମାତ୍ର ଭାଷାଭାଷୀ, ୧୪୪ଟି ଭାଷାରେ ୧୦ରୁ କମ୍, ୪୩୭ଟି ଭାଷାରେ ଶହେରୁ କମ୍ ଏବଂ ୧୫୩୭ଟି ଭାଷାରେ ହଜାରେରୁ କମ୍ ଭାଷାଭାଷୀ । ଏ ଭାଷାମାନ ଆଉ ପରିପିଢ଼ିକୁ ସଂପ୍ରସାରିତ ହେଉନାହାନ୍ତି, ଅଳ୍ପ ଦିନରେ ଏ ଭାଷାସବୁ ମରିଯିବେ । ଭାଷା ମୃତ୍ୟୁ ସ୍ୱାଭାବିକ ନୁହେଁ । ଭାଷାର ସ୍ଥିତି ଜୈବିକ ନୁହେଁ- ସାମାଜିକ, ସାଂସ୍କୃତିକ । ସାମାଜିକ, ବ୍ୟବହାରିକ ଅବହେଳାରୁ ଭାଷା ମରିଯାଏ । ସମାଜର ଦୈନନ୍ଦିନ ଚଳଣି, ସାମାଜିକ-ସାଂସ୍କୃତିକ ପରିବେଶ, ଶିକ୍ଷା, ପ୍ରଶାସନ ଓ ଅନ୍ୟାନ୍ୟ ବ୍ୟବହାରିକ କ୍ଷେତ୍ରରେ ଗୋଟିଏ ଭାଷାର ବ୍ୟବହାର, ପ୍ରାଥମିକତା ଏବଂ ଅଗ୍ରାଧିକାର ନ ରହିଲେ ସେ ଭାଷା ଉପେକ୍ଷିତ ଏବଂ ଦୁର୍ବଳ ହୋଇଯାଏ । ଯାହା ଫଳରେ ବ୍ୟବହାରିକ କ୍ଷେତ୍ରରେ ଏହାକୁ ଅଧିକରୁ ଅଧିକ ଅବହେଳା କରାଯାଏ । ଉପେକ୍ଷାର କାଳଚକ୍ରରେ ପଡ଼ି ଭାଷାସବୁ ଲୁପ୍ତ ହୋଇଯାଆନ୍ତି ।

ନିଜର ସ୍ୱତନ୍ତ୍ର ଐତିହ୍ୟ ଯୋଗେ ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତ ହୋଇଥିବା ସାଢ଼େ ଚାରିକୋଟି ଭାଷାଭାଷୀ-ଓଡ଼ିଆଙ୍କ ମନରେ ଆଜି ହୁଏତ ଭାଷା-ମୃତ୍ୟୁର ଆଶଙ୍କା ନ ଥାଇପାରେ । କିନ୍ତୁ ସ୍ୱତନ୍ତ୍ର ଓଡ଼ିଶା ଗଠନର ବାର୍ଷିକ ଅବସରରେ ଭାଷା ବିଷୟରେ ଚିନ୍ତା କରିବା ଜରୁରୀ କାରଣ ଭାଷା-ଭାଷୀ ସଂଖ୍ୟା ଓ ଐତିହ୍ୟ ଥାଇ ମଧ୍ୟ ଭାଷାସବୁ ସୁରକ୍ଷିତ ନୁହନ୍ତି । ଲାଟିନ୍ ଭାଷା ଏସବୁ ଶକ୍ତି ସତ୍ତ୍ୱେ ବିଲୁପ୍ତ । ଇରାନର ପାର୍ସି ଭାଷା ଓ ଆମ ଦେଶର ସଂସ୍କୃତ ଭାଷାଗୁଡ଼ିକ ଖୁବ୍ ସୁରକ୍ଷିତ ନୁହନ୍ତି କାରଣ ବ୍ୟବହାରିକ ସ୍ତରରେ ଏଗୁଡ଼ିକ ଖୁବ୍ ସଂକୁଚିତ । ଯେକୌଣସି ଭାଷାର ଜୀବନ ଶକ୍ତି ସେ ଭାଷାଭାଷୀଙ୍କର ଭାଷା-ପ୍ରାଣ, ମାନସିକତା ଓ ଭାଷା ପ୍ରତି ପ୍ରତିବଦ୍ଧତାରେ ପ୍ରତିଫଳିତ ହୁଏ । ଭାଷା ପ୍ରୀତି କେବଳ ଅନ୍ତର୍ନିହିତ ନିଷ୍ଠା ବା ଭକ୍ତିରେ

ନଥାଏ । ଭାଷା–ମାନସିକତା ଓ ପ୍ରତିବଦ୍ଧତା ପ୍ରକାଶିତ ହୁଏ ସାଧାରଣ ଜୀବନର ସ୍ୱାଭାବିକ ଚଳଣି ଏବଂ ଆଧୁନିକ ପ୍ରଗତିରେ ଭାଷାର ଗୁରୁତ୍ୱରେ । 'ମୁଁ ଜଣେ ଓଡ଼ିଆ' – ଏ ଭାବନା ଭାଷା–ମାନସିକତାର ଏକ ମୁଖ୍ୟ ଦିଗ ନିଶ୍ଚୟ କିନ୍ତୁ ଭାଷା ପ୍ରତି ପୂର୍ଣ୍ଣ ପ୍ରତିବଦ୍ଧତା ସେତିକିରୁ ଆସେନାହିଁ । ସମାଜର ସାଧାରଣ ଜୀବନରେ ଅର୍ଥନୈତିକ ଓ ସାମୂହିକ ପ୍ରଗତିରେ ଭାଷାର ଗୁରୁତ୍ୱ ଏବଂ ଏହାର ଉପାଦେୟତା ବିବେଚନା ଯୋଗେ ହିଁ ଭାଷା–ମାନସିକତାର ପ୍ରକୃତ ସ୍ଥିତି ଓ ପ୍ରଭାବ ଜଣାପଡ଼େ । ସାଧାରଣ ଭାଷା ବ୍ୟବହାରକାରୀ ମନରେ ଭାଷା ପ୍ରତି ଆଗ୍ରହ ସୃଷ୍ଟି ହୁଏ ଭାଷାର ମୂଲ୍ୟାଙ୍କନରେ, ଯଦି ସମାଜର ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଶିକ୍ଷାରେ, ପ୍ରଶାସନିକ ଓ ଅର୍ଥନୈତିକ ବ୍ୟବସ୍ଥାରେ, ଭାଷାର ଉପଯୋଗିତା ଥାଏ ତେବେ ଭାଷାପ୍ରତି ପ୍ରତିବଦ୍ଧତା ରହିବ । ଶିକ୍ଷା, କର୍ମଜୀବନ ତଥା ଅର୍ଥନୈତିକ ପ୍ରଗତି ପାଇଁ ଭାଷାର ଉପାଦେୟତା ଯଥେଷ୍ଟ ନ ହେଲେ ଭାଷା ହୁଏତ ଆତ୍ମ–ପରିଚୟର ଭିତ୍ତି ହୋଇପାରେ କିନ୍ତୁ ଏହାର ଅନ୍ୟାନ୍ୟ ପ୍ରୟୋଗ ଓ ପ୍ରାଥମିକତା କ୍ରମଶଃ ହ୍ରାସ ପାଏ । ଭାଷାଭାଷୀଙ୍କର ନିଜ ଭାଷା ପ୍ରତି ନିଷ୍ଠା ଏକତରଫା ନୁହେଁ, ଜୀବନ, ଜୀବିକା ଓ ଭବିଷ୍ୟତ ପାଇଁ ଭାଷାର ଉପାଦେୟତାରେ ବିଶ୍ୱାସ ରହିବା ଜରୁରୀ ।

ଯେକୌଣସି ସମାଜରେ ଭାଷାମାନଙ୍କ ମଧ୍ୟରେ କ୍ଷମତା ଦ୍ୱନ୍ଦ୍ୱ ଏବଂ ଏକ ଅଦୃଶ୍ୟ ଠେଲାପେଲା । କେତେକ ଭାଷା ଅଧିକ ଶକ୍ତିଶାଳୀ ଓ ପ୍ରଭାବପୂର୍ଣ୍ଣ ହୋଇପଡ଼ନ୍ତି କାରଣ ସେଗୁଡ଼ିକ ରାଷ୍ଟ୍ରୀୟ ସ୍ତରରେ ଶିକ୍ଷା, ପ୍ରଗତି ଓ ଅର୍ଥନୀତି କ୍ଷେତ୍ରରେ ଅଧିକ ମାନ୍ୟତା ପାଇଥାଆନ୍ତି ବିଭିନ୍ନ ଐତିହାସିକ ଓ ରାଜନୈତିକ କାରଣରୁ । ଏ ପ୍ରକାର ମାନ୍ୟତା ଓ କ୍ଷମତା ଦୃଷ୍ଟିରୁ ଇଂରାଜୀ ଆମ ଦେଶରେ ସବୁଠାରୁ ପ୍ରଭାବଶାଳୀ ଭାଷା । ସଂବିଧାନ ଅନୁସାରେ ହିନ୍ଦୀ ରାଷ୍ଟ୍ରୀୟ ପ୍ରଶାସନରେ ସରକାରୀ ଭାଷା ଏବଂ ଇଂରାଜୀ ପ୍ରାରମ୍ଭରୁ ୧୫ ବର୍ଷ ପାଇଁ ଏବଂ ପରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଏକ ସହଯୋଗୀ ସରକାରୀ ଭାଷା । ମାତ୍ର, ହିନ୍ଦୀକୁ ଜାତୀୟ ଭାଷାର ମାନ୍ୟତା ସଂବିଧାନରେ ନାହିଁ । ହିନ୍ଦୀ ସମେତ ୨୨ଟି ଆଞ୍ଚଳିକ ଭାଷା ସଂବିଧାନର ଅଷ୍ଟମ ଅନୁସୂଚୀରେ ରାଜ୍ୟସ୍ତରୀୟ ସରକାରୀ ଭାଷା ଭାବରେ ସ୍ୱୀକୃତ । ଅନ୍ୟାନ୍ୟ ଆଦିବାସୀ ଓ ସଂଖ୍ୟାଲଘୁ ଭାଷାମାନେ ସାଂବିଧାନିକ ସ୍ତରରେ ଜାତୀୟ ମାନ୍ୟତା ପାଇ ନାହାନ୍ତି । ତେଣୁ ଭାଷାମାନେ ତିନି ଥାକରେ ବିଭକ୍ତ– ସର୍ବୋଚ୍ଚ ସ୍ତରରେ ଇଂରାଜୀ, ମଧ୍ୟମ ସ୍ତରରେ ହିନ୍ଦୀ ଓ ଅନ୍ୟାନ୍ୟ ଅନୁସୂଚିତ ଭାଷାମାନ ଏବଂ ସର୍ବନିମ୍ନ ଥାକରେ ଜନଜାତି ଓ ସଂଖ୍ୟାଲଘୁ ଭାଷାମାନ । ତେଣୁ ମଝି ବରଡ଼ା ଭଳି ଓଡ଼ିଆ ଭାଷା ପ୍ରଭାବ ଦୃଷ୍ଟିରୁ ମଝି ଥାକରେ ଅଛି । ଜାତୀୟ ସ୍ତରରେ ଇଂରାଜୀ ଭାଷାର ପ୍ରାଧାନ୍ୟ ଯୋଗେ ହିନ୍ଦୀ ସମେତ ପ୍ରାଦେଶିକ ଏବଂ ଆଞ୍ଚଳିକ ମୁଖ୍ୟ ଭାଷାମାନ କ୍ରମଶଃ ଶିକ୍ଷା ଏବଂ ଅନ୍ୟାନ୍ୟ ସାମାଜିକ ଅର୍ଥନୈତିକ କ୍ଷେତ୍ରରୁ ବିସ୍ଥାପିତ ହେବାରେ ଲାଗିଛନ୍ତି ଏବଂ ଏସବୁ ମୁଖ୍ୟ ଭାରତୀୟ ଭାଷାମାନଙ୍କର ଆଞ୍ଚଳିକ ପ୍ରଭାବରୁ ଜନଜାତି ଏବଂ ସ୍ଥାନୀୟ ସଂଖ୍ୟାଲଘୁ ଭାଷାମାନ ମଧ୍ୟ ଲୁପ୍ତ ହେବାରେ ଲାଗିଛନ୍ତି । ଏ ପ୍ରକାର ଭାଷାମାନଙ୍କ ଠେଲାପେଲାରେ ଏବଂ ଅଧିକ କ୍ଷମତାସମ୍ପନ୍ନ ଭାଷା ତଥା ଇଂରାଜୀ ପ୍ରଭାବରେ ଓଡ଼ିଆ ଭାଷାର ସ୍ଥିତି ଏବଂ ଓଡ଼ିଆ ମାତୃଭାଷୀ ପରିବାରମାନଙ୍କରେ ଭାଷା ପ୍ରତି ନିଷ୍ଠା ଓ ଆନୁଗତ୍ୟ ନିଶ୍ଚୟ ଚିନ୍ତନୀୟ ।

ଓଡ଼ିଆ ପଢ଼ିବା, ଲେଖିବା ଏବଂ ଜନଜୀବନର ବିଭିନ୍ନ କ୍ଷେତ୍ରରେ ଓଡ଼ିଆର ପ୍ରୟୋଗରୁ ଭାଷା ଆନୁଗତ୍ୟ ଅନୁମାନ କରିହେବ । ଆମ ପିଲାଏ ଓଡ଼ିଆ ପଢ଼ି–ଲେଖି ଶିଖୁଛନ୍ତି ବା ଓଡ଼ିଆ କହି ପାରୁଛନ୍ତି କି? ବୟସ୍କମାନେ ଦୈନନ୍ଦିନ ଜୀବନରେ ଓଡ଼ିଆର ଯଥେଷ୍ଟ ବ୍ୟବହାର କରୁଛନ୍ତି କି ? ଘର ଆଗରେ ନିଜର ନାମଫଳକଟିଏ ଲଗାଇଲାବେଳେ ବା ବିବାହ–ବ୍ରତରେ ନିମନ୍ତ୍ରଣ ପତ୍ରଟିଏ ଛାପିଲାବେଳେ, ବହିଟିଏ କିଣିଲାବେଳେ, ବା ଦୈନିକ ଖବରକାଗଜ ମଗାଇଲା ବେଳେ ଆମେ ଓଡ଼ିଆକୁ ପ୍ରାଧାନ୍ୟ ଦେଉଛୁ କି? ଓଡ଼ିଆ ଭାଷା ପ୍ରତି ଆନୁଗତ୍ୟ ଓ ଭାଷାର ଭବିଷ୍ୟତ ଚିନ୍ତା କଲାବେଳେ ଏସବୁ ବ୍ୟବହାରିକ ପ୍ରଶ୍ନ ଆଗକୁ ଆସିବ ନିଶ୍ଚୟ, କାରଣ 'ମୁଁ ମୋ ଭାଷାକୁ ଭଲପାଏ', ଏକଥା କେବଳ ଘୋଷଣାର କଥା ନୁହେଁ । ଭାଷାପ୍ରତି ପ୍ରତିବଦ୍ଧତା

ପ୍ରକାଶିତ ହୁଏ ଭାଷାର ବ୍ୟବହାରରେ ଏବଂ ଗୋଟିଏ ପିଢ଼ିରୁ ଅନ୍ୟ ପିଢ଼ିକୁ ଭାଷାର ସଂପ୍ରସାରଣରେ ।

ବର୍ତ୍ତମାନ ଆମ ରାଜ୍ୟରେ ଛଅରୁ ଅଠର ବର୍ଷ ବିଦ୍ୟାଳୟ ବୟସର ପିଲାଙ୍କ ଭିତରୁ ପ୍ରାୟ ୪୯ ଲକ୍ଷ ଇଂରାଜୀ- ମାଧ୍ୟମ ବିଦ୍ୟାଳୟରେ । ଏମାନଙ୍କ ବ୍ୟତୀତ ଲକ୍ଷ ଲକ୍ଷ କୁନି ପିଲା ବିଭିନ୍ନ ପ୍ରକାରର ନର୍ସରୀ, କିଣ୍ଡର ଗାର୍ଡ଼େନ ବା ଖେଳ ନଥିବା 'ପ୍ଲେ' ସ୍କୁଲମାନଙ୍କରେ ଅବୋଧ ଇଂରାଜୀ ନର୍ସରୀ ରାଇମ୍ ଘୋଷୁଛନ୍ତି । ଅନୁମାନ କରାଯାଏ ଯେ ଗତ ୧୦-୧୫ବର୍ଷ ଭିତରେ ଇଂରାଜୀ ମାଧ୍ୟମ ବିଦ୍ୟାଳୟରୁ ବାହାରି ରାଜ୍ୟ ବା ରାଜ୍ୟ ବାହାରେ କାମ କରୁଥିବା ବୟସ୍କ ଓଡ଼ିଆମାନଙ୍କ ମଧ୍ୟରୁ ଅନ୍ୟୂନ ୨୨ ଲକ୍ଷ ହୁଏ ତ ଓଡ଼ିଆ ଲେଖି-ପଢ଼ି ଜାଣନ୍ତି ନାହିଁ ଏବଂ ଅନେକ ଓଡ଼ିଆ କହି ଜାଣନ୍ତି ନାହିଁ । ତେଣୁ ଏ କଥା କହିହେବ ଯେ ବର୍ତ୍ତମାନର ଓଡ଼ଆ ଲୋକମାନଙ୍କ ମଧ୍ୟରୁ ନିରକ୍ଷର ଲୋକଙ୍କୁ ବାଦ୍‌ଦେଲେ, ସାତବର୍ଷରୁ ଊର୍ଦ୍ଧ୍ୱ ଓଡ଼ିଆଙ୍କ ମଧ୍ୟରେ ୭୧ ଲକ୍ଷରୁ ଅଧିକ ପାଠୁଆ ବ୍ୟକ୍ତି ଓଡ଼ଆ ପଢିବାକୁ ଅସମର୍ଥ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମୟରେ ରାଜ୍ୟର ଜନସଂଖ୍ୟା ଥିଲା ଏକକୋଟି ୩୧ ଲକ୍ଷ, ଯାହା ବର୍ତ୍ତମାନ ଚାରିକୋଟି ୬୦ ଲକ୍ଷରେ ପହଞ୍ଚିଛି । ୨୦୩୬ ମସିହା ବେଳକୁ ଓଡ଼ିଶାର ଜନସଂଖ୍ୟା ହେବ ପ୍ରାୟ ପାଞ୍ଚକୋଟି ୭୭ ଲକ୍ଷ । ସେମାନଙ୍କ ମଧ୍ୟରେ ଥିବେ ଏକ କୋଟି ୫୬ ଲକ୍ଷରୁ ଅଧିକ ବିଦ୍ୟାଳୟ ଶିକ୍ଷା ବୟସର ଅର୍ଥାତ୍ ଛଅରୁ ୧୮ ବର୍ଷ ବୟସର ପିଲା । ସେମାନଙ୍କ ମଧ୍ୟରୁ କେତେ ପିଲା ଇଂରାଜୀ-ମାଧ୍ୟମ ବିଦ୍ୟାଳୟରେ ଥିବେ ତାହା ତଥ୍ୟ ଭିତ୍ତିରେ ଅନୁମେୟ । ବର୍ତ୍ତମାନ ଜାତୀୟ ଓ ରାଜ୍ୟସ୍ତରରେ ୪୦ ପ୍ରତିଶତ ପିଲା ଇଂରାଜୀ-ମାଧ୍ୟମ ବିଦ୍ୟାଳୟରେ ଏବଂ ଏହାର ବାର୍ଷିକ ଅଭିବୃଦ୍ଧି ହାର ୧୦ ପ୍ରତିଶତ । ବେସରକାରୀ ଇଂରାଜୀ - ମାଧ୍ୟମ ବିଦ୍ୟାଳୟମାନ ରାଜ୍ୟର ଗାଁଗଣ୍ଡା ଓ ସହରତଳି ଅଞ୍ଚଳମାନଙ୍କରେ ଛତୁ ଫୁଟିଲାଭଳି ମାଡି ଚାଲିଛନ୍ତି ଏବଂ ବ୍ୟବସାୟିକ ଭିତ୍ତିରେ ଏମାନେ ସ୍ଥାନୀୟ ପରିବେଶ ଓ ଆର୍ଥିକ କ୍ଷମତାକୁ ଦୃଷ୍ଟିରେ ରଖି ସ୍ୱଳ୍ପଦେୟର ତଥା ନିମ୍ନମାନର ଇଂରାଜୀ-ମାଧ୍ୟମ ଶିକ୍ଷାର ପ୍ରସାର କରିଚାଲିଛନ୍ତି । ତତ୍ ସହିତ, ସାଧାରଣ ଜନତାଙ୍କ ଆୟ ଓ ଆର୍ଥିକ ଅବସ୍ଥାରେ ଆଶାନୁରୂପ ଉନ୍ନତି ହେଲେ ଏକଥା ଅନୁମାନ କରିହେବ ଯେ ଇଂରାଜୀ-ମାଧ୍ୟମ ପିଲାଙ୍କ ସଂଖ୍ୟାର ବାର୍ଷିକ ଅଭିବୃଦ୍ଧି ହାର ଦ୍ରୁତ ଗତିରେ ବଢ଼ିବ । ତେବେ,ସାଂପ୍ରତିକ ଅଭିବୃଦ୍ଧି ହାର ଭିତ୍ତିରେ ମଧ୍ୟ ହିସାବ କଲେ ଏକଥା ସ୍ପଷ୍ଟ ଯେ ଆଗାମୀ ଦଶନ୍ଧି ଭିତରେ ପ୍ରାୟ ଶତପ୍ରତିଶତ ଓଡ଼ିଆ ପିଲା ଥିବେ ଇଂରାଜୀ-ମାଧ୍ୟମ ବିଦ୍ୟାଳୟମାନଙ୍କରେ । ଏ ଧାରା ଯଦି ଅବ୍ୟାହତ ରହେ ଏବଂ ଓଡ଼ିଆ-ମାଧ୍ୟମ ବିଦ୍ୟାଳୟମାନଙ୍କର ଗୁଣାତ୍ମକ ମାନରେ ଯଥେଷ୍ଟ ଉନ୍ନତି ନ ହୁଏ, ତେବେ କେବଳ ଇଂରାଜୀ-ମାଧ୍ୟମ ବିଦ୍ୟାଳୟ ଉପଲବ୍ଧ ନଥିବା ଦୂରନ୍ତ ମଫସଲ ଅଞ୍ଚଳ ବ୍ୟତୀତ ଅନ୍ୟ ଅଞ୍ଚଳରେ ଓଡ଼ିଆ-ମାଧ୍ୟମ ବିଦ୍ୟାଳୟର ପିଲା ନଥିବେ ଅର୍ଥାତ୍ ସ୍ୱତନ୍ତ୍ର-ଓଡ଼ିଶାର ଶହେ ବର୍ଷରେ ଓଡ଼ିଆ ମାଧ୍ୟମ ଶିକ୍ଷାରେ ଛାତ୍ରଛାତ୍ରୀ ନଥିବେ । ଏହା ଏକ ଦୁଃସ୍ୱପ୍ନ ଭଳି ମନେ ହୋଇପାରେ, କିନ୍ତୁ ଏହା ତଥ୍ୟଭିତ୍ତିକ ପୂର୍ବାନୁମାନ ।

ଇଂରାଜୀ-ମାଧ୍ୟମ ଶିକ୍ଷା ସ୍ରୋତରେ ଓଡ଼ିଆ ଭାଷାର ପଢ଼ାଲେଖା ସଂକୁଚିତ ହେବ ନିଶ୍ଚୟ ଏବଂ ଏହା ସହିତ କଥିତ ଓଡ଼ିଆର ସଂପ୍ରସାରଣ ମଧ୍ୟ ବ୍ୟାହତ ହେବ । ବାପା-ମାଆଙ୍କ ଇଂରାଜୀ-ମାଧ୍ୟମ ଶିକ୍ଷା ପ୍ରତି ଆକର୍ଷଣ ଫଳରେ ବର୍ତ୍ତମାନ ଲକ୍ଷ ଲକ୍ଷ ମାଧ୍ୟମିକ ଓ ଉଚ୍ଚ ବର୍ଗର ପିଲାଙ୍କ ପ୍ରାରମ୍ଭିକ ବିକାଶରେ ଓଡ଼ିଆ ଭାଷାର ବ୍ୟବହାର ଓ ଶିକ୍ଷା ହ୍ରାସ ପାଉଛି । ଓଡ଼ିଆ ବାପା-ମାଆ ପିଲାଙ୍କ ସହିତ ଓଡ଼ିଆରେ କଥା ହେବା ପ୍ରାୟତଃ କମିଯାଉଛି, କାରଣ ସେମାନେ ଇଂରାଜୀ-ମାଧ୍ୟମ ଶିକ୍ଷାରେ ଯୋଗଦେବେ । ପିଲାଙ୍କ ଗପ-ଗୀତ, ଟିଭି କାର୍ଯ୍ୟକ୍ରମ, ଛପା ବହି, ଖବରକାଗଜ ଇତ୍ୟାଦି ପ୍ରାୟ ଇଂରାଜୀରେ । 'ଆ ଜହ୍ନ ମାମୁ ସରଗ ଶଶୀ' ବଦଳରେ ପିଲାଏ 'ଟ୍ୱିଙ୍କଲ୍ ଟ୍ୱିଙ୍କଲ୍ ଲିଟଲ ଷ୍ଟାର' ଶିଖିଲେଣି । ଏକକ ପରିବାରମାନଙ୍କରେ ପିଲା ନିତିଦିନିଆ ବାଲ୍ୟ ଅନୁଭବରେ

ଜେଜେ ମା', ଜେଜେ ବାପାମାନେ ଆଉ ନାହାନ୍ତି । ଫଳରେ ଓଡ଼ିଆ କାହାଣୀ, ପୁରାଣ କଥା, ଢ଼ଗଢ଼ମାଳୀ ଇତ୍ୟାଦି ପିଲାଙ୍କ ପାଇଁ ଦୁର୍ଲଭ । ନିଜ ପରିବେଶର ଗଛ, ଲତା, ପନିପରିବା ଇତ୍ୟାଦିର ଓଡ଼ିଆ ନାଁ ମାନେ ଇଂରାଜୀ ଶବ୍ଦମାନଙ୍କ ଭିତରେ ଲୁଚି ଗଲେଣି । ଭାଷା ବଂଚେ ଗୋଟିଏ ପିଢିରୁ ଅନ୍ୟ ପିଢ଼ିକୁ ସଂପ୍ରସାରଣରେ । ତେଣୁ ଯେଉଁ ଗତିରେ ଏ ପ୍ରକାର ସଂପ୍ରସାରଣ ହ୍ରାସ ପାଉଛି ତାହା ଉଦ୍‌ବେଗଜନିତ ।

ବୟସ୍କମାନଙ୍କ କ୍ଷେତ୍ରରେ ମଧ୍ୟ ଓଡ଼ିଆ ପାଠକଙ୍କ ସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଛି । ଓଡ଼ିଆ ଖବରକାଗଜ ପଢ଼ା ମଧ୍ୟ କମୁଛି । ଓଡ଼ିଶାରେ ବଡ, ମଧ୍ୟମ ଓ କ୍ଷୁଦ୍ର ଧରଣର ରାଜ୍ୟ ତଥା ଆଞ୍ଚଳିକ ସ୍ତରୀୟ ଘୋଷିତ ଖବରକାଗଜ ପ୍ରକାଶନର ସଂଖ୍ୟା ୪୪ ଲକ୍ଷ ପଚାଶ ହଜାର ଏବଂ ପ୍ରକୃତ ପାଠକମାନଙ୍କ ପାଇଁ ଘରେ ପହଞ୍ଚୁଥିବା ଖବରକାଗଜ ଏହାଠାରୁ ଅନେକ କମ୍ । ତଥାପି, ସମସ୍ତ ପ୍ରକାଶିତ ଖବରକାଗଜଗୁଡିକର ହାରାହାରି ପାଠକ ପ୍ରାୟ ସଂଖ୍ୟା ଷାଠିଏରୁ ଅଶି ଲକ୍ଷ । ଅର୍ଥାତ୍ ଓଡ଼ିଶାରେ ସାତବର୍ଷରୁ ଅଧିକ ବୟସର ସ୍ୱାକ୍ଷରମାନଙ୍କ ମଧ୍ୟରୁ ମାତ୍ର ୨୭ ପ୍ରତିଶତ ଦୈନିକ ଖବରକାଗଜ ପଢ଼ନ୍ତି ।

ତେଣୁ ସବୁ ଦୃଷ୍ଟିରୁ ବିଚାର କଲେ, ଓଡ଼ିଆ ଭାଷାର ବ୍ୟବହାର ଖୁବ୍ ଉଦ୍‌ବେଗଜନକ ଭାବରେ କମିବାରେ ଲାଗିଛି । ବୋଧହୁଏ ଆଉ କେତୋଟି ବର୍ଷ ପରେ ଶିକ୍ଷିତ ଓଡ଼ିଆ ଯୁବକ ଯୁବତୀ ଓଡ଼ିଆରେ ଛପା ଖବରକାଗଜ, ବହି, ନାମ ଫଳକ, ନିମନ୍ତ୍ରଣ ପତ୍ର ଇତ୍ୟାଦି ପଢ଼ିପାରିବେ ନାହିଁ, ଓଡ଼ିଆରେ ମୁଦ୍ରିତ ଲେଖା ଓ ସାହିତ୍ୟରେ ଅନୁରାଗ କମିବ । ସ୍ୱତନ୍ତ୍ର ଓଡ଼ିଶାର ଶହେ ବର୍ଷରେ ବର୍ତ୍ତମାନର ଯୁବପିଢ଼ିର ବାପା-ମାଆଙ୍କର ପିଲାମାନେ ଆଉ ଓଡ଼ିଆ କହିପାରିବେ ନାହିଁ, ବୁଝିବେ ନାହିଁ ମଧ୍ୟ । କେବଳ ହୁଏତ ନିମ୍ନ ବର୍ଗର ପରବାର ଓ ଗ୍ରାମୀଣ ଅଞ୍ଚଳରେ କିଛିଟା କଥିତ ଓଡ଼ିଆ ବ୍ୟବହୃତ ହେବ ଏବଂ ଉତ୍ତରପୁରୁଷକୁ ସଂପ୍ରସାରଣ ହେବ । ଏହା ଫଳରେ, କଥିତ ଓଡ଼ିଆ ଭାଷା ଅନେକାଂଶରେ ଲିଖିତ ଓଡ଼ିଆଠାରୁ କ୍ରମଶଃ ଦୂରେଇ ଯିବ । ଶାସ୍ତ୍ରୀୟ ମାନ୍ୟତା ପରେ ମଧ୍ୟ ଯଦି ସାମଗ୍ରିକ ଭାବରେ ଓଡ଼ିଆ ଭାଷାର ବ୍ୟବହାର , ପ୍ରୟୋଜନ, ଉପାଦେୟତା ପ୍ରତିଷ୍ଠିତ ନ ହୁଏ ଏବଂ ଶିକ୍ଷା କ୍ଷେତ୍ରରେ ଓଡ଼ିଆର ପ୍ରୟୋଗରେ ଅଭିବୃଦ୍ଧି ନ ହୁଏ , ତେବେ ବର୍ତ୍ତମାନର ଧାରାରେ ଚାଲିଲେ, ଆଉ କିଛି ବର୍ଷ ପରେ, ଓଡ଼ିଆ ହୁଏତ ଏକ କଥିତ ଭାଷା ହୋଇଯାଇପାରେ – ଏହା ଓଡ଼ିଆ ଭାଷୀ ଓ ଓଡ଼ିଆ ଭାଷାପ୍ରେମୀଙ୍କ ଲାଗି ଏକ ଅପ୍ରୀତିକର ସମ୍ଭାବନା ଏବଂ ଏକ କ୍ରୂର ବାସ୍ତବତା ।

ଏଚ.ଆଇ.ଜି-୬୭
ଫେଜ୍-୮, ଶୈଳଶ୍ରୀ ବିହାର
ଭୁବନେଶ୍ୱର-୭୫୧୦୨୧



# ସ୍ୱପ୍ନର ଓଡ଼ିଶା ପାଇଁ ବିଜୁବାବୁଙ୍କ ସଂଗ୍ରାମଶୀଳ ଜୀବନ

**ଗୁରୁକଲ୍ୟାଣ ମହାପାତ୍ର**

ତତ୍କାଳୀନ ବ୍ରିଟିଶ ଶାସକଙ୍କ କବଳରୁ ଭାରତବର୍ଷକୁ ମୁକ୍ତି ଦେବା ଲାଗି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ବିଭିନ୍ନ ପର୍ଯ୍ୟାୟରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ମୁଣ୍ଡ ଟେକି ଉଠିଥିଲା, ତନ୍ମଧ୍ୟରେ ଅନ୍ତିମ ପର୍ଯ୍ୟାୟରେ ''ଭାରତଛାଡ଼ ଆନ୍ଦୋଳନ' ପାଇଁ ''କର ଅବା ମର'ର ବଜ୍ର ଆହ୍ୱାନ ପ୍ରକୃତରେ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ୧୯୪୨ର ଏହି 'ଭାରତଛାଡ଼ ଆନ୍ଦୋଳନ' ଅବା ଅଗଷ୍ଟ ବିପ୍ଳବ ଦେଶବାସୀଙ୍କ ମଧ୍ୟରେ ଭରି ଦେଇଥିଲା ଅପୂର୍ବ ଉନ୍ମାଦନା । ଅପରପକ୍ଷେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ଗଠିତ 'ଆଜାଦ୍ ହିନ୍ଦ୍ ଫୌଜ୍'ର 'ଦିଲ୍ଲୀ ଚଲୋ' ଆହ୍ୱାନରେ ବାହ୍ୟିକ ଆକ୍ରମଣର ଆଶଙ୍କାରେ ତତ୍କାଳୀନ ବ୍ରିଟିଶ ସରକାର ଭୟଭୀତ ହୋଇଗଲେ । ଭାରତକୁ ସ୍ୱାଧୀନତା ଦେବା ବ୍ୟତୀତ ବ୍ରିଟିଶ ସରକାରଙ୍କର ଗତ୍ୟନ୍ତର ନ ଥିଲା । ଏହି ଐତିହାସିକ ସତ୍ୟକୁ ଆମକୁ ସ୍ୱୀକାର କରିବାକୁ ହେବ । ଏହି ଭାରତଛାଡ଼ ଆନ୍ଦୋଳନରେ ଓଡ଼ିଶାର ମହାନାୟକ, ସ୍ୱାଧୀନତା ସଂଗ୍ରାମୀ ଓ ଦୁଃସାହସିକ ବୀର ବିଜୁ ପଟ୍ଟନାୟକଙ୍କ ଭୂମିକା ଥିଲା ଅତ୍ୟନ୍ତ ଗୌରବୋଜ୍ଜ୍ୱଳ । ଆଶ୍ଚର୍ଯ୍ୟର କଥା ଯେ, ଅନ୍ତିମ ପର୍ଯ୍ୟାୟର ଏହି ଆନ୍ଦୋଳନରେ ଓଡ଼ିଶା ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ହେଁ ଭାରତର ଇତିହାସ ପୃଷ୍ଠାରେ ଓଡ଼ିଶାର ଭୂମିକାକୁ ସେପରି ଗୁରୁତ୍ୱ ଦିଆଯାଇନାହିଁ । ଅଥଚ ଓଡ଼ିଶାର ଅନେକ ତୁଙ୍ଗନେତା ଏହି ଆନ୍ଦୋଳନରେ ସାମିଲ ହୋଇ କାରାବରଣ କରିଥିଲେ । ସେମାନଙ୍କ ମଧ୍ୟରେ ଅନ୍ୟତମ ନେତା ଥିଲେ ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକ । ନିଜର ପିତା ଓ ମାତାଙ୍କୁ ହରାଇବା ପରେ ୧୯୪୩ରୁ ୧୯୪୬ ପର୍ଯ୍ୟନ୍ତ ବିଜୁବାବୁଙ୍କୁ ଏଥିପାଇଁ ନୂଆଦିଲ୍ଲୀ ରେଡ଼ଫୋର୍ଟ ସମେତ ଫିରୋଜପୁର, ଲାହୋର ଓ କଟକ ପ୍ରଭୃତି ଜେଲ୍‌ରେ କାରାବରଣ କରିବାକୁ ପଡ଼ିଥିଲା ।



ପ୍ରାୟ ଶହେ ବର୍ଷ ପୂର୍ବେ ଓଡ଼ିଶା ମାଟିରେ ଜନ୍ମଗ୍ରହଣ କରିଥିବା ଏହି ବରପୁତ୍ର ବିଜୁବାବୁଙ୍କ ସଂଗ୍ରାମଶୀଳ ଓ ଦୁଃସାହସିକ ଜୀବନଧାରା ପ୍ରତି ଅବଲୋକନ କଲେ ତାଙ୍କର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ପ୍ରାୟ ଶତାଧିକ ବର୍ଷ ତଳେ ଭାରତର ଶାସକ ବ୍ରିଟିଶ ଓ ଜର୍ମାନୀ ମଧ୍ୟରେ ହୋଇଥିବା ପ୍ରଥମ ବିଶ୍ୱ ଯୁଦ୍ଧରେ ବ୍ରିଟିଶ ସରକାର ଜୟଯୁକ୍ତ ହେବାରୁ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ତାଙ୍କର ନାମ ବିଜୟାନନ୍ଦ ରଖିଥିଲେ । ମାତ୍ର ପରବର୍ତ୍ତୀ କାଳରେ ପରିଣତ ବୟସରେ ସେ ପିତୃଦତ୍ତ ନାମକୁ ପରିବର୍ତ୍ତନ କରି ''ବିଜୁ' ଭାବରେ ପରିଚିତ ହେବାକୁ ଲାଗିଲେ । କିଏ ଜାଣିଥିଲା ଏହି ''ବିଜୁ'ସମଗ୍ର ଓଡ଼ିଶା ବା ଭାରତରେ ନୁହେଁ, ବରଂ ଅନ୍ତର୍ଜାତୀୟ ସ୍ତରରେ ନିଜର ଓ ନିଜ ଜନ୍ମମାଟିର ସୁନାମ ରଖିବେ ବୋଲି ? ଶହେ ବର୍ଷ ତଳେ ଜନ୍ମଲାଭ କରି ଓଡ଼ିଶାକୁ କେବଳ ଜାତୀୟ ସ୍ତରରେ ନୁହେଁ, ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରିବାକୁ ଚାହୁଁବାକୁ ବିଜୁବାବୁଙ୍କ ଜୀବନ କେବଳ ସଂଗ୍ରାମଶୀଳ

ନ ଥିଲା, ଦୁଃସାହସିକ ଘଟଣାବଳୀରେ ଥିଲା ପରିପୂର୍ଣ୍ଣ । ଜଣେ ସୁଦକ୍ଷ ବିମାନଚାଳକ ଭାବରେ ସେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଅତ୍ୟନ୍ତ ଘନିଷ୍ଠ ଓ ବିଶ୍ୱାସଭାଜନ ହୋଇପାରିଥିଲେ । ୧୯୪୭ ମସିହାରେ ଯେତେବେଳେ ପାକିସ୍ଥାନ ଭାରତ ଉପରେ ଆକ୍ରମଣ ସକାଶେ ଉଦ୍ୟତ, ବିଜୁବାବୁ ଅତ୍ୟନ୍ତ ସାହସ ପ୍ରଦର୍ଶନ କରି ନେହେରୁଙ୍କ ନିର୍ଦ୍ଦେଶରେ ଗୋଟିଏ ପ୍ଲାଟୁନ୍ ସୈନ୍ୟସାମନ୍ତ ଧରି ପ୍ରଥମ ଭାରତୀୟ ବିମାନକୁ କାଶ୍ମିରରେ ପ୍ରଥମେ ଅବତରଣ କରାଇଥିଲେ । ପଣ୍ଡିତ ନେହେରୁ ସେଥିପାଇଁ ତାଙ୍କୁ India's Buccaneer (ଭାରତର ବୁକାନିଅର) ବୋଲି କହି ଆସୁଥିଲେ । 'ବୁକାନିଅର' ଶବ୍ଦର ପ୍ରାଚୀନ ବ୍ୟବହାରିକ ଅର୍ଥ ହେଉଛି, ଯେଉଁ ଦୁର୍ଦ୍ଧର୍ଷ ନାବିକ ଜଳପଥରେ ଯାତ୍ରା କରୁଥିବା ଜାହାଜ ଉପରେ କୌଶଳକ୍ରମେ ଆକ୍ରମଣ କରି ଲୁଟ୍‌ପାଟ୍ କରିବା ସହିତ ଆପଣାର ବ୍ୟବସାୟିକ ସଫଳତା ହାସଲ କରିଥାଏ ।

ବିଜୁବାବୁଙ୍କର ଦୁଃସାହସିକ କାର୍ଯ୍ୟକଳାପ ଓ ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଭୂମିକା ସମ୍ପର୍କରେ ରହିଛି ଅନେକ କାହାଣୀ । ମାତ୍ର ସେସବୁକୁ ବିଧିବଦ୍ଧ ଭାବରେ ଐତିହାସିକ ଦୃଷ୍ଟିକୋଣରୁ ହୁଏତ ଲେଖାଯାଇପାରି ନାହିଁ । ସେସବୁକୁ ଅତ୍ୟାଧୁନିକ ଉପାୟରେ ସଂଗ୍ରହ କରାଗଲେ ଆମର ସ୍ୱାଧୀନତା ସଂଗ୍ରାମର ଇତିହାସରେ ସେସବୁ କ'ଣ ସାଇତା ହୋଇ ରହି ପାରନ୍ତାନି ?

ଯୁବାବସ୍ଥାରେ ବିଜୁବାବୁ ଯେତେବେଳେ ''ରୟାଲ ଏଆରଫୋର୍ସ'ରେ ଚାକିରି କରିଥିଲେ,ସେତେବେଳେ କଟକସ୍ଥିତ ତାଙ୍କର ''ଆନନ୍ଦ ଭବନ'ଟି ସ୍ୱାଧୀନତା ସଂଗ୍ରାମୀଙ୍କ ଗହଣରେ ମୁଖରିତ ହୋଇଉଠିଥିଲା । ଜୟପ୍ରକାଶ ନାରାୟଣ,ଡକ୍ଟର ରାମ ମନୋହର ଲୋହିଆ,ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ ପ୍ରଭୃତି ସମାଜବାଦୀ ବା ସୋସାଲିଷ୍ଟ ନେତା ଓ ନେତ୍ରୀଗଣ ସେତେବେଳେ ବିଜୁବାବୁଙ୍କ ବାସଭବନରୁ ହିଁ ଲୁଆଡ଼େ ଛଦ୍ମବେଶରେ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଉଥିଲେ । ବିଜୁବାବୁ କୌଶଳରେ ବିମାନଚାଳନା କରି ଏହି ସଂଗ୍ରାମୀମାନଙ୍କୁ ସେମାନଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରୁଥିଲେ । ସେ କେବଳ ଯେ ଜଣେ ସୁଦକ୍ଷ ବିମାନଚାଳକ ବା ପାଇଲଟ୍ ଥିଲେ, ତାହା ନୁହେଁ, ସେ ବ୍ରିଟିଶ ରୟାଲ ଏଆରଫୋର୍ସ କମ୍ପାନିରେ ଦକ୍ଷିଣ ଏସିଆ ଅଞ୍ଚଳର ପରିବହନ ''କମାଣ୍ଡ'ର ମୁଖ୍ୟ ଭାବରେ ଅବସ୍ଥାପିତ ହୋଇ ଓଡ଼ିଶାର ଗୌରବ ବର୍ଦ୍ଧନ କରିଥିଲେ । ଅନେକ ସମୟରେ ସେ ଜୀବନକୁ ପାଣି ଛଡ଼ାଇ ଦୁଃସାହସିକ ଭାବରେ ବିମାନଚାଳନା କରିଆସୁଥିଲେ । ସୌଭାଗ୍ୟବଶତଃ ସେ ଅନେକ ଥର ମୃତ୍ୟୁର ସାମନାସାମ୍ନି ହୋଇ ମଧ୍ୟ ଅଳ୍ପକେ ବର୍ତ୍ତି ଯାଇଥିଲେ ।

ଭାରତର ଜଣେ ବିଶିଷ୍ଟ ଶ୍ରମିକ ନେତା ଓ ପୂର୍ବତନ ପ୍ରତିରକ୍ଷା ମନ୍ତ୍ରୀ ଜର୍ଜ୍ ଫର୍ଣ୍ଣାଡିଜ୍ ବିଜୁବାବୁଙ୍କ ସମ୍ପର୍କରେ କହିଥିଲେ- '୧୯୪୨ ମସିହାର ଆନ୍ଦୋଳନରେ ତାଙ୍କର ଉଲ୍ଲେଖନୀୟ ଭୂମିକା ରହିଥିଲା । ଏହି ଆନ୍ଦୋଳନ ଶେଷ ହେବା ବେଳକୁ ସେ ଗିରଫ ହୋଇଥିଲେ । ମାତ୍ର ସେ ମୃତ୍ୟୁଦଣ୍ଡରୁ ବର୍ତ୍ତି ଯାଇଥିଲେ ।'

ବିଜୁବାବୁଙ୍କ ଦେହାନ୍ତ ହେବା ପରେ ଅଟଳ ବିହାରୀ ବାଜପେୟୀ ସଂସଦରେ ଏକ ଶୋକ ପ୍ରସ୍ତାବ ୧୯୯୭ ଅପ୍ରେଲ ୨୧ ତାରିଖରେ ଆଗତ କରି ଉଲ୍ଲେଖ କରିଥିଲେ-'ମୁଁ ଅଳ୍ପ ସମୟ ଧରି ତାଙ୍କ ସହ କାମ କରିବାର ସୁଯୋଗ ଲାଭ କରିଥିଲି । ସେ ଯାହାହେଉ, ମୋର ଦୁଃଖ ରହିଗଲା ଯେ ଦେଶରେ ଜରୁରିକାଳୀନ ପରିସ୍ଥିତି ଜାରି ହେବା ପରେ ସେ ରୋଟକ ଜେଲ୍‌ରେ ବନ୍ଦୀ ଥିଲାବେଳେ ମୁଁ ତାଙ୍କର ସାହାଚର୍ଯ୍ୟ ପାଇ ପାରିଲି ନାହିଁ । ତାଙ୍କର ସହବନ୍ଦୀମାନେ କହିଥିବା ଶୁଣିଛି ଯେ ଜେଲ ଭିତରେ ଥାଇ ସେ ଖୁବ୍ କଷ୍ଟକର କାର୍ଯ୍ୟମାନ କରୁଥିଲେ ଏବଂ ଆପଣାର ସହବନ୍ଦୀମାନଙ୍କୁ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ ଓ ସହଯୋଗ ବି କରିଆସୁଥିଲେ ।'

ବିଜୁବାବୁ ପ୍ରକୃତରେ ଭାରତରେ ସାହସ ଓ ସଂଗ୍ରାମର ପ୍ରତୀକ ଥିଲେ ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଜଣେ ସ୍ପଷ୍ଟବାଦୀ ଓ ଦୁଃସାହସିକ ସଂଗ୍ରାମୀ ଭାବରେ ସେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହୋଇ କଠୋର ନିର୍ଯାତନାର ସମ୍ମୁଖୀନ ହୋଇଥିଲେ ଏବଂ ସ୍ୱାଧୀନତାର ଉତ୍ତରକାଳରେ ମଧ୍ୟ କାରାଦଣ୍ଡ ଭୋଗିଥିଲେ । ଭାରତୀୟ ଗଣତାନ୍ତ୍ରିକ ଇତିହାସରେ ଏହା ଥିଲା ଏକ କଳଙ୍କିତ ଅଧ୍ୟାୟ ।

୧୯୭୫ରେ ଯେତେବେଳେ ଭାରତ ସରକାର ଏମର୍‌ଜେନ୍‌ସି ବା ଜରୁରିକାଳୀନ ପରିସ୍ଥିତି ଜାରି କଲେ, ଆମ ଗଣତନ୍ତ୍ର ବିପନ୍ନ ହେବା ଆଶଙ୍କାରେ ବିଜୁବାବୁ ତାହା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ଭାରତର ତତ୍‌କାଳୀନ ତୁଙ୍ଗ ନେତା ଜୟପ୍ରକାଶ ନାରାୟଣ ଓ ହରେକୃଷ୍ଣ ମହତାବଙ୍କ ସମେତ ଅନ୍ୟାନ୍ୟ ନେତାଙ୍କ ସହିତ ବିଜୁବାବୁ କାରାଦଣ୍ଡ ଭୋଗ କରିଥିଲେ ।

ପ୍ରାକ୍-ସ୍ୱାଧୀନତା କାଳରେ ଜଣେ ସୁଦକ୍ଷ ଓ ଦୁଃସାହସିକ ବିମାନଚାଳକ ଭାବରେ ବିଜୁବାବୁ ଭାରତରେ ସୁନାମ ଅର୍ଜନ କରିଥିଲେ । ୧୯୩୪ରେ ବି.ଏସ୍.ସି ପଢୁଥିବା ବେଳେ ସେ ପାଇଲଟ୍ ଭାବରେ ତାଲିମ ପାଇଥିଲେ । ୧୯୫୦ରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଅନୁରୋଧକ୍ରମେ ସେ ଇଣ୍ଡୋନେସିଆରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିବାବେଳେ,ଇଣ୍ଡୋନେସିଆ ପ୍ରଧାନମନ୍ତ୍ରୀ ସୁଲ୍‌ତାନ ସାହାରିୟର ଓ ତାଙ୍କର ସହଯୋଗୀ ମହମ୍ମଦ ହଟ୍ଟାଙ୍କୁ କୌଶଳକ୍ରମେ ଉଦ୍ଧାର କରି ବିମାନ ଯୋଗେ ଭାରତରେ ପହଞ୍ଚାଇ ପାରିଥିଲେ । କୃତଜ୍ଞ ଇଣ୍ଡୋନେସିଆ ରାଷ୍ଟ୍ର ଏଥିପାଇଁ ବିଜୁବାବୁଙ୍କୁ ୧୯୭୩ରେ ''ଭୂମିପୁତ୍ର' ଉପାଧି ପ୍ରଦାନ କରିଥିଲା । ବିଜୁବାବୁଙ୍କୁ କେତେ କୋଟି ଟଙ୍କାର ଉପହାର ଇଣ୍ଡୋନେସିଆ ସରକାର ପ୍ରଦାନ କରିଥିଲେ ହେଁ ପତ୍ନୀ ଜ୍ଞାନ ପଟ୍ଟନାୟକଙ୍କ ଅନୁରୋଧକ୍ରମେ ସେ ଟଙ୍କା ବିଜୁବାବୁ ଇଣ୍ଡୋନେସିଆବାସୀଙ୍କ ଉଦ୍ଦେଶ୍ୟରେ ଲୁଆଡ଼େ ଫେରସ୍ତ କରିଦେଇଥିଲେ । ସେହିପରି ୧୯୫୩ରେ ପଡ଼ୋଶୀ ନେପାଳରେ ଗଣତନ୍ତ୍ର ବିପନ୍ନ ହୋଇଯାଇ ଯେଉଁ ଗଣ ଆନ୍ଦୋଳନ ମୁଣ୍ଡ ଟେକି ଉଠିଥିଲା, ସେଥିରେ ହସ୍ତକ୍ଷେପ କରି ବିଜୁବାବୁ କେବଳ ଓଡ଼ିଶା କି ଭାରତରେ ନୁହେଁ, ଅନ୍ତର୍ଜାତୀୟ ସ୍ତରରେ ମଧ୍ୟ ସୁନାମ ଅର୍ଜନ କରିଥିଲେ ।

ଓଡ଼ିଶାର ଅତୀତ ନାମ 'କଳିଙ୍ଗ' ଶବ୍ଦକୁ ବିଜୁବାବୁ ଭଲ ପାଉଥିଲେ ଏବଂ ଅତୀତରେ କଳିଙ୍ଗ ବୀର ସମ୍ରାଟ୍ 'ଖାରବେଳ' ହିଁ ତାଙ୍କୁ ପ୍ରେରଣା ଦେଇ ଆସୁଥିଲେ । ଓଡ଼ିଶାକୁ ଅନ୍ତର୍ଜାତୀୟ କ୍ଷେତ୍ରରେ ସମ୍ମାନ ଆଣିଦେବାକୁ ତାଙ୍କର ଉପାର୍ଜିତ ଅର୍ଥ ସମେତ ଅନ୍ୟମାନଙ୍କ ଦାନରେ ୧୯୫୨ ମସିହାରେ ଜାତିସଂଘ ଜରିଆରେ ''କଳିଙ୍ଗ ପୁରସ୍କାର' ପ୍ରଚଳନ କରି ଅନ୍ତର୍ଜାତୀୟ ସ୍ତରର ଜଣେ ବୈଜ୍ଞାନିକଙ୍କୁ ସମ୍ମାନିତ କରିବାକୁ ଚାହୁଁଥିଲେ । ନୋବେଲ ପୁରସ୍କାର ତଳକୁ ଏପରି ଏକ ସମ୍ମାନଜନକ ପୁରସ୍କାର ଓଡ଼ିଶାର ସମ୍ମାନ ବୃଦ୍ଧିରେ ସହାୟକ ହୋଇଆସିଥିଲା । ୧୯୫୧ରେ ବିଜୁବାବୁ କଳିଙ୍ଗ ଟ୍ରଷ୍ଟ ଏଥିପାଇଁ ଆରମ୍ଭ କରିଥିଲେ । ଏହି ପୁରସ୍କାରର ପରିମାଣ ଏବେ ୪୦ ହଜାର ରହିଛି ଏବଂ ଏହାର ପରିମାଣକୁ ଏକ ଶହ ହଜାର ଡଲାର୍‌ରେ ପରିଣତ କରିବା ପାଇଁ ୟୁନେସ୍କୋ ନିକଟରେ ଟ୍ରଷ୍ଟକୁ ଅନୁରୋଧ କରିଛି ବୋଲି ଟ୍ରଷ୍ଟର ସମ୍ପାଦକ ଶ୍ରୀ ବିମଳ ଦାସଙ୍କଠାରୁ ଜାଣିବାକୁ ମିଳିଛି ।

୧୯୬୫-୧୯୬୬ ମସିହାର ଘଟଣାଟିଏ । ପୂର୍ବତନ ସାଂସଦ ତଥା ରାଜ୍ୟ ଅର୍ଥ କମିଶନଙ୍କ ପୂର୍ବତନ ଉପାଧ୍ୟକ୍ଷ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ଠାଏ ଲେଖିଛନ୍ତି-'ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହାୟତା ଲୋଡ଼ିଥିଲେ । ଶାସ୍ତ୍ରୀଜୀ ଓ ବିଜୁବାବୁଙ୍କ ସମ୍ପର୍କ ସେତେବେଳେ ଆଦୌ ଭଲ ନ ଥିଲା । ଶାସ୍ତ୍ରୀଜୀଙ୍କ ପ୍ରଧାନମନ୍ତ୍ରୀତ୍ୱକୁ ବିଜୁବାବୁ ବିରୋଧ କରିଥିଲେ । ତଥାପି ଶାସ୍ତ୍ରୀଜୀ ବିଜୁ ପଟ୍ଟନାୟକଙ୍କୁ ଡାକିଲେ ଭାରତର ସୁରକ୍ଷା ଦୃଷ୍ଟିରୁ । ସେ ତୁରନ୍ତ ଇଣ୍ଡୋନେସିଆ ଯାଇ ସେଠାରେ ଇଣ୍ଡୋନେସିଆର ପ୍ରେସିଡେଣ୍ଟଙ୍କୁ ଭେଟି ଆମେରିକାର ନୌବହର ଯେପରି ଭାରତ ବିରୋଧରେ ବ୍ୟବହୃତ ନ ହୁଏ , ସେଥିପାଇଁ ଅନୁରୋଧ କରିବାକୁ ଶାସ୍ତ୍ରୀଜୀ ଚାହିଁବାରୁ ବିଜୁବାବୁ ତୁରନ୍ତ ରାଜି ହୋଇଗଲେ ଓ ଇଣ୍ଡୋନେସିଆ ଯାତ୍ରା କଲେ । ଏକ ହୋଟେଲରୁ ସୁକର୍ଣ୍ଣଙ୍କୁ ସେ ଫୋନ୍ କଲେ, ତାଙ୍କୁ ଭେଟିବା ନିମନ୍ତେ । ରାଷ୍ଟ୍ରପତି ସୁକର୍ଣ୍ଣ ଉତ୍ତର ଦେଲେ, ଖୋଲା ଭାବରେ ଭେଟ ହେବା ସମ୍ଭବପର ନୁହେଁ ତେଣୁ ଏକ ଗୁପ୍ତ ଜାଗାରେ ଦୁହିଁଙ୍କର ଭେଟ ହେବାର ବ୍ୟବସ୍ଥା ହେଲା । ବିଜୁବାବୁ ଯେତେବେଳେ ଏ ପ୍ରସ୍ତାବ ତାଙ୍କ ପାଖେ ରଖିଲେ ଯେ ଆମେରିକାର ଯୁଦ୍ଧଜାହାଜ ଜାକର୍ତ୍ତାରୁ ଭାରତ ବିରୋଧରେ ନ ଛାଡ଼ିବାକୁ, ସୁକର୍ଣ୍ଣ ତାଙ୍କୁ ଉତ୍ତର ଦେଲେ ଏହା ସମ୍ଭବପର ନୁହେଁ । ଆମେରିକା ଏହାକୁ ସହ୍ୟ କରିପାରିବ ନାହିଁ । କିନ୍ତୁ ମୁଁ ଏତିକି କରିଦେଉଛି-ନୌବହର ଜାକର୍ତ୍ତା ବନ୍ଦର ଛାଡ଼ିବାକୁ ବିଳମ୍ବ

କରିଦେବ । ଏହା ତୁମ ସମ୍ମାନାର୍ଥେ ଭାରତ ଯୁଦ୍ଧ ପାଇଁ ଯେ ଖୁବ୍ ଲାଭପ୍ରଦ ହେବ ।' ତାହା ହିଁ ହେଲା । ଆମେରିକାର ନୌବହର ଆରବ ସାଗର ଓ ବଙ୍ଗୋପସାଗରରେ ପ୍ରବେଶ କରିବା ପୂର୍ବରୁ ଭାରତ ଯୁଦ୍ଧରେ ଜୟଲାଭ କଲା । (ଭୂମିପୁତ୍ର ବିଜୁ ପଟ୍ଟନାୟକ ସ୍ମୃତିରେ ତ୍ରିଲୋଚନ କାନୁନ୍‌ଗୋ, ପୃଷ୍ଠା ୨୦୦ରୁ ୨୦୬ ଯାଏଁ, ଅଧ୍ୟାପକ ବିଜୟ ରାଉତଙ୍କ ସଙ୍କଳିତ ସଂଗ୍ରାମୀ ପୁରୁଷ ପୁସ୍ତକରୁ ଉଦ୍ଧୃତ ) ।

୧୯୬୧ ଜୁନ୍ ମାସରେ ବିଜୁବାବୁ ପ୍ରଥମ ଥର ଲାଗି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ପୂର୍ବ ବର୍ଷ ଅର୍ଥାତ୍ ୧୯୬୦ ଗାନ୍ଧୀ ଜୟନ୍ତୀ ଅକ୍ଟୋବର ୨ ତାରିଖରୁ ଦୈନିକ ଓଡ଼ିଆ ସମ୍ବାଦପତ୍ର ''କଳିଙ୍ଗ' ପ୍ରକାଶ କରିଥିଲେ । ଖ୍ୟାତନାମା ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଓ କବି ମନମୋହନ ମିଶ୍ର ପ୍ରଭୃତି ଏହାର ସମ୍ପାଦକ ଥିଲେ । ଏବର ଅନେକ ବୟୋବୃଦ୍ଧ ସାମ୍ବାଦିକ ଓ କର୍ମଚାରୀ ଅତୀତରେ ଏହି ସମ୍ବାଦପତ୍ରରେ କାର୍ଯ୍ୟ କରିଥିଲେ ବୋଲି ଗର୍ବର ସହିତ କହିଥାନ୍ତି । ୧୯୬୧ ଜାନୁଆରୀ ୩ ତାରିଖରେ ବିଜୁବାବୁ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ପ୍ରସ୍ତାବିତ ପାରାଦୀପ ବନ୍ଦରର ନକ୍ସା ଦେଖାଇ ସ୍ୱୀକୃତି ହାସଲ କରିଥିଲେ । ପାରାଦୀପ ବନ୍ଦର ପ୍ରତିଷ୍ଠା ତ ହୋଇଥିଲା, ଏହାକୁ ଏକ ବୃହତ୍ ବନ୍ଦର କରିବା ଦିଗରେ ବିଜୁବାବୁଙ୍କର ଯଥେଷ୍ଟ ଅବଦାନ ଥିଲା । ୧୯୬୬ ମାର୍ଚ୍ଚ ୧୨ ତାରିଖରେ ପାରାଦୀପ ବନ୍ଦରରେ ଜାହାଜ ଚଳାଚଳର ଶୁଭାରମ୍ଭ ହୋଇଥିଲା ଏବଂ ସେହିବର୍ଷ ଅପ୍ରେଲ ୧୮ ତାରିଖରେ ପାରାଦୀପ ଏକ ବୃହତ୍ ବନ୍ଦରରେ ପରିଣତ ହୋଇଥିଲା । ସେତେବେଳକୁ ବିଜୁବାବୁ ମୁଖ୍ୟମନ୍ତ୍ରୀ ନ ଥିଲେ ବି ଓଡ଼ିଶାର ଲୋକେ ପାରାଦୀପ ବନ୍ଦର ଓ ପାରାଦୀପରୁ ସୁକିନ୍ଦା ପର୍ଯ୍ୟନ୍ତ ତ୍ୱରିତ ରାଜପଥ ନିର୍ମାଣ ଲାଗି ବିଜୁବାବୁଙ୍କୁ ହିଁ ସ୍ମରଣ କରିଥାଆନ୍ତି ।

୧୯୯୦ରେ ବିଜୁବାବୁ ଦ୍ୱିତୀୟ ଥର ଲାଗି ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ୧୯୭୭ରେ କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଗଠିତ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଖଣି ଓ ଇସ୍ପାତ ମନ୍ତ୍ରାଳୟର କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଦାୟିତ୍ୱ ନେଇଥିଲେ । ସେହି ସମୟରେ ସେ ଓଡ଼ିଶାରେ ଇସ୍ପାତ ଶିଳ୍ପର ବିକାଶ ସହିତ ଖଣିର ଉନ୍ନତି ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦେଇଥିଲେ । ମାତ୍ର ମୋରାରଜୀଙ୍କ ନେତୃତ୍ୱରେ ଗଠିତ କେନ୍ଦ୍ର ମନ୍ତ୍ରିମଣ୍ଡଳ ଭାଙ୍ଗିଯିବା ପରେ ପ୍ରଧାନମନ୍ତ୍ରୀ ଚରଣ ସିଂଙ୍କ ନେତୃତ୍ୱରେ୧୯୭୯ରେ ଗଠିତ ନୂତନ ମନ୍ତ୍ରିମଣ୍ଡଳରେ ବିଜୁବାବୁ ଖଣି ଓ ଇସ୍ପାତ ବିଭାଗ ସମେତ କୋଇଲା ମନ୍ତ୍ରାଳୟର କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଦାୟିତ୍ୱ ନେଇଥିଲେ ହେଁ ସେହି ମନ୍ତ୍ରିମଣ୍ଡଳର ପତନ ଅଳ୍ପଦିନ ମଧ୍ୟରେ ହୋଇଥିଲା । ୧୯୮୫ରେ ବିଜୁବାବୁ କେନ୍ଦ୍ରାପଡ଼ା ଲୋକସଭା ଓ ଭୁବନେଶ୍ୱର ବିଧାନସଭା ଆସନରୁ ଏକସଙ୍ଗେ ନିର୍ବାଚିତ ହୋଇଥିଲେ । ଏହାପରେ ବିଜୁବାବୁ ତା.୨୨.୦୩.୧୯୮୫ରିଖରେ ଲୋକସଭା ଆସନରୁ ଇସ୍ତଫା ଦେଇ ୧୯୮୫ ମାର୍ଚ୍ଚ ୨୨ରୁ ବିଧାନସଭାର ବିଧାୟକ ଭାବରେ ରହିଲେ । ତତ୍କାଳୀନ କଂଗ୍ରେସ ସରକାର ଓ ନିଜର ଜନତା ଦଳ ଚାହିଁବାରୁ ବିଜୁବାବୁ ବିରୋଧୀ ଦଳର ନେତା ହେବା ଲାଗି ରାଜି ହୋଇଥିଲେ । ୧୯୯୦ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ପୁନର୍ବାର ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଦ୍ୱିତୀୟଥର ଲାଗି ମୁଖ୍ୟମନ୍ତ୍ରୀ ହୋଇଥିଲେ । ଏହି ସମୟରେ ପ୍ରାୟ ୫ ବର୍ଷ କାଳ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବା ଭିତରେ ସ୍ୱାୟତ୍ତ ଶାସନରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଭାରତରେ ପ୍ରଥମଥର ପାଇଁ ଆରମ୍ଭ କରିଥିଲେ ।

ଏପରିକି ସରକାରୀ ଦପ୍ତରରେ ଖର୍ଚ୍ଚ କାଟ ପାଇଁ ସେ ଯେଉଁ ବ୍ୟବସ୍ଥା କରିଥିଲେ, କେନ୍ଦ୍ରରେ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ନେତୃତ୍ୱରେ ଗଠିତ କଂଗ୍ରେସ ସରକାର ୧୯୯୨ରେ ଏସବୁର ଅନୁସରଣ କରିଥିଲେ ।

ଏବେ ପୁରୁଣାକାଳିଆ 'ଯୋଜନା କମିଶନ' ବ୍ୟବସ୍ଥାକୁ କେନ୍ଦ୍ରର ନରେନ୍ଦ୍ର ମୋଦି ସରକାର ଭାଙ୍ଗି ଦେଇ ଗତ ୨୦୧୫ ଜାନୁଆରୀରେ 'ନିତି ଆୟୋଗ' ପ୍ରତିଷ୍ଠା କରିଛନ୍ତି । ଏହାଦ୍ୱାରା ସମାନୁପାତିକ ଭାବରେ ରାଜ୍ୟଗୁଡ଼ିକ ଅଂଶଧନ ପାଇ ନିଜ ନିଜ ରାଜ୍ୟର ଉନ୍ନତି କରାଇପାରିବେ । ମାତ୍ର ବିଜୁବାବୁଙ୍କ ଦୂରଦୃଷ୍ଟି ଯୋଗୁଁ ସମ୍ଭବତଃ ଏହି National Institute for Transforming India Ayog (ଭାରତର ରୂପାନ୍ତରୀକରଣ ପାଇଁ ଜାତୀୟ ପ୍ରତିଷ୍ଠାନ ଆୟୋଗ ବା 'ନିତି ଆୟୋଗ') ପ୍ରତିଷ୍ଠା ହୋଇପାରିଛି । ୧୯୯୦ ମସିହାରେ ବିଜୁବାବୁ ଦ୍ୱିତୀୟଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ

ହେବା ପରେ ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ନୂଆଦିଲ୍ଲୀରେ ଅନୁଷ୍ଠିତ ଜାତୀୟ ଉନ୍ନୟନ ପରିଷଦର National Development Council ବୈଠକରେ ବିଜୁବାବୁ ଯେଉଁ ବକ୍ତୃତା (ଏହାର ପ୍ରସ୍ତୁତି ପତ୍ର ବା Approach Paper)ଦେଇଥିଲେ, ତାହା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୈଠକ । ବିଜୁବାବୁ ଉଲ୍ଲେଖ କରିଥିଲେ-''ଜାତୀୟ ଉନ୍ନୟନ ପରିଷଦର ଏହା ଏକ ଗୁରୁତ୍ୱପୂର୍ଣ୍ଣ । ଅଷ୍ଟମ ପଞ୍ଚବାର୍ଷିକ ଯୋଜନାକୁ ଚୂଡ଼ାନ୍ତ ରୂପରେଖ ଦେବା ପାଇଁ ଆମେମାନେ ଏଠାରେ ସମବେତ ହୋଇଛୁଁ । ସାମାଜିକ ପରିବର୍ତ୍ତନ ଓ ରୂପାନ୍ତରଣ ପଥରେ ଏହା ହେବ ଏକ ଗୁରୁତ୍ୱପୂର୍ଣ୍ଣ ମାଇଲଖୁଣ୍ଟ । ବାସ୍ତବ ଦୃଷ୍ଟିକୋଣରୁ 'ପ୍ରସ୍ତୁତି ପତ୍ର' ଉପସ୍ଥାପିତ କରିଥିବାରୁ ମୁଁ ଯୋଜନା କମିଶନଙ୍କୁ ସାଧୁବାଦ ଜଣାଉଛି । ଏହା ହେବ ଭବିଷ୍ୟତ ଅଭିବୃଦ୍ଧିର 'ନୀଳ' ପାଣ୍ଡୁଲିପି । ଅବଶ୍ୟ ବିବିଧ ଭାବରେ ଏଥିରେ ଆଉ କେତେକ ବିଷୟ ସନ୍ନିବେଶିତ ହେବ । ବୈଷମ୍ୟ ଦୂର କରିବା ପାଇଁ ରୂପାୟନ ଯୋଜନାମାନ ସ୍ଥିର କରାଯିବ । ବିଭିନ୍ନ ଗୋଷ୍ଠୀର ଲୋକଙ୍କ ମନରୁ ଅତୃପ୍ତିର ଭୟ ଅପସାରିତ କରାଯିବ । ସେମାନଙ୍କ ମନରେ ଲକ୍ଷ୍ୟ ହାସଲ କରିବା ପାଇଁ ଆତ୍ମପ୍ରତ୍ୟୟ ଓ ଆତ୍ମସମ୍ମାନ ଭରି ଦିଆଯିବ । ଲକ୍ଷ୍ୟ ତଥା ଲକ୍ଷ୍ୟାନୁଧାବିତ ଅଭିବୃଦ୍ଧି ସମ୍ପର୍କରେ ନିଃସନ୍ଦେହ ଭାବରେ ଆମର ପର୍ଯ୍ୟାପ୍ତ ଅବଶୋସ ରହିଛି । ସେ ପୁଣି ପ୍ରଧାନମନ୍ତ୍ରୀ ଓ ଅନ୍ୟ ମୁଖ୍ୟମନ୍ତ୍ରୀମାନଙ୍କ ଗହଣରେ ଉଲ୍ଲେଖ କରିଥିଲେ, ''ମୁଁ ବିଶେଷ ଭାବରେ ପରାମର୍ଶ ଦେବି ଯେ ଅଭାବଗ୍ରସ୍ତ ଇଲାକା ଏବଂ ଅନଗ୍ରସର ରାଜ୍ୟ ପ୍ରତି ବିଶେଷ ଧ୍ୟାନ ଦିଆଯିବା ଉଚିତ । ସେସବୁ ସ୍ଥାନର ଲୋକେ ଆର୍ଥନୀତିକ ଅଭିବୃଦ୍ଧିର ପ୍ରଧାନ ସ୍ରୋତରେ ଯେପରି ସାମିଲ ହୁଅନ୍ତି, ସେଥିପାଇଁ ବିଶେଷ ପଦକ୍ଷେପ ନିଆଯିବା ଆବଶ୍ୟକ । ଦୃଷ୍ଟାନ୍ତ ସ୍ୱରୂପ, ୪୦ ବର୍ଷର ଯୋଜନା ଏବଂ ସମୃଦ୍ଧି ପରେ ଆମ ରାଜ୍ୟ ଏ ଯାବତ୍ ଅନ୍ୟ ରାଜ୍ୟର ଆର୍ଥିକ ଅଭିବୃଦ୍ଧି ହାର ତୁଳନାରେ ଆପେକ୍ଷିକ ଭାବରେ ଉନ୍ନତ ଅବସ୍ଥାରେ ପହଞ୍ଚି ନାହିଁ । ଏହି ବକ୍ତୃତାରେ ବିଜୁବାବୁ ଆହୁରି ମଧ୍ୟ ଉଲ୍ଲେଖ କରିଥିଲେ ''ଅନ୍ୟାନ୍ୟ ରାଜ୍ୟ ଅପେକ୍ଷା ଦାରିଦ୍ର୍ୟର ତୀବ୍ରତା ଓଡ଼ିଶାରେ ବେଶି ଅନୁଭୂତ ହୁଏ । ଏଥିପାଇଁ ଯଥାଯୋଗ୍ୟ ପ୍ରତିକାର ବ୍ୟବସ୍ଥା ଆବଶ୍ୟକ । ବିଶେଷ କରି କେନ୍ଦ୍ର ଓ ରାଜ୍ୟ ମଧ୍ୟରେ ଆର୍ଥିକ ବିକେନ୍ଦ୍ରିକରଣ ଆବଶ୍ୟକ । ମୋ ମତରେ ସମ୍ପ୍ରତି ପ୍ରବର୍ତ୍ତିତ ''ଗାର୍ଡ଼ଗିଲ ସୂତ୍ରରେ' ଅନଗ୍ରସରତାର ପୂର୍ଣ୍ଣ ସୂଚୀ ଅତିରିକ୍ତ ଭାବରେ ଗୃହୀତ ହେବା ଉଚିତ । ଉପଯୁକ୍ତ ଯୋଜନା ପ୍ରସ୍ତୁତ କରାଗଲେ ଆପେକ୍ଷିକ ଭାବରେ ଅନଗ୍ରସର ଏବଂ ଦାରିଦ୍ର୍ୟଗ୍ରସ୍ତ ଓଡ଼ିଶା ପରି ରାଜ୍ୟମାନେ ଏହାର ସୁଫଳ ଲାଭ କରିପାରିବେ । ('ସାମ୍ୟ ଓ ସମୃଦ୍ଧିର ନବଦିଗନ୍ତ' ଶୀର୍ଷକରେ ବିଜୁବାବୁଙ୍କ ବକ୍ତୃତାର କିୟଦଂଶ 'ଉତ୍କଳ ପ୍ରସଙ୍ଗ'ର ଅଗଷ୍ଟ ୧୯୯୦ ସଂଖ୍ୟାର ୧ରୁ ୩ ପୃଷ୍ଠାରୁ ଉଦ୍ଧୃତ)

ପ୍ରକୃତରେ ଯଦି କେହି ଓଡ଼ିଆ ଭାରତରେ ପ୍ରଧାନମନ୍ତ୍ରୀ ହେବାକୁ ଯୋଗ୍ୟ ବ୍ୟକ୍ତି ଥିଲେ, ସର୍ବାଗ୍ରେ ବିଜୁବାବୁଙ୍କ ନାମ ରହିବ । ଆମର ଦୁର୍ଭାଗ୍ୟ ଯେ ଆମେ ତାଙ୍କୁ ସେ ସ୍ତରକୁ ନେଇପାରିନାହୁଁ । ବିଜୁବାବୁ 'ଭାରତରତ୍ନ' ସମ୍ମାନ ଦେବାକୁ ଦାବି ହେଉଛି ଏବେ । ମୋ ମତରେ ଏପରି ଦାବି ମୂଲ୍ୟହୀନ । କାରଣ ବିଜବାବୁ ସତେ ଯେପରି 'ଭାରତରତ୍ନ' ଉପାଧିର ବହୁ ଊର୍ଦ୍ଧ୍ୱରେ ।

*(ତତ୍କାଳୀନ ଓଡ଼ିଶାର ସଂସ୍କୃତି ବିଭାଗ ୨୦୧୬ ମସିହା ମାର୍ଚ୍ଚ ୩ ତାରିଖରେ ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକଙ୍କର ପ୍ରଥମ ଜନ୍ମ ଶତବାର୍ଷିକ ଉତ୍ସବ ପାଳନ କରିଥିଲା । ଏହି ଉପଲକ୍ଷେ ଭୁବନେଶ୍ୱର ମ୍ୟୁଜିୟମ୍ ବିଲ୍ଡିଂରେ ''ବିଜୁ ବାବୁଙ୍କ ସ୍ୱପ୍ନର ଓଡ଼ିଶା'' ଶୀର୍ଷକ ବିଷୟବସ୍ତୁ ଉପରେ ଆଲୋଚନାଚକ୍ର ଆରମ୍ଭ ହୋଇଥିଲା । ତତ୍କାଳୀନ ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା, ଏହାକୁ ଉଦ୍‌ଘାଟନ କରିଥିଲେ ଓ ତତ୍କାଳୀନ ସଂସ୍କୃତି ବିଭାଗର ଶାସନ ସଚିବ ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ ଏଥିରେ ଅଧ୍ୟକ୍ଷତା କରିଥିଲେ । ଏହି ଆଲୋଚନାଚକ୍ରରେ ପ୍ରଥମ ଆଲୋଚକ ଭାବେ ଏ ଲେଖକ ପ୍ରଦାନ କରିଥିବା ବକ୍ତୃତାର ସମ୍ପାଦିତ ଅଂଶ ଏଠାରେ ପ୍ରଦତ୍ତ)*

ଭୁବନେଶ୍ୱର

# ଓଡ଼ିଶାର ଐତିହାସିକ ପୁରୁଷ ମଧୁସୂଦନ ଦାସ

ପ୍ରଫୁଲ୍ଲ କୁମାର ଦାସ

ଜନ୍ମଭୂମିର ଜନନାୟକ, ମାତୃଭୂମିର ମନ୍ତ୍ରଦାତା, ଉତ୍କଳଗୌରବ ମଧୁସୂଦନ ଦାସ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଉତ୍ସର୍ଗୀକୃତ ପ୍ରାଣ ପ୍ରତିଷ୍ଠାତା । ଓଡିଆ ଭାଷା ଭାଷୀ ଅଂଚଳକୁ ନେଇ ଏକ ନୂତନ ଓଡିଶା ପ୍ରଦେଶ ଗଠନ ହୋଇପାରିଲେ ଓଡିଆ ଜାତି ଓ ଓଡିଆ ଭାଷାର ସର୍ବାଙ୍ଗୀନ ଉନ୍ନତି ହୋଇପାରିବ । ଏହି ଉଦ୍ଦେଶ୍ୟ ନେଇ ସେ ୧୯୦୩ରେ ଉତ୍କଳ ସମ୍ମିଳନୀ ଗଠନ କରିଥିଲେ । ଜାତୀୟବାଦୀ ନେତା ମଧୁସୂଦନ ଦାସ ଜଣେ ବିଶିଷ୍ଟ ଆଇନଜ୍ଞ ତଥା ଦେଶପ୍ରାଣ ଜନନାୟକ ଭାବରେ ପ୍ରତିଷ୍ଠା ଲାଭ କରି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ସର୍ବଶ୍ରେଷ୍ଠ ଅବଦାନ ଛାଡିଯାଇଛନ୍ତି । ପରାଧୀନ ଭାରତରେ ଦେଶର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଓଡିଶା । ମଧୁବାବୁ ଯେଉଁ ଜନଜାଗରଣ ଓ ସାମ୍ବିଧାନିକ ବିଧିବ୍ୟବସ୍ଥା ମାଧମରେ ସଂଗ୍ରାମ ଜାରି ରଖିଥିଲେ, ତାହା ୧୯୦୩ରୁ ୧୯୩୫ ପର୍ଯ୍ୟନ୍ତ ସୁଦୀର୍ଘ ଥିଲା । ସେ ଏକାଧାରରେ ଜଣେ ସମାଜ ସଂସ୍କାରକ, ସାହିତ୍ୟ ସାଧକ, ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା, ଶିଳ୍ପ ଉଦ୍ୟୋଗୀ, କଳାପ୍ରେମୀ, ଶିକ୍ଷାବିତ୍, ଦାର୍ଶନିକ , ବ୍ୟବସ୍ଥାପକ ଓ ସମଗ୍ର ଭାରତବର୍ଷର ଜଣେ ଅଗ୍ରଗାମୀ ଚିନ୍ତାନାୟକ ଏବଂ ରାଷ୍ଟ୍ରନାୟକ ଭାବରେ ବେଶ୍ ପରିଚିତ । ସେ ଓଡିଶାର ପ୍ରଥମ ଗ୍ରାଜୁଏଟ୍, ପ୍ରଥମ ଓଡିଆ ମନ୍ତ୍ରୀ, ପ୍ରଥମ ଓଡିଆ ଏମ୍.ଏ., ପ୍ରଥମ ବିଲାତ ଯାତ୍ରୀ,ପ୍ରଥମ ଓଡିଆ ଓକିଲ ଏବଂ ମନ୍ତ୍ରୀପଦ ଅବୈତନିକ ଦାବିକରି ଇସ୍ତଫା ଦେବାରେ ଭାରତର ପ୍ରଥମ ମନ୍ତ୍ରୀ । ଛୋଟ ଲାଟ୍ ସଭା ଓ ବଡଲାଟ୍ ସଭାରେ ସେ ଥିଲେ ପ୍ରଥମ ଓଡିଆ ସଦସ୍ୟ । ସେ ସର୍ବପ୍ରଥମ ଭାରତୀୟ ଖ୍ରୀଷ୍ଟିଆନ୍ ମଣ୍ଡଳର ସଭାପତି ହୋଇଥିଲେ ।



ଓଡିଶା ଓ ଓଡିଆଜାତି ପାଇଁ ଆଇନଜୀବୀ ଭାବରେ ମଧୁସୂଦନ ଦାସଙ୍କ ଗୌରବୋଜ୍ଜ୍ୱଳ ଅବଦାନ ହେଉଛି ଇଂରେଜ ସରକାରଙ୍କ ଚକ୍ରାନ୍ତମୂଳକ ଆକ୍ରମଣରୁ ଶ୍ରୀଜଗନ୍ନାଥ ମନ୍ଦିରକୁ ସୁରକ୍ଷା ପ୍ରଦାନ ସହିତ ଗଜପତି ପରମ୍ପରାକୁ ସ୍ୱୀକୃତି ପ୍ରଦାନ କରିବା । ଓଡିଶାର କିଛି ଅଂଶ ପଶ୍ଚିମବଙ୍ଗ,ବିହାର ଓ ମଧ୍ୟପ୍ରଦେଶ ସହିତ ମିଶି ରହିଥିଲା । ସେ ଏହାକୁ ଏକତ୍ରିତ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ଏବଂ ନୂତନ ଓଡିଶା ପ୍ରଦେଶ ଗଠନ କରିବା ପାଇଁ କଂଗ୍ରେସରୁ ଅଲଗା ହୋଇ ଲଢେଇ କରିଥିଲେ । ମାତୃଭୂମିର ମହାନାୟକ ମଧୁବାବୁଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଇଂରେଜ ସରକାର ୧୯୦୪ରେ

ତାଙ୍କୁ ଭାରତ ସାମ୍ରାଜ୍ୟର ସଖା ଉପାଧିରେ ସମ୍ମାନିତ କରିଥିଲେ । ସେ ମଧ୍ୟ ୧୯୦୬ରେ ସାଇମନ୍ କମିଶନ ଓଡନେଲ୍ କମିଟି ଓ ହବାକ୍ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରି ଓଡିଆ ଭାଷାର ସୁରକ୍ଷା କରିଥିଲେ ଓ ୧୯୨୭ରେ ସାଇମନ କମିଶନ ଆଗରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦାବି କରିଥିଲେ । ଫଳରେ ୧୯୩୧ରେ ସରକାର ଓଡନେଲ କମିଟି ମାଧ୍ୟମରେ ସମୀକ୍ଷା କରାଯାଇ ୧୯୩୬ ଅପ୍ରେଲ ପହିଲାରେ ମଧୁବାବୁଙ୍କ ସ୍ୱପ୍ନର ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ହୋଇଥିଲା । କିନ୍ତୁ ମଧୁବାବୁ ନ ଥିଲେ ।

ମଧୁବାବୁ ମନ୍ତ୍ରୀ ଥିଲାବେଳେ ଲୋକାଲ ସେଲ୍ଫ ଗଭର୍ଣ୍ଣମେଣ୍ଟ ମ୍ୟୁନିସିପାଲିଟି ଆକ୍ଟ ପ୍ରଣୟନ କରିଥିଲେ । ମଧୁବାବୁ ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର ପ୍ରଥମ ପ୍ରବର୍ତ୍ତକ ଥିଲେ । ସେ ଓଡିଶାର ଚମଡା ଶିଳ୍ପର ବିକାଶ ପାଇଁ କଟକରେ ଉତ୍କଳ ଟ୍ୟାନେରୀ ପ୍ରତିଷ୍ଠା କରିଥିଲେ ଏବଂ ୧୯୨୩ରେ ସେ ନାରୀମାନଙ୍କୁ ଆଇନଜୀବୀ ବୃତ୍ତି ପ୍ରଦାନ କରିଥିଲେ । ଯାହା ଆଜିଯାଏଁ ଚାଲିଆସୁଛି । ବୀର ଓଡିଆକୁ ଏକ ଜାତି ବୋଲି ମଧୁବାବୁ ହିଁ ପରିଚୟ ଦେଇଥିଲେ । ଅବହେଳିତ, ନିଦ୍ରିତ ଓଡିଆଙ୍କୁ ଜାତୀୟତାର ନବ ଜାଗରଣ ମନ୍ତ୍ର ଦେଇ ଗଣଚେତନାର ଅଭ୍ୟୁଦୟ ଧ୍ୱନିରେ ଜାଗ୍ରତ କରିଥିଲେ । ଓଡିଆ ଏକ ଶାସ୍ତ୍ରୀୟ ଭାଷା, ଓଡିଶା ଓ ଓଡିଶା ସରକାର ଭାରତୀୟ ରାଜ୍ୟସଂଘର ଏକ ଅଂଶବୋଲି ସେ ହିଁ କହିଥିଲେ । ମଧୁବାବଙ୍କ କୀର୍ତ୍ତି ଓ କୃତିତ୍ୱକୁ ନେଇ ସୁରେନ୍ଦ୍ର ମହାନ୍ତି ''କୁଳବୃଦ୍ଧ'' ଶତାବ୍ଦୀର ସୂର୍ଯ୍ୟ ଉପନ୍ୟାସ ଲେଖିଥିଲେ । ମଧୁବାବୁ କହିଥିଲେ ''ମୋ ମାଆ ମୋର, ମୋ ମାଟି ମୋର । ମୋ ଜାତିର ପରିଚୟ ବୈଜୟନ୍ତୀ ମୁଁ ନ ଉଡାଇଲେ ଆଉ ଉଡେଇବ କିଏ ?'' ମଧୁବାବୁ ଓଡିଆଙ୍କୁ ଗୋଟିଏ ଜାତି ଓ ଉତ୍କଳ ଜନନୀଙ୍କୁ ସହସ୍ରଭୁଜା ବୋଲି ସମ୍ବୋଧନ କରିଛନ୍ତି ଏବଂ ଜାତିକୁ ନନ୍ଦିଘୋଷ ବୋଲି ତୁଳନା କରିଥିଲେ । ଯେଉଁ ପବିତ୍ର ମାଟି ଓ ବୀର ଜାତିର ସ୍ୱପ୍ନ ଦେଖିଥିଲେ ତାକୁ ସାକାର କରିବା ପାଇଁ ଉତ୍କଳ ସନ୍ତାନ କବିତାରେ ଗାଇ ଉଠିଥିଲେ – ''ଜନନୀର ଦେଖା କରିବାରେ ଇଚ୍ଛା ଯଦି ହୋଇଥାଏ ମନେ / ଉତ୍କଳର ମାଟି ଆଲିଙ୍ଗନ କରି ତା ଧୂଳି ଲେପ ବଦନେ'' । ''ଜାତି ନନ୍ଦିଘୋଷ ଚଳିବକି ଭାଇ ସ୍ୱାର୍ଥକୁ ସାରଥି କଲେ / ଟାଣେ କିରେ ଗାଡି ଦାନାର ତୋ ବଡା ଘୋଡା ମୁହେଁ ବନ୍ଧା ଥିଲେ ?'' । ଭାରତୀୟ ରାଜନୀତିରେ କେବଳ ମଧୁବାବୁ ହିଁ ସ୍ୱାର୍ଥମେଧ ଯଜ୍ଞର ଆହ୍ୱାନ ଦେଇଥିଲେ । ଭାରତୀୟତା ଓ ଓଡିଆତ୍ୱ ସମନ୍ୱୟର ମଣିଷ ମଧୁବାବୁ । ଓଡିଆ ଜାତିର ନାମ ନନ୍ଦିଘୋଷ । ସମଗ୍ର ଭାରତବର୍ଷ ତାର ବଡଦାଣ୍ଡ । ଭାରତରେ ଧର୍ମନିରପେକ୍ଷତା ଓ ଉଦାର ସମାଜବାଦର ମଞ୍ଜି ବୁଣିବାର ବହୁ ପୂର୍ବରୁ ରାଜନୈତିକ ତଥା ସାମାଜିକ କ୍ଷେତ୍ରରେ ସେ କଥାର ପ୍ରଥମ ଅକ୍ଷୟତୃତୀୟା ଯଦି କିଏ ପାଳନ କରିଥିଲା, ତେବେ ସେ ହେଉଛନ୍ତି ମଧୁସୂଦନ ଦାସ । ଓଡିଶାର ମାଟି , ଓଡିଆଜାତି ଓ ଓଡିଆ ଭାଷାକୁ ନେଇ ଯିଏ ବିଶ୍ୱ ବଡଦାଣ୍ଡରେ ଏକ ସ୍ୱତନ୍ତ୍ର ସୁବର୍ଣ୍ଣ ଇତିହାସ ସୃଷ୍ଟି କରିଗଲେ ସେ ଆଉ କେହି ନୁହନ୍ତି ସେ ମଧୁବାବୁ । ତାଙ୍କ ସଂଘର୍ଷମୟ ଜୀବନକୁ ବିଶ୍ଳେଷଣ କରି ଓଡିଆ କଥା ସାହିତ୍ୟର ସମ୍ରାଟ୍ ଫକୀର ମୋହନ ସେନାପତି କହିଛନ୍ତି– ''ଯେତେଦିନ ଥିବ ଓଡିଆ ଜାତି ଇତିହାସରେ / ଥିବ ତୁମ ନାମ ଅଙ୍କିତ ହେମମୟ ବକ୍ଷରେ ।'' ଉତ୍କଳ ଜନନୀ ଓ ଓଡିଶା ଇତିହାସର ସୌଭାଗ୍ୟ ଯେ, ସେ ଏପରି ଜଣେ ଦେଶପ୍ରାଣଙ୍କୁ ଜନ୍ମ ଦେଇ ନିଜର ଗର୍ଭଧାରଣ ଯନ୍ତ୍ରଣାକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଓଡିଆ ଜାତିର ଆନନ୍ଦ ଯଜ୍ଞରେ ହେମାଗ୍ନିକୁ ପ୍ରଜ୍ୱଳିତ କରିପାରିଛି । ବନ୍ଦେ ମାତରମ୍ ଧ୍ୱନି ଶୁଣାଯିବା ପୂର୍ବରୁ ଓଡିଶାରେ ମଧୁବାବୁ ଅବଦମିତ ବିଖଣ୍ଡିତ ମାନଚିତ୍ରହୀନ ଓଡିଆ ମାଟିକୁ ଶୁଣାଇଥିଲେ । ମାତୃଭୂମି ମାତୃଭାଷାର ମମତା ସୃଷ୍ଟିର ଗାନ ''ଉତ୍କଳ ସନ୍ତାନ'' । ଯାହା ଫଳରେ ୧୯୩୬ରେ ଓଡିଶାର ଭୌଗୋଳିକ ମାନଚିତ୍ର ଓ ଓଡିଆ ଭାଷାର ସ୍ୱୀକୃତି ମାନ୍ୟତା ମିଳିବା ପରେ ଏ ବୀର ଜାତିର ଆତ୍ମସମୀକ୍ଷା ଓ ଐତିହାସିକ ଗୌରବର ଅନୁସନ୍ଧାନ ଆରମ୍ଭ ହେଲା । ଓଡିଶା ଇତିହାସ ଓ ଓଡିଆ ସାହିତ୍ୟ ଅନୁପ୍ରେରିତ ହେଲା

ଏକ ସ୍ୱତନ୍ତ୍ର ପରିଚୟର ଉନ୍ମାଦନାରେ । କଳିଙ୍ଗ ଉତ୍କଳର ଯୁଗ ଯୁଗର ଆତ୍ମଲୀନ ସାଂସ୍କୃତିକ ସ୍ରୋତ ଜଳଗଙ୍ଗା ହୋଇ ବହିଲା । ଏ ମାଟି ଏ ମଣିଷ ଜାତି ନିଜେ ନିଜର ଭବିଷ୍ୟତ ଗଢ଼ିବା ପାଇଁ ସୁଯୋଗ ମିଳିବା ପରେ ନୂତନ ଭାବସତ୍ତା ବୁଦ୍ଧିଜୀବୀର କଳ୍ପନାକୁ ଉତ୍ତେଜିତ କଲା । ସେହି ଉତ୍ତେଜନାର ସୁମଧୁର ଫଳଶ୍ରୁତି ସୁସ୍ଥ,ସୁଖୀ,ସମୃଦ୍ଧ ଓଡ଼ିଶା । ମଧୁବାବୁ ଥିଲେ ଖାଣ୍ଟି ଓଡ଼ିଆ । ଓଡ଼ିଶାର ଓଡ଼ିଆତ୍ୱ ତାଙ୍କ ଅନ୍ତରରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ମୁକ୍ତ ପବନସମ ବହୁଥିଲା । ଫଳରେ ଓଡ଼ିଶାର ପ୍ରତିଟି ଧୂଳିମାଟି ତାଙ୍କ ଶରୀରରେ ଶତ ସିଂହର ଶକ୍ତି ସଂଚାର କରିଥିଲା । ଆଜି ପବିତ୍ର ଓଡ଼ିଶା ଦିବସରେ ସ୍ମରଣ କରିବା ମାତ୍ରେ ପ୍ରାଣରେ ଶିହରଣ ସୃଷ୍ଟି ହୁଏ । ଆଜି ପ୍ରତ୍ୟେକ ଓଡ଼ିଆ ନିଜର ଭବିଷ୍ୟତ ସ୍ୱପ୍ନ ଦେଖିବା ଓ ନିଜ ଭାଷାକୁ ନେଇ ସ୍ୱାଚ୍ଛନ୍ଦ୍ୟ ଜୀବନ ଜୀଇଁବା ପାଇଁ ଅପୂର୍ବ ସୁଯୋଗ ସୃଷ୍ଟି କରିଛି । ତାଙ୍କ ବାଲ୍ୟକାଳର କଥା ଗାଥାକୁ ଆଜି ବି ଇତିହାସ ଡାକିଡାକି କହୁଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସଂଗ୍ରାମର ବିସ୍ମୟ ବିଶ୍ୱକର୍ମା ମଧୁସୂଦନ ଦାସଙ୍କ ବିୟୋଗରେ କଥାକାର ସୁରେନ୍ଦ୍ର ମହାନ୍ତି କହିଥିଲେ ଓଡ଼ିଶାର ମୁଣ୍ଡ ଖସିପଡ଼ିଲା । କାରଣ ସେ ଥିଲେ ଓଡ଼ିଶା ମାଟିର ଓ ଜାତୀୟ ସଂଗ୍ରାମର ପ୍ରାଣ ସ୍ପନ୍ଦନ । ତାଙ୍କ ମତରେ ଓଡ଼ିଶାର ତିନୋଟି ଉଜ୍ଜ୍ୱଳ ବିନ୍ଦୁ ଗୌତମ ବୁଦ୍ଧ, ଶ୍ରୀଜଗନ୍ନାଥ ଓ ମଧୁସୂଦନ ଦାସ ।

ମଧୁସୂଦନ ଦାସ ସ୍ୱତନ୍ତ୍ର ଓଡ଼ିଶା ଭୂଖଣ୍ଡର ଏକ ସମୁଜ୍ଜ୍ୱଳ ନକ୍ଷତ୍ର । ତାଙ୍କର ପ୍ରତ୍ୟେକ କଥାରେ ଓଡ଼ିଆତ୍ୱ ଭାବ ଦେଖିବାକୁ ମିଳେ । ନିଜର ଜୀବନ ଓ ଜୀବିକାକୁ ବଳିଦାନ ଦେଇଯାଇ ଅମର ସ୍ୱାକ୍ଷର ଛାଡ଼ି ଯାଇଛନ୍ତି । ଯାହା ଆଜିଯାଏଁ ଉତ୍କଳର ଗର୍ବ ଓ ଗରିମାର ସ୍ୱତନ୍ତ୍ର କାହାଣୀ । ଉତ୍କଳ ସନ୍ତାନ ତାଙ୍କ ସଂଗ୍ରାମୀ ପ୍ରତିଭାର ବିଜୟ ଅଭିଯାନ,ଲୁପ୍ତ,ମୃତ,ହୃତ ଓଡ଼ିଆ ଜାତିକୁ ଏକତ୍ରିତ କରି ନୂତନ ଜୀବନ ଦାନ ଦେଇଛନ୍ତି । ଫଳରେ ସମଗ୍ର ଭାରତବର୍ଷରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ସୃଷ୍ଟି ହୋଇଥିଲା । ଅବହେଳିତ ଓଡ଼ିଶା, ଓଡ଼ିଆ ଭାଷା ଓ ଓଡ଼ିଆ ଜାତିକୁ ବିଶ୍ୱ ଦରବାରରେ ଉଚ୍ଚସ୍ଥାନ ଦେଇଥିଲେ । ଆମ ଜାଣିବାରେ ଆଉ ଜଣେ କେହି ପ୍ରତିଦ୍ୱନ୍ଦ୍ୱୀ ତାଙ୍କର ନାହାନ୍ତି । ଯିଏ ଏ ଓଡ଼ିଆ ଜାତି ପାଇଁ ଏତେ ଦରଦ ଓ ସଂଗ୍ରାମ କରିଯାଇଛନ୍ତି । ସିଏ କେବଳ ଜଣେ ସାଧାରଣ ଓଡ଼ିଆ ନୁହନ୍ତି । ସେ ଏ ମାଟିର ଓ ଏ ଭାଷାର ଅନନ୍ୟ ଅସାଧାରଣ ମୂର୍ତ୍ତିକାର । ଓଡ଼ିଶାର ସବୁଆଡ଼େ ଆଜି ପ୍ରତିଧ୍ୱନିତ ହେଉଛି ତାଙ୍କର ସ୍ୱର ଓ ଝଙ୍କାର । ଆଜି ଓଡ଼ିଶାର ପୂର୍ବାକାଶରେ ୮୮ତମ ଓଡ଼ିଶା ଦିବସ ରବିର ଆଗମନରେ ଏ ରାଜ୍ୟକୁ ଏପରି ଏକ ହିରଣ୍ମୟ ରୂପ ଦେବ, ଯାହା ଓଡ଼ିଆ ଜାତିର ରାଜନୈତିକ, ଅର୍ଥନୈତିକ, ସାମାଜିକ, ସଂାସ୍କୃତିକ ଓ ଆତ୍ମିକ ଭବିଷ୍ୟତ ପାଇଁ ଏକ ନୂତନ ଯୁଗର ଦିଗ ବାରେଣୀ ହେବ । ଯେଉଁ ମହାପୁରୁଷଙ୍କ ଶକ୍ତି, ସଂକଳ୍ପ,ସାଧନା, ସଂଗ୍ରାମ ଦ୍ୱାରା ଏ ରାଜ୍ୟ ସ୍ୱତନ୍ତ୍ର ପ୍ରଦେଶ ଭାବରେ ମାନ୍ୟତା ପାଇଲା । ସେ ଆମର ଚିର ସ୍ମରଣୀୟ ଓ ଚିର ବନ୍ଦନୀୟ । ସେ ବୁଝିଥିଲେ ଓଡ଼ିଶାର ଧୂଳି , ମାଟିଗୁଡ଼ିରେ ଇତିହାସ ଲୁଚିଛି । ତାକୁ ବୁଝି ଖୋଜି ବାହାର କରିବାକୁ ପଡ଼ିବ । ସେଥିପାଇଁ ସେ ସ୍ୱଦେଶ ପ୍ରୀତି ଓ ଭାଷାର ଶ୍ରୀମନ୍ଦିର ନିର୍ମାଣ କରିବା ପାଇଁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସଂଗ୍ରାମ କରିଥିଲେ । ତାଙ୍କୁ ଲକ୍ଷ୍ୟକରି ଓଡ଼ିଆ ଭାଷା ସାହିତ୍ୟର ସେନାପତି ଫକୀର ମୋହନ କହିଥିଲେ – ''ମାତୃଭୂମି/ମାତୃଭାଷା ଉଭୟେ ଜନନୀ/ ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।'' ୧୯୦୯ରେ ସେ ଓଡ଼ିଶା ଆଥ୍‌ଲେଟିକ ଆସୋସିଏସନ ପ୍ରତିଷ୍ଠା କରି ପ୍ରଥମେ ହକି ଓ ଫୁଟବଲ୍‌ର ପ୍ରାଣ ପ୍ରତିଷ୍ଠା କରିଥିଲେ । ମଧୁବାବୁଙ୍କ ଅହୋରାତ୍ର ଉଦ୍ୟମ ଫଳରେ ପରିଶେଷରେ ବିଛୁରିତ ଭାଷାଭାଷୀ ଅଂଚଳ ଭାଷା ଭିତ୍ତିରେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା । ଫଳରେ ଉତ୍ତୁଙ୍ଗ ଇତିହାସ ସୃଷ୍ଟି ହେଲା । ସେବେଠାରୁ ଆଜିଯାଏଁ ଓଡ଼ିଆମାନଙ୍କ ସାମାଜିକ, ଅର୍ଥନୈତିକ ଓ ସଂାସ୍କୃତିକ ଅଭିବୃଦ୍ଧି ଘଟିଲା । ଶ୍ରୀ ଦାସଙ୍କର ତୀକ୍ଷ୍ଣ ଚାତୁରୀ ଓ

ପ୍ରେରଣାଦାୟକ ବକ୍ତବ୍ୟ ଯୋଗୁଁ ଏହା ସମ୍ଭବ ହୋଇଥିଲା । ଏଥିପାଇଁ ଅବଶ୍ୟ ତାଙ୍କ ଦ୍ୱାରା ଆରମ୍ଭ ହୋଇଥିବା ସାପ୍ତାହିକ ଖବର କାଗଜ ''ଦି ଓଡିଆ''ର ଭୂମିକା ଯଥେଷ୍ଟ ସାହାଯ୍ୟ କରିଥିଲା । ସେ ଲେଜିସଲେଟିଭ୍ କାଉନ୍‌ସିଲର ସଦସ୍ୟ ଭାବେ ଇଂଲଣ୍ଡକୁ ଦୁଇଥର ସମୁଦ୍ର ଯାତ୍ରା କରିବାରେ ସେ ପ୍ରଥମ ଓଡିଆ ଓ ପ୍ରଥମ ଭାରତୀୟ ଥିଲେ । ବିଶ୍ୱର ଅନ୍ୟତମ ପୁରାତନ ସଭ୍ୟତାକୁ ସାଂସ୍କୃତିକ ଯାତ୍ରାର ପ୍ରମାଣ ବହନ କରି ଓଡିଶା ଆଜି ବହୁ ବିସ୍ମୟକର ଉପଲବ୍ଧିର ପ୍ରତିଶ୍ରୁତି ପ୍ରଦାନ କରିଆସୁଛି ।

ମଧୁବାବୁ ଓଡିଶାର କୀର୍ତ୍ତିମାନ ସୂର୍ଯ୍ୟ, ତାଙ୍କୁ କ୍ଳାନ୍ତ କରି, ମୁଗଧ କରି ଉତ୍କଳ ଜନନୀ ତାର ପ୍ରାପ୍ୟ ମାଗିନେଇଛି । ଛବିଳ ଉତ୍କଳର ବିପୁଳ ଉପତ୍ୟକାରେ ସେ ଯେଉଁ ସଂଗ୍ରାମର, ଆବେଗର ମଞ୍ଜି ବୁଣିଥିଲେ ତାହା ଆଜି ମହାଦ୍ରୁମ ହୋଇ ସମୃଦ୍ଧ ଓଡିଶାକୁ ପୁଷ୍ପିତ, ପଲ୍ଲବିତ କରୁଛି । ଓଡିଆ ଜାତି ଦାମ୍ଭିକତାର ପଦଧ୍ୱନିରେ ଚାଲିବାର ଓ ବଂଚିବାର ସୁଯୋଗ ପାଇଛନ୍ତି । ଓଡିଶା ଇତିହାସର ତାଙ୍କ ସଂଗ୍ରାମ ପ୍ରତି ସାହିତ୍ୟିକ ଓ ଐତିହାସିକମାନେ ବିଶେଷ ଯଥାର୍ଥ ଧ୍ୟାନ ଦେଇନାହାନ୍ତି । ଖଣ୍ଡ ବିଖଣ୍ଡିତ ଓଡିଶାର ଏକତ୍ରୀକରଣ, ଉତ୍କଳ ଜନନୀର ଦୁଃଖ ଦୁର୍ଦ୍ଦଶାର ଚିହ୍ନ ଓ ଚିତ୍ର ତାଙ୍କ ଶିରା ପ୍ରଶିରାରେ ଜଳଗଙ୍ଗା ସମ ପ୍ରବାହିତ ହେଉଥିଲା । ତାଙ୍କ କୃତି ଓ କୀର୍ତ୍ତିର ଇତିହାସ ଆଜି ବି ଅନ୍ଧକାରରେ ଆଚ୍ଛାଦିତ । ଭାରତର ସାମ୍ବିଧାନିକ ଇତିହାସରେ କୁଳବୃଦ୍ଧ ମଧୁସୂଦନ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନର ଆଦ୍ୟ ପ୍ରବକ୍ତା । ତାଙ୍କର ଦୂରଦୃଷ୍ଟି ଓ ଦିବ୍ୟ ଦୃଷ୍ଟି ଯୋଗୁଁ ଆମେ ଆଜି ନିଜସ୍ୱ ଭୂଖଣ୍ଡଟିଏ ପାଇଛେ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ



# ଭକ୍ତକବି ଜୟଦେବ ଓ ଗୀତଗୋବିନ୍ଦ

ଡାକ୍ତର ଦୀନବନ୍ଧୁ ମହାରଣା

ଭାରତୀୟ ସାହିତ୍ୟରେ ବା ସଂସ୍କୃତ ଭାଷାରେ ଯେଉଁ କେତେକ କାବ୍ୟ କାଳଜୟୀ ହୋଇପାରିଛି, ସେଥିମଧ୍ୟରେ ଭକ୍ତକବି ଜୟଦେବଙ୍କ ରଚିତ ରସାଳ କାବ୍ୟ 'ଗୀତଗୋବିନ୍ଦ' ଏକ କାଳଜୟୀ ମହାକାବ୍ୟ । ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି ମହାକାବ୍ୟ ବିଶ୍ୱ ସାହିତ୍ୟର ଏକ ଶ୍ରେଷ୍ଠ କୃତି । 'ଗୀତଗୋବିନ୍ଦ'ରେ ପରମ ପୁରୁଷ ଭଗବାନ ଶ୍ରୀକୃଷ୍ଣ ଓ ପରମ ପ୍ରେମମୟୀ ଶ୍ରୀରାଧାଙ୍କ ଅଲୌକିକ ପ୍ରେମତ୍ତ୍ୱ ଯେପରି ଢଙ୍ଗରେ ଉପସ୍ଥାପିତ ହୋଇଛି, ତାହା ପାଠକପାଠିକାଙ୍କୁ ବାସ୍ତବରେ ମନ୍ତ୍ରମୁଗ୍ଧ କରେ । 'ଗୀତଗୋବିନ୍ଦ' ହେଉଛି ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ଭିତରେ ଥିବା ମିଳନ ଓ ବିଚ୍ଛେଦର କାବ୍ୟ । ଏହି କାବ୍ୟ ଓ ଏହାର ସ୍ରଷ୍ଟା କବି ଜୟଦେବ ଓଡ଼ିଶାର ଘରେ ଘରେ ପରିଚିତ । ଜୟଦେବଙ୍କ ଜୀବନ ଚରିତକୁ ନେଇ ଅନେକ କାହାଣୀ ଏବେବି ଜନଶ୍ରୁତିରେ ରହିଛି । ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଜୟଦେବ ଓଡ଼ିଶାରେ ଏକ ପ୍ରାତଃସ୍ମରଣୀୟ ନାମ । ଏହି ମହାନ୍ ଭକ୍ତକବି ଉତ୍କଳୀୟ ସଂସ୍କୃତିର ଏକ ମହାର୍ଘ ସମ୍ପତ୍ତି ।

ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ବୈଶାଖ ମାସ ଶୁକ୍ଳପକ୍ଷ ଅକ୍ଷୟତୃତୀୟା ତିଥିରେ ଜନ୍ମ ହୁଏ ଏହି ମହାନ୍ କବିଙ୍କର ଖୋର୍ଦ୍ଧା ଜିଲ୍ଲାର ପ୍ରାଚୀନଦୀ କୂଳସ୍ଥ 'କେନ୍ଦୁବିଲ୍ୱ' ବା 'କେନ୍ଦୁଲି ଦେଉଳି' ଗ୍ରାମର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ । କବି ଜୟଦେବଙ୍କ ପିତାଙ୍କ ନାମ ଥିଲା 'ଭୋଜଦେବ' ଓ ମା'ଙ୍କ ନାମ ଥିଲା 'ରାଧାଦେବୀ' । ଭୋଜଦେବଙ୍କର ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଥିଲା । ସେ ଗାଁରେ ଗୋଟିଏ ପାଠଶାଳା କରି ପିଲାମାନଙ୍କୁ ପାଠ ପଢ଼ାଉଥିଲେ । ଜୟଦେବ ତାଙ୍କ ବାପାଙ୍କ ପାଖରେ ପାଠ ପଢ଼ି ପ୍ରଭୁଙ୍କ କୃପାରୁ ସଂସ୍କୃତରେ ପାରଦର୍ଶିତା ଲାଭ କରିପାରିଥିଲେ । ମାତ୍ର ୮ ବର୍ଷ ବୟସରେ ସେ ତାଙ୍କର ବାପାମାଆଙ୍କୁ ହରାଇଥିଲେ । ଏହି ପିଲାଟି ପ୍ରତି ଦୟାପରବଶ ହୋଇ ଭୋଜଦେବଙ୍କର ଜଣେ ବନ୍ଧୁ ତାଙ୍କ ଘରକୁ ନେଇଗଲେ । ତାଙ୍କର ପରାଶର ନାମକ ଗୋଟିଏ ପୁଅ ଥିଲା । ତା' ପରଠାରୁ ଜୟଦେବ ପରାଶରଙ୍କ ଘରୁ ପଳାଇଆସି ଗୋଟିଏ ଗାଁମୁଣ୍ଡ ଗଛତଳେ ଆଶ୍ରୟ ନେଲେ । ତାଙ୍କର ଖାଇବା ପିଇବାର କିଛି ଠିକ୍ ଠିକଣା ନଥିଲା । ତାଙ୍କୁ ଗ୍ରାମବାସୀ ଯିଏ ଯେତେବେଳେ ଯାହା ଖାଇବାକୁ ଦେଉଥିଲେ ସେ ଖାଉଥିଲେ । ସେ ସେଠାରେ ଅତ୍ୟନ୍ତ ଭକ୍ତିର ସହ ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ପିଲାଟିର ଭକ୍ତିଭରା ପ୍ରାର୍ଥନାରେ ତୁଷ୍ଟହୋଇ ଦିନେ ରାତିରେ ପ୍ରଭୁ ତାଙ୍କୁ ସ୍ୱପ୍ନରେ ନିର୍ଦ୍ଦେଶ ଦେଲେ ଯେ ପରଦିନ ପ୍ରାତଃକାଳରେ ତ୍ରିବେଣୀ ଘାଟକୁ ଯାଇ ନଦୀଜଳରୁ ଯାହା ପାଇବୁ ତାକୁ ଆଣି ପୂଜା କରିବୁ । ତଦନୁଯାୟୀ ପରଦିନ ସକାଳେ ସେ ତ୍ରିବେଣୀ ଘାଟକୁ ଯାଇ ନଦୀଜଳରେ ପ୍ରବେଶ କରି ସେଠାରୁ ଖୋଜି ଶ୍ରୀରାଧାକୃଷ୍ଣଙ୍କର ଯୁଗଳ ପ୍ରତିମା ପାଇଲେ । ମହାପ୍ରଭୁଙ୍କୁ ପାଇ ସେ ମହାଆନନ୍ଦରେ ତାଙ୍କର ସେହି ଗଛମୂଳକୁ ଫେରିଆସିଲେ । ସେ ସେଠାରେ ପରମ ଭକ୍ତିର ସହ ପୂଜାର୍ଚ୍ଚନା କରିବାକୁ ଲାଗିଲେ । ସେ ବାହ୍ୟ ଓ ଅନ୍ତଃ (ଆନ୍ତରିକତା ସହ) ରୂପରେ ନିଜକୁ ଈଶ୍ୱରଙ୍କଠାରେ

ସଂପୂର୍ଣ୍ଣ ରୂପେ ସମର୍ପଣ କରିଦେଲେ । ଏକଦା ସେହିବାଟ ଦେଇ କିଛି ଯାତ୍ରୀ ପୁରୀ ଯାଉଥିଲେ । ଜୟଦେବ ସେମାନଙ୍କ ସହିତ ପୁରୀ ଗଲେ । ମୁଣ୍ଡରେ ଥାଏ ତାଙ୍କର ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି । ସେ ଯାଇ ପୁରୀ ବଡ଼ଦାଣ୍ଡରେ ପହଞ୍ଚିଲେ । ବଡ଼ଦାଣ୍ଡସ୍ଥିତ ଏକ ବଟବୃକ୍ଷ ତଳେ ଆଶ୍ରୟ ନେଲେ ଏବଂ ତାଙ୍କର ପ୍ରିୟ ଠାକୁରଙ୍କୁ ସେଠାରେ ସ୍ଥାପିତ କରି ପୂଜାର୍ଚ୍ଚନାରେ ନିମଗ୍ନ ହେଲେ । ଏମିତି କିଛିଦିନ ବିତିଗଲା । ଦିନେ ରାତିରେ ସେ ସ୍ୱପ୍ନରେ ଦେଖିଲେ ଯେ ରାଧାମାଧବଙ୍କ ଦେହରୁ ଏକ ଜ୍ୟୋତି ବାହାରିଲା ଏବଂ ତାହା ଗୋଟିଏ ଯୁବତୀରେ ପରିଣତ ହୋଇ ଜୟଦେବଙ୍କୁ ମୁଣ୍ଡିଆମାରି ପୁଣି ରାଧାମାଧବଙ୍କ ଦେହରେ ଲୀନ ହୋଇଗଲା । ଜୟଦେବ ଏହି ସ୍ୱପ୍ନ ଦେଖି ପ୍ରଥମେ କିଛି ବୁଝି ପାରିଲେନି ।

ପରଦିନ ସକାଳେ ସେ ଠାକୁରଙ୍କ ପୂଜାର୍ଚ୍ଚନା ସାରି ବିଶ୍ରାମ ନେଉଥାନ୍ତି, ଦେବଶର୍ମା ନାମକ ଜଣେ ବ୍ୟକ୍ତି ତାଙ୍କର ପତ୍ନୀ ଓ କନ୍ୟାକୁ ସାଙ୍ଗରେ ଧରି ଜୟଦେବଙ୍କ ପାଖରେ ପହଞ୍ଚିଲେ । ଝିଅଟି ଜୟଦେବଙ୍କୁ ମୁଣ୍ଡିଆ ମାରିଲା । ଜୟଦେବ ନିଜ ଆଖିକୁ ବିଶ୍ୱାସ କରିପାରିଲେନି । ପୂର୍ବଦିନ ରାତିରେ ସ୍ୱପ୍ନରେ ଦେଖିଥିବା ସେହି ଝିଅଟି ତାଙ୍କୁ ପ୍ରଣାମ କରୁଛି । ପ୍ରଭୁଙ୍କର କ'ଣ ଲୀଳା ସେ ବୁଝିପାରିଲେନି । ସେ ଦେବଶର୍ମାଙ୍କୁ ସପରିବାର ବସିବାକୁ ଅନୁରୋଧ କଲେ ଏବଂ ଆସିବାର କାରଣ ପଚାରିଲେ । ଦେବଶର୍ମା ଜୟଦେବଙ୍କ ଆଗରେ ତାଙ୍କର ଅନୁଭୂତି ବର୍ଣ୍ଣନା କଲେ । ସେ ନିଃସନ୍ତାନ ଥିଲେ । ନିଜର ଦୁଃଖ ସବୁବେଳେ ଶ୍ରୀଜଗନ୍ନାଥଙ୍କୁ ଜଣାଇ ଆସୁଥିଲେ । ଥରେ ସେ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କୁ ଗୁହାରି କଲେ ଯେ ପ୍ରଭୁ ତୁମ କୃପାରୁ ଯଦି ପିଲାଟିଏ ହେବ, ମୁଁ ତାକୁ ତୁମର ସେବାପାଇଁ ଉତ୍ସର୍ଗ କରିଦେବି । ସତକୁ ସତ କିଛିଦିନ ପରେ ପ୍ରଭୁଙ୍କ ଆଶୀର୍ବାଦରୁ ତାଙ୍କର ଝିଅଟିଏ ହେଲା । ଝିଅଟିର ନାମ ଦେଲେ ପଦ୍ମାବତୀ । ଅପୂର୍ବ କାନ୍ତିଭରା ଝିଅଟିର ପ୍ରେମରେ ବାପା ମାଆ ଅନ୍ଧ ହୋଇ ପ୍ରଭୁଙ୍କ ପାଖରେ କରିଥିବା ମାନସିକତାକୁ ଭୁଲିଗଲେ । ଦିନେ ଦେବଶର୍ମାଙ୍କ ଘରକୁ ଜଣେ ସାଧୁମହାତ୍ମା ଆସିଥାନ୍ତି । ପଦ୍ମାବତୀ ତାଙ୍କୁ ପ୍ରଣାମ କରିବା ପରେ ସେ ଦେବଶର୍ମାଙ୍କୁ କହିଲେ ଯେ ତୁମ ଝିଅଟି ଦେବଅଂଶୀ । ସାଧୁମହାତ୍ମାଙ୍କ ଉକ୍ତ କଥାଶୁଣି ତାଙ୍କର ପୂର୍ବ ମାନସିକ କଥା ମନେପଡ଼ିଲା । କିନ୍ତୁ ପରବର୍ତ୍ତୀ ସମୟରେ ସେ କଥାଟି ଉପରେ ସେତେଟା ଗୁରୁତ୍ୱ ଦେଲେନି । ଏହାର କିଛିଦିନ ପରେ ପଦ୍ମାବତୀର ଦେହ ଭୀଷଣ ଖରାପ ହେଲା । ବହୁତ ପ୍ରକାର ଚିକିତ୍ସା ସତ୍ତ୍ୱେ ଅସୁସ୍ଥତା କ୍ରମଶଃ ବଢ଼ିବାକୁ ଲାଗିଲା । ସେ ନିଜର ଭୁଲ ବୁଝିପାରିଲେ । ସେ ପ୍ରଭୁଙ୍କ ପାଖରେ ଆକୁଳ ନିବେଦନ କଲେ ଝିଅଟିକୁ ସୁସ୍ଥ କରିଦେବା ପାଇଁ । ପ୍ରଭୁଙ୍କ କୃପାରୁ କିଛିଦିନ ଭିତରେ ପଦ୍ମାବତୀ ସଂପୂର୍ଣ୍ଣ ସୁସ୍ଥ ହୋଇଗଲେ । ପ୍ରାୟଶ୍ଚିତ ପାଇଁ ଦେବଶର୍ମା ସପରିବାର ପୁରୀ ଯିବାପାଇଁ ଯୋଜନା କରୁଥାନ୍ତି । ହଠାତ୍ ଦିନେ ରାତିରେ ସେ ସ୍ୱପ୍ନରେ ଦେଖିଲେ ଯେ ଜଣେ ବ୍ରାହ୍ମଣ ଆସି ତାଙ୍କୁ କହୁଛନ୍ତି ଯେ ବଡ଼ଦାଣ୍ଡରେ ଗୋଟିଏ ବଟବୃକ୍ଷ ତଳେ ଜୟଦେବ ନାମକ ଜଣେ ବ୍ରାହ୍ମଣ ଯୁବକ ଅବସ୍ଥାନ କରୁଛନ୍ତି । ସେ ପ୍ରଭୁ ଜଗନ୍ନାଥଙ୍କର ଜଣେ ବହୁତ ବଡ଼ ଭକ୍ତ । ତୁମେ ଯାଇ କନ୍ୟାକୁ ତାଙ୍କୁ ବିବାହ ଦିଅ– ଏହା ହିଁ ପ୍ରଭୁଙ୍କର ଇଚ୍ଛା । ଦେବଶର୍ମା ସମସ୍ତ କଥା ଜୟଦେବଙ୍କୁ କହିଲେ । କିନ୍ତୁ ଜୟଦେବ ତାଙ୍କୁ କହିଲେ, 'ମୋ ପାଖରେ ଘରସଂସାର କରିବା ପାଇଁ କିଛି ବି ସମ୍ବଳ ନାହିଁ । ନା ମୋର ଅଛି ଘର ନା ଆସବାବପତ୍ର । ଏହି ଅବସ୍ଥାରେ ବିବାହ କରିବାଟା କିପରି ସମ୍ଭବ ?' ଦେବଶର୍ମା ଓ ତାଙ୍କ ପତ୍ନୀ ପ୍ରଭୁଙ୍କ ଆଦେଶକୁ କିପରି ବା ଅମାନ୍ୟ କରିବେ । ତେବେ ଜୟଦେବ ପ୍ରଭୁଙ୍କ ନିର୍ଦ୍ଦେଶାନୁସାରେ ପଦ୍ମାବତୀଙ୍କୁ ଯଥାରୀତି ବିବାହ କରି ନିଜର ସେହି ଛୋଟ କୁଟୀରଟିରେ ଅବସ୍ଥାନ କଲେ । ଜୟଦେବ ଓ ପଦ୍ମାବତୀଙ୍କର ବୈବାହିକ ଜୀବନର ଅତ୍ୟନ୍ତ ସୁନ୍ଦର ଥିଲା । ଜୟଦେବ ପ୍ରଭୁଙ୍କ ପୂଜା କଲାବେଳେ ପଦ୍ମାବତୀ ଭଜନ ଗାଇଥାନ୍ତି । ପଦ୍ମାବତୀଙ୍କର ସହଯୋଗ ଓ ପ୍ରେରଣାରେ ଜୟଦେବ ରାଧାକୃଷ୍ଣଙ୍କ ଉପରେ କବିତା ରଚନା ଆରମ୍ଭ କରିବା ସହ ତାଙ୍କର ଶ୍ରେଷ୍ଠ କୃତି 'ଗୀତଗୋବିନ୍ଦ' ମଧ୍ୟ ରଚନା କଲେ ।

ଏହି ଗୀତିକାବ୍ୟ 'ଶ୍ରୀଗୀତଗୋବିନ୍ଦ' ଭଗବାନ ଶ୍ରୀକୃଷ୍ଣ (ମାଧବ) ଓ ଶ୍ରୀରାଧାଙ୍କୁ ଉପଜୀବ୍ୟ କରି ରଚିତ

ହୋଇଥିବାରୁ ଏହାର ପ୍ରତିଟି ପଦାବଳୀ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପିତ । ଭକ୍ତ ଭଗବାନଙ୍କର ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଦୁଇଦିଗରେ ଜ୍ଞାନ ରଖି ଉପାସନା କରିଥାଏ । ମାନମୟୀ ଶ୍ରୀରାଧାଙ୍କର ମାନଭଞ୍ଜନ କରିବାକୁ ଯାଇ ଶ୍ରୀକୃଷ୍ଣ କହିଲେ, 'ସ୍ମର ଗରଳଂ ଖଣ୍ଡନଂ ମମ ଶିରସି ମଣ୍ଡନଂ...?' ପ୍ରଭୁ କିପରି ମାଆଙ୍କୁ କହିବେ- 'ମମ ଶିରସି ମଣ୍ଡନଂ...?' ଏହାକୁ ଗ୍ରହଣ କରିପାରିଲେନି କବି ଜୟଦେବ । ଅଟକିଗଲା ତାଙ୍କର ଲେଖନୀର ଅବ୍ୟାହତ ଧାରା । ରାତି ପାହି ସକାଳ ହେଲା ତା' ପରେ ମଧ୍ୟାହ୍ନ ହେଲା- କବିଙ୍କର ଲେଖନୀ ସ୍ତବ୍ଧ । ଅବଶେଷରେ ସେ ପ୍ରଭୁଙ୍କ ପାଦରେ ସମସ୍ତ ସମର୍ପଣ କରିଦେଇ ପ୍ରାଚୀ ନଦୀକୁ ସ୍ନାନ କରିବାକୁ ଗଲେ । ଭକ୍ତର ଭାବଗ୍ରାହୀ ଭଗବାନ । ଭକ୍ତର ପାଦରେ ଆଘାତ ଲାଗିଲେ ପ୍ରଭୁଙ୍କୁ ଆଘାତ ଲାଗେ । ପ୍ରଭୁ ସ୍ୱୟଂ ଜୟଦେବଙ୍କ ରୂପରେ ଘରକୁ ଆସି ପଦ୍ମାବତୀଙ୍କୁ ଡାକିଲେ । ପଦ୍ମାବତୀ ପଚାରିଲେ ଯେ ସ୍ନାନ ନ କରି କ'ଣ ପାଇଁ ଫେରି ଆସିଲେ ? ସେ କହିଲେ ଯେ ଗୀତଗୋବିନ୍ଦରୁ ପଦୁଟିଏ ମନେ ପଡ଼ିଗଲାତ ଚାଲିଆସିଲି । ପଦ୍ମାବତୀ ତାଙ୍କୁ ଆଣି ପୋଥି ଓ ଲେଖନୀ ଦେଲାପରେ ସେ ସ୍ମିତହାସ୍ୟ ପ୍ରକଟ କରି ପୋଥିରେ ଲେଖିଦେଲେ- 'ଦେହି ପଦ ପଲ୍ଲବ ମୁଦାରଂ' ।

ଯାହା ଭକ୍ତ ଲେଖିପାରିନଥିଲେ ଭଗବାନଙ୍କର ମର୍ଯ୍ୟାଦା କ୍ଷୁଣ୍ଣ ହୋଇଯିବା ଆଶଙ୍କାରେ, ତାହା କିନ୍ତୁ ସ୍ୱୟଂ ଭଗବାନ ସଂପନ୍ନ କଲେ ଭକ୍ତର ମାନମର୍ଯ୍ୟାଦା ବୃଦ୍ଧି କରିବା ପାଇଁ । ପଦ୍ମାବତୀ ସଙ୍ଗେ ସଙ୍ଗେ ଖାଇବାକୁ ବାଢ଼ିଦେଲେ । ସେ ଖୁବ୍ ଅଳ୍ପ ଖାଇସାରି ଶୋଇବାକୁ ଗଲେ । ତା'ପରେ ପଦ୍ମାବତୀ ସ୍ୱାମୀଙ୍କ ପତ୍ରରେ ନିଜେ ଖାଇବା ପାଇଁ ବସିଲେ । ଠିକ୍ ଏତିକିବେଳକୁ ଜୟଦେବ ବାହାରୁ ଓଦାଲୁଗା ପିନ୍ଧି ଘର ଭିତରକୁ ଆସିଲେ । ପଦ୍ମାବତୀ ଖାଉଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ସ୍ୱାମୀ ନ ଖାଇବା ପର୍ଯ୍ୟନ୍ତ ଯିଏ ପାଣି ଟିକିଏ ବି ସ୍ପର୍ଶ କରନ୍ତିନି ତାଙ୍କର ଆଜି ଏ ପରିବର୍ତ୍ତନ । ସାମ୍ନାରେ ସ୍ୱାମୀଙ୍କୁ ବାହାରୁ ଓଦାଲୁଗା ପିନ୍ଧି ଆସୁଥିବାର ଦେଖି ପଦ୍ମାବତୀ ନିଜ ଆଖିକୁ ବିଶ୍ୱାସ କରିପାରିଲେନି । ସେ ସଙ୍ଗେ ସଙ୍ଗେ ଜୟଦେବଙ୍କ ଶୋଇବା ଘରକୁ ଧାଇଁଗଲେ । ଦେଖିଲେ ଘର ଭିତରେ କେହି ନାହାନ୍ତି, କିନ୍ତୁ ଫୁଲ, ତୁଳସୀ, ଚନ୍ଦନ ଓ କର୍ପୂର ବାସ୍ନାରେ ଘରଦ୍ୱାର ମହ ମହ ହୋଇ ବାସୁଛି । ଜୟଦେବ ପଦ୍ମାବତୀଙ୍କଠାରୁ ସବୁଶୁଣି ଆନନ୍ଦରେ ବିଭୋର ହୋଇ ମହାପ୍ରଭୁ ଲେଖିଥିବା ପୋଥିକୁ ଆଣି ବାରମ୍ବାର ପଢ଼ିବାକୁ ଲାଗିଲେ । ଆଖିରୁ ତାଙ୍କର ଆନନ୍ଦାଶ୍ରୁ ଝରି ପଡୁଥାଏ । ସେ ପଦ୍ମାବତୀଙ୍କୁ କୁଣ୍ଢାଇ ପକାଇ କହିଲେ ଯେ ତୁମେ ଧନ୍ୟ ହୋଇଗଲ ପ୍ରଭୁଙ୍କ ଦର୍ଶନ କରି । ଆଉ ନିଜ ହାତରେ ତାଙ୍କୁ ଖାଦ୍ୟ ବାଢ଼ିଦେଲେ । ତା'ପରେ ସେ ପଦ୍ମାବତୀ ଖାଇ ବସିଥିବା ପତ୍ରରେ ଥିବା ଅନ୍ନକୁ ଖାଇବାକୁ ଲାଗିଲେ । ପଦ୍ମାବତୀ ତାଙ୍କୁ ତାଙ୍କର ଅଇଁଠା ଖାଇବାକୁ  ବାରଣ କରିବାରୁ ସେ ଏହା ପ୍ରଭୁଙ୍କର ଅଇଁଠା କହି ଆନନ୍ଦରେ ଖାଇବାକୁ ଲାଗିଲେ । ତା'ପରେ ଏକଥା ଚାରିଆଡ଼େ ପ୍ରଚାର ହୋଇଗଲା । ଜୟଦେବଙ୍କର ରଚିତ 'ଗୀତଗୋବିନ୍ଦ'ର ନାଁ ଚାରିଆଡ଼େ ପ୍ରଚାରିତ ଓ ପ୍ରସାରିତ ହେଲା । ଧୀରେ ଧୀରେ ଗୀତଗୋବିନ୍ଦର ଆଦର ସାରା ରାଜ୍ୟରେ ବ୍ୟାପିଗଲା । ଦିନେ ଜଗନ୍ନାଥଙ୍କୁ ପୁଷ୍ପ ଯୋଗାଉଥିବା ଜଣେ ମାଳୀର ଝିଅ ଫୁଲ ତୋଳିବାକୁ ଗଲାବେଳେ ବାଟରେ ଗୀତଗୋବିନ୍ଦର କିଛିଟା ପଦାବାଳୀକୁ ଗାଇ ଗାଇ  ବାଇଗଣ କିଆରୀ ମଧ୍ୟଦେଇ ଯିବା ସମୟରେ ସ୍ୱୟଂ ପ୍ରଭୁ ତା'ର ପଶ୍ଚାତ୍‌ଵନ କରିଥିଲେ ତାଙ୍କର ପ୍ରିୟ ଗୀତଗୋବିନ୍ଦ ଶୁଣିବା ପାଇଁ । ପରଦିନ ସକାଳେ ପୂଜା କଲାବେଳେ ବଡ଼ପଣ୍ଡା ଦେଖିଲେ ଯେ ଶ୍ରୀଜଗନ୍ନାଥଙ୍କର ପୀତବସନ ଚିରିଯାଇଛି । କୌଣସି ଅଘଟଣ ଘଟିବା ଭୟରେ ଗଜପତି ଓ ବଡ଼ପଣ୍ଡା ଶ୍ରୀଜୀଉଙ୍କ ପାଖରେ ଧାରଣା ଦେଲେ । ସ୍ୱପ୍ନରେ ପ୍ରଭୁ ସେମାନଙ୍କୁ ଜଣାଇଲେ ଯେ ସେ ଗୀତଗୋବିନ୍ଦ ଶୁଣି ଶୁଣି ବାଇଗଣ କିଆରି ପାର ହେଲାବେଳେ ପୀତାମ୍ବରୀ ଚିରିଯାଇଥିବାର ଜଣାଇବାରୁ ସମସ୍ତ କଥା ସ୍ପଷ୍ଟ ହୋଇଗଲା । ତା'ପରଠାରୁ ଗୀତଗୋବିନ୍ଦ ସବୁଦିନ ଶ୍ରୀଜଗନ୍ନାଥଙ୍କ ପାଖରେ ବୋଲାଯିବାର ବ୍ୟବସ୍ଥା କରାଗଲା ।

ସୂର୍ଯ୍ୟବଂଶର ରାଜା ଗଜପତି ପୁରୁଷୋତ୍ତମଦେବଙ୍କର ସଂସ୍କୃତରେ ପାଣ୍ଡିତ୍ୟ ଥିଲା । ସେ 'ଗୀତଗୋବିନ୍ଦ'କୁ ଦେଖି ରଚନା କଲେ 'ଅଭିନବ ଗୀତଗୋବିନ୍ଦ' । ତା'ପରେ ତାହାକୁ ଜଗନ୍ନାଥଙ୍କ ପାଖରେ ପ୍ରତ୍ୟହ ଗାନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ତା'ପରେ ରାତିରେ ଶ୍ରୀଜଗନ୍ନାଥ ରାଜାଙ୍କୁ ସ୍ୱପ୍ନରେ କହିଲେ, 'ଜୟଦେବ ମୋର ପ୍ରିୟ ଭକ୍ତ, ତା' ରଚିତ 'ଗୀତଗୋବିନ୍ଦ' ନ ଶୁଣିଲେ ମୋର ନିଦ ହୁଏ ନାହିଁ । ତୁ ତାହାକୁ ବନ୍ଦ କଲୁ କାହିଁକି ?' ଗଜପତିଙ୍କର ନିଦ ଭାଙ୍ଗିଗଲା, ସେ ଶ୍ରୀମନ୍ଦିରକୁ ଦୌଡ଼ିଲେ । ନିଜର ଅପରାଧ ପାଇଁ ପ୍ରଭୁଙ୍କ ପାଖରେ ସାଷ୍ଟାଙ୍ଗ ପ୍ରଣିପାତ କରି କ୍ଷମାପ୍ରାର୍ଥନା କଲେ । ପ୍ରଭୁ କ୍ଷମା କରିଦେବା ସହ ତାଙ୍କ ରଚିତ 'ଅଭିନବ ଗୀତଗୋବିନ୍ଦ'ର କେତୋଟି ପଙ୍‌କ୍ତି ଗୀତଗୋବିନ୍ଦରେ ରଖିବା ପାଇଁ ନିର୍ଦ୍ଦେଶ ଦେଲେ' ଯାହାକି ପରବର୍ତ୍ତୀ ସମୟରେ କାର୍ଯ୍ୟକାରୀ କରାଯାଇଥିଲା ।

ଭକ୍ତକବି ଜୟଦେବ ଶେଷଜୀବନ ବୃନ୍ଦାବନରେ କଟାଇବା ପାଇଁ ଇଚ୍ଛାକରି ଶେଷଥର ପାଇଁ ନିଜ ଗାଁକୁ ଗଲେ । ସେଠାରେ ଅନେକ ତନ୍ତୀ ଥିଲେ । ସେମାନେ ଯେଉଁ ଲୁଗା ବୁଣୁଥିଲେ ତା'ର ଏକ ବିଶେଷତ୍ୱ ଥିଲା । ତେଣୁ ତାକୁ ବାନ୍ଧବୁଣା କହୁଥିଲେ । ଜୟଦେବଙ୍କର ଇଚ୍ଛା ହେଲା କି ଲୁଗାରେ ଗୀତଗୋବିନ୍ଦ ଲେଖି ପ୍ରଭୁଙ୍କୁ ଶ୍ରୀଗୁଣ୍ଡିଚାରେ ପିନ୍ଧାଇବେ । ବୁଣାଳିମାନେ ରାଜିହେବାରୁ ଜୟଦେବ ଗୀତଗୋବିନ୍ଦର ପ୍ରତ୍ୟେକ ପଙ୍‌କ୍ତି ବୋଲିଲେ ଓ ତଦନୁସାରେ ବୁଣାଳିମାନେ ବୁଣି ଚାଲିଲେ, ଗୀତ ବୋଲୁ ବୋଲୁ ଜୟଦେବ ମୂର୍ଚ୍ଛା ହୋଇଗଲେ । ବୁଣାଳିମାନେ ଅଟକି ଗଲେ । ସେହି ସମୟରେ କେହି ଜଣେ ଜୟଦେବଙ୍କ ଅଧା ବୋଲିଥିବା ପଦରୁ ଆରମ୍ଭ କରି ଆସି ପହଞ୍ଚିଲେ । ହାତରେ ଦୁଇଟି ସଢ଼େଇ ବଜାଇ ବଜାଇ ଗୀତଗୋବିନ୍ଦ ବୋଲିବାର ଦାୟିତ୍ୱ ନେଲେ । ଜୟଦେବଙ୍କ ନିଦ୍ରା ଭଙ୍ଗ ହେବା ବେଳକୁ ସେ ଅର୍ନ୍ତଦ୍ଧାନ ହୋଇଯାଇଥିଲେ । ଜୟଦେବ ଠାକୁରଙ୍କ ଦର୍ଶନ ନ ପାଇ ବଡ଼ ବ୍ୟଥିତ ହେଲେ । ଅଦ୍ୟାବଧି ସେ ସଢ଼େଇ ଦୁଇଟି ପ୍ରତୀକ ସ୍ୱରୂପ କେନ୍ଦୁବିଲ୍ୱରେ ପୂଜା ପାଉଛି । ଗୀତଗୋବିନ୍ଦର ବାରଟି ସର୍ଗକୁ ଚବିଶହାତ ଲୁଗାରେ ବୁଣାଯାଇ ମହାପ୍ରଭୁଙ୍କ ନିର୍ଦ୍ଦେଶରେ ଶ୍ରୀଗୁଣ୍ଡିଚାରେ ଠାକୁରଙ୍କଙ୍କୁ ଅର୍ପଣ କରାଗଲା ଓ ତାଙ୍କ ପିନ୍ଧିବାର ପରମ୍ପରା ସୃଷ୍ଟି ହେଲା । ଅମର କବି ଜୟଦେବଙ୍କର ବୃନ୍ଦାବନ ଧାମରେ ମକରମାସ ଚବିଶଦିନ ମହାପ୍ରୟାଣ ଘଟିଥିଲା । ସେ ତାଙ୍କର ଜୀବନ ଅବଧି ମଧ୍ୟରେ ଜନମାସରେ ଭକ୍ତି ଓ ଭଗବାନଙ୍କ ସମ୍ବନ୍ଧୀୟ ଐଶ୍ୱରୀୟ ଚେତନା ଜାଗ୍ରତ କରାଇଥିଲେ ।

ଜୟଦେବ ଏବଂ ଗୀତଗୋବିନ୍ଦ ଓଡ଼ିଶା ଓ ଭାରତବର୍ଷର ସୀମା ଅତିକ୍ରମ କରି ବିଶ୍ୱର ବହୁ ରାଷ୍ଟ୍ରରେ ବେଶ୍ ପ୍ରସିଦ୍ଧି ଲାଭ କରିପାରିଛି । ଗୀତଗୋବିନ୍ଦ ବର୍ଣ୍ଣିତ ଦଶାବତାର ସ୍ତୋତ୍ର ପ୍ରାୟ ସବୁ ବିଷ୍ଣୁ ମନ୍ଦିରରେ ଗାନ କରାଯାଇଥାଏ । ଦଶାବତାର ନୃତ୍ୟଶୈଳୀ ମଧ୍ୟ ଅନୁରୂପ ଭାବେ କଳାତ୍ମକ ସ୍ୱୀକୃତି ଲାଭ କରି ଦେଶ ବିଦେଶରେ ଉଚ୍ଚ ପ୍ରଶଂସିତ ହୋଇପାରିଛି । ଓଡ଼ିଆ ଜାତି ଯେତେଦିନ ପର୍ଯ୍ୟନ୍ତ ତିଷ୍ଠି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଜୟଦେବଙ୍କ ଜୀବନ କାହାଣୀ ଓ ଗୀତଗୋବିନ୍ଦ ଉତ୍କଳୀୟ ଜନମାନସକୁ ଉଦ୍‌ବୁଦ୍ଧ କରୁଥିବ, ଏହା ନିଃସନ୍ଦେହ ।

ଡି.ଲିଟ୍‌ପ୍ରାପ୍ତ ଆୟୁର୍ବେଦ ଗବେଷକ
୧୧୧, ମ୍ୟୁନିସିପାଲିଟି ମାର୍କେଟ୍ କମ୍ପ୍ଲେକ୍ସ
ଓଏମ୍‌ପି ଛକ, କଟକ-୩



## କ୍ରୀଡ଼ା ବିକାଶର ନୂଆ ସୂତ୍ରଧର ବିର୍ସା ମୁଣ୍ଡା ହକି ଷ୍ଟାଡିୟମ୍

# ହକି ବିଶ୍ୱକପ୍ ୨୦୨୩ : ଏକ ଉପଲବ୍ଧି

**ସୁଜିତ ରଞ୍ଜନ ସ୍ୱାଇଁ**

ବିଗତ କିଛି ବର୍ଷ ମଧ୍ୟରେ ଓଡ଼ିଶା ଅନେକ ପ୍ରଗତିର ପାହାଚ ଚଢ଼ିଚାଲିଛି । ଶିକ୍ଷାଠାରୁ ଆରମ୍ଭ କରି ସ୍ୱାସ୍ଥ୍ୟସେବା, କୃଷି, ଶିଳ୍ପ, ମହିଳା ସଶକ୍ତିକରଣ, ସାମାଜିକ ସୁରକ୍ଷା, ଗମନାଗମନ, ସୂଚନା ପ୍ରଯୁକ୍ତି ଆଦି ଅନେକ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରି ଓଡ଼ିଶା ଆଜି ଅନ୍ୟ ରାଜ୍ୟ ପାଇଁ ଉଦାହରଣ ସୃଷ୍ଟି କରିପାରିଛି । ଓଡ଼ିଶାର କଳା, ସଂସ୍କୃତି, ଐତିହ୍ୟ ଓ ପର୍ଯ୍ୟଟନର ମହକ ଅନେକ ଅଞ୍ଚଳକୁ ପରିବ୍ୟାପ୍ତ । ଏକଦା ଅଭାବ ଓ ଗରିବୀର ଚିତ୍ର ବହନ କରୁଥିବା ଓଡ଼ିଶା ଆଜି ସାରା ବିଶ୍ୱରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଏକ ସ୍ୱଚ୍ଛ ଓ ସ୍ଥିର ସରକାର କିଭଳି କିଛି ବର୍ଷ ମଧ୍ୟରେ ବିକାଶର ନଭଶ୍ଚୁମ୍ବୀ ଅଟ୍ଟାଳିକା ଗଢ଼ି ତୋଳିପାରେ, ତାହା ଆଜି ଓଡ଼ିଶା ପ୍ରତିପାଦିତ କରି ଦେଖାଇଛି । ଦିନେ ଆନ୍ଧ୍ର ଓ ବଙ୍ଗଳାର ପଡ଼ୋଶୀ ଭାବେ ପରିଚୟ ପାଉଥିବା ଓଡ଼ିଶା ଆଜି ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ।

ଆଜି ଓଡ଼ିଶା ସରକାର କ୍ରୀଡ଼ାକୁ ପ୍ରାଧାନ୍ୟ ଦେଇ ଦେଶବିଦେଶରେ ଅନେକ ସୁନାମ ଅର୍ଜନ କରିଛନ୍ତି । କ୍ରୀଡ଼ା ଭିତ୍ତିଭୂମିର ଉନ୍ନତିକରଣ ସହ ବିଭିନ୍ନ କ୍ରୀଡ଼ାକୁ ପ୍ରୋତ୍ସାହନର ଫଳସ୍ୱରୂପ ଓଡ଼ିଶା ଏକ କ୍ରୀଡ଼ା ହବ୍‌ର ମାନ୍ୟତା ପାଇଛି । ତେବେ ରାଉରକେଲାଠାରେ ନିବନିର୍ମିତ ବିର୍ସା ମୁଣ୍ଡା ହକି ଷ୍ଟାଡିୟମ୍ ଆମ ପାଇଁ ସବୁଠୁ ବଡ଼ ଉପଲବ୍ଧି । ୨୦୧୮ ହକି ବିଶ୍ୱକପ୍ ସମୟରେ କଳିଙ୍ଗ ଷ୍ଟାଡିୟମ୍‌ରେ ୧୫ ହଜାର ଦର୍ଶକ ବସିବା ଭଳି ହକି ଷ୍ଟାଡିୟମ୍ ଆମ ନିକଟରେ ଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ୨୦୨୩ରେ ପୁଣିଥରେ ହକି ବିଶ୍ୱକପ୍ ଓଡ଼ିଶାର ଭୁବନେଶ୍ୱର ଏବଂ ରାଉରକେଲାରେ ହେବ ବୋଲି ନିଷ୍ପତ୍ତି ନିଆଗଲା । ୨୦୧୮ ହକି ବିଶ୍ୱକପ୍‌ର ସଫଳ ଆୟୋଜନ ଆମକୁ ୨୦୨୩ ହକି ବିଶ୍ୱକପ୍ ଆୟୋଜନ ପାଇଁ ଏକ ସୁଯୋଗ ଆଣି ଦେଲା ବୋଲି କହିଲେ କିଛି ଭୁଲ ହେବ ନାହିଁ ।

ତେବେ ଖୁବ୍ କମ୍ ସମୟ ମଧ୍ୟରେ ରାଉରକେଲାରେ ଷ୍ଟାଡିୟମ୍ ନିର୍ମାଣ କରି ବିଶ୍ୱକପ୍ ହକି ଆୟୋଜନ କରିବା ରାଜ୍ୟ ସରକାରଙ୍କ ପାଇଁ ଏକ ବଡ଼ ଆହ୍ୱାନ ସଦୃଶ ଥିଲା । ପ୍ରକୃଷ୍ଟ ସ୍ଥାନ ଚିହ୍ନଟଠାରୁ ଆରମ୍ଭ କରି ଷ୍ଟାଡିୟମ୍ ନିର୍ମାଣ ନକ୍ସା ପ୍ରସ୍ତୁତି, ଟେଣ୍ଡର ମାଧ୍ୟମରେ ଉପଯୁକ୍ତ ସଂସ୍ଥା ଚୟନ ଆଦି ଅନେକଗୁଡ଼ିଏ ଆହ୍ୱାନ ରାଜ୍ୟ ସରକାରଙ୍କ ପାଖରେ ଥିଲା । ପୁଣି ଏକ ଆହ୍ୱାନ ଥିଲା ବିଭିନ୍ନ ଦେଶରୁ ଆସୁଥିବା ବିଦେଶୀ ଖେଳାଳିଙ୍କୁ ଷ୍ଟାର ହୋଟେଲ ସୁବିଧା ଥିବା ଏକ ଉପଯୁକ୍ତ ସ୍ଥାନରେ ରହଣିର ବ୍ୟବସ୍ଥାକୁ ସୁନିଶ୍ଚିତ କରିବା । ବିଶ୍ୱକପ୍ ସ୍ତରୀୟ ଯେକୌଣସି ବଡ଼ ଇଭେଣ୍ଟବେଳେ ଖେଳାଳି ଓ ଅଫିସିଆଲଙ୍କ ସହିତ ଅନେକ ବିଦେଶୀ ଦର୍ଶକ ମଧ୍ୟ ଆସିବାର ସମ୍ଭାବନା ଥାଏ । ଏହାକୁ ଦୃଷ୍ଟିରେ ରଖି ଆବଶ୍ୟକ ସଂଖ୍ୟକ ହୋଟେଲ, ଲଜ୍, ପାନ୍ଥନିବାସ ଆଦିର ଆବଶ୍ୟକତା ରହିଥାଏ । ସେହିପରି ଭେନ୍ୟୁ ସ୍ଥଳକୁ ସଡ଼କ, ରେଳ ଏବଂ ଆକାଶ ମାର୍ଗରେ ଭଲ

ଯୋଗାଯୋଗ ବ୍ୟବସ୍ଥା ରହିବା ମଧ୍ୟ ଜରୁରୀ । ଏସବୁକୁ ଦେଖିଲେ ଅନେକଗୁଡ଼ିଏ ଭିତ୍ତିଭୂମିକୁ ବିକଶିତ କରି ଖେଳ ଆୟୋଜନ କରିବାକୁ ପଡ଼ିବ । ଗୋଟିଏ ପକ୍ଷରେ କହିବାକୁ ଗଲେ ସବୁ ସୁବିଧା ସୁଯୋଗ ଥାଇ ବିଶ୍ୱକପ୍ ଭେନ୍ୟୁ ସ୍ଥଳୀ ଏକ ବିଶ୍ୱସ୍ତରୀୟ ସହର ହୋଇଥିବା ଆବଶ୍ୟକ । ହକି ବିଶ୍ୱକପ୍‌ର ସଫଳ ଆୟୋଜନ ଓଡ଼ିଶା ପାଇଁ ସମ୍ମାନର ବିଷୟ । ଏହାକୁ ଦୃଷ୍ଟିରେ ରଖି କ୍ରୀଡ଼ା ଓ ଯୁବସେବା ବିଭାଗ ଯୋଜନା ପ୍ରସ୍ତୁତ କରି ଏହାକୁ ସାକାର କରିବା ଲାଗି ବିଭିନ୍ନ ପର୍ଯ୍ୟାୟରେ ରାଜ୍ୟ ଏବଂ କେନ୍ଦ୍ର ସରକାରଙ୍କ ବିଭାଗଗୁଡ଼ିକ ସହିତ ଯୋଗସୂତ୍ରରେ ରହି ସବୁ କାର୍ଯ୍ୟକୁ ଦ୍ରୁତଗତିରେ ଆଗେଇ ନେଇଥିଲା । ଯାହାଫଳରେ ମାତ୍ର ୧୫ ମାସ ସମୟ ଅବଧି ମଧ୍ୟରେ ଓଡ଼ିଶାର ଷ୍ଟିଲ ସିଟି ରାଉରକେଲାରେ ୨୦ ହଜାରରୁ ଊର୍ଦ୍ଧ୍ୱ ସିଟ୍ କ୍ଷମତା ବିଶିଷ୍ଟ ବିଶ୍ୱର ସର୍ବବୃହତ୍ ହକି ଷ୍ଟାଡିୟମ୍ ନିର୍ମାଣ ସଂପୂର୍ଣ୍ଣ ହୋଇପାରିଲା । ମୋଟ ୪୫ ଏକର ପରିମିତ ଜାଗାରେ ନିର୍ମିତ ବିର୍ସା ମୁଣ୍ଡା ହକି ଷ୍ଟାଡିୟମ୍‌ରେ ମୁଖ୍ୟ ଷ୍ଟାଡିୟମ୍ ସହିତ ହକି ଅଭ୍ୟାସ କେନ୍ଦ୍ର ଏବଂ ବିଶ୍ୱକପ୍ ଗ୍ରାମ ଅନ୍ତର୍ଭୁକ୍ତ । ଅଭ୍ୟାସ କେନ୍ଦ୍ରରେ ଅଭ୍ୟାସ ପିଚ୍ ସହିତ ୪ଟି ଖେଳାଳି ଚେଞ୍ଜିଙ୍ଗ୍ ରୁମ୍, ଜଳ ଚିକିତ୍ସା କେନ୍ଦ୍ର, ଅତ୍ୟାଧୁନିକ ଜିମ୍, ଶୌଚାଳୟ ଆଦି ଅନ୍ତର୍ଭୁକ୍ତ ।

ସେହିପରି ଷ୍ଟାଡିୟମ୍ ପରିସରରେ ନିର୍ମିତ ବିଶ୍ୱକପ୍ ଗ୍ରାମ କୌଣସି ବଡ଼ ତାରକା ହୋଟେଲଠାରୁ କମ ନୁହେଁ । ଏଠାରେ ଖେଳାଳିଙ୍କ ରହିବା ପାଇଁ ସବୁପ୍ରକାର ବିଶ୍ୱସ୍ତରୀୟ ସୁବିଧା ଥାଇ ୩ଟି ବିଲ୍ଡିଂରେ ୨୨୫ଟି କୋଠରି ନିର୍ମିତ ହୋଇଛି । ପ୍ରତ୍ୟେକ କୋଠରିରେ ୨ ଜଣ ଖେଳାଳି ରହିବାର ବ୍ୟବସ୍ଥା ରହିଛି ଏହି କ୍ରୀଡ଼ା ଗ୍ରାମରେ । ଏଥି ସହିତ ବିଶ୍ୱକପ୍ ଗ୍ରାମରେ ସ୍ୱିମିଂପୁଲ୍, ଜିମ୍, ଖେଳାଳି ଓ ଅଫିସିଆଲଙ୍କ ପାଇଁ ଅଲଗା ଅଲଗା ଡାଇନିଂ, ଚିତ୍ତବିନୋଦନ ପାଇଁ ସ୍ନୁକର, ବିଲିଆର୍ଡସ୍, ଟେବୁଲ୍ ଟେନିସ୍ ଆଦି ଖେଳର ବନ୍ଦୋବସ୍ତ ରହିଛି । ପୂର୍ବରୁ ଏଠାରେ ଝାରସୁଗୁଡ଼ା ବିମାନବନ୍ଦର ରହିଥିବାବେଳେ ଖେଳାଳିମାନଙ୍କ ଯିବାଆସିବାକୁ ସୁବନ୍ଦୋବସ୍ତ କରିବା ଉଦ୍ଦେଶ୍ୟରେ ରାଉରକେଲା ବିମାନବନ୍ଦର କାର୍ଯ୍ୟକ୍ଷମ କରାଯାଇଥିଲା । ଏଥି ସହିତ ରାଉରକେଲା ସହରର ସମସ୍ତ ରାସ୍ତାଘାଟର ଉନ୍ନତି ଓ ସୌନ୍ଦର୍ଯ୍ୟକରଣକୁ ପ୍ରାଧାନ୍ୟ ଦିଆଯାଇଥିଲା । କହିବାକୁ ଗଲେ ପୂରା ରାଉରକେଲା ସହର ବିଶ୍ୱକପ୍ ସମୟରେ ନବବଧୂ ପରି ସଜେଇ ହୋଇଥିଲା । ରାଉରକେଲାର ନୂଆ ରୂପକୁ ସ୍ଥାନୀୟ ବାସିନ୍ଦାଙ୍କ ସମେତ ଦେଶବିଦେଶରୁ ଆସିଥିବା ବିଶିଷ୍ଟ ବ୍ୟକ୍ତିବିଶେଷ ସମସ୍ତେ ପ୍ରଶଂସା କରିଥିଲେ । ରାଜ୍ୟ ସରକାରଙ୍କ ପକ୍ଷରୁ ରାଉରକେଲାରେ ନିର୍ମାଣ ହୋଇଥିବା ବିର୍ସା ମୁଣ୍ଡା ହକି ଷ୍ଟାଡିୟମ୍ କେବଳ ବିଶ୍ୱକପ୍‌କୁ ସଫଳ କରିନାହିଁ ବରଂ ସମଗ୍ର ଓଡ଼ିଶାକୁ କ୍ରୀଡ଼ା ତଥା ପର୍ଯ୍ୟଟନ ମାନଚିତ୍ରରେ ଏକ ନୂଆ ପରିଚୟ ଆଣିଦେଇଛି । ଏବେ ଓଡ଼ିଶା ସମଗ୍ର ବିଶ୍ୱ କ୍ରୀଡ଼ାଜଗତ ଲାଗି ଏକ ନୂଆ ସମ୍ଭାବନା ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୂଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର



# ଗାନ୍ଧୀବାଦୀ ଜନନେତା ଓ ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀ

**କାହ୍ନୁ ବାଳକୃଷ୍ଣ ବିହାରୀ**

ମହାତ୍ମା ଗାନ୍ଧୀଙ୍କ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଯେଉଁମାନେ ଦେଶ ଓ ଜାତିର ସେବାରେ ନିଜକୁ ତିଳ ତିଳ କରି ଉତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ । ସେମାନଙ୍କ ତ୍ୟାଗପୂତ ଜୀବନ ଓ ଉତ୍ସର୍ଗୀକୃତ ସେବା ମନୋଭାବ କୋଟି କୋଟି ଭାରତୀୟଙ୍କୁ ଗଭୀର ଭାବେ ଉଦ୍‌ବୁଦ୍ଧ କରିଛି ।



ଜଣେ ତ୍ୟାଗୀ କର୍ମୀ, ପରୋପକାରୀ, ଦେଶପ୍ରେମୀ, ନିରହଙ୍କାରୀ, ଜନସେବୀ, ଆଜୀବନ ବ୍ରହ୍ମଚାରୀ ଓ ନିରାମିଶାଷୀ (ଶାକାହାରୀ) ମହମ୍ମଦ ବାଜୀଙ୍କର ଜନ୍ମ ନବରଙ୍ଗପୁର ମାଟିର ଏକ ମୁସଲମାନ ପରିବାରରେ । ତାଙ୍କ ପିତା ମହମ୍ମଦ ଖାସିମ୍ ନବରଙ୍ଗପୁର ସ୍ଥିତ ତତ୍କାଳୀନ ସବ୍ ଆସିଷ୍ଟାଣ୍ଟ ଏଜେଣ୍ଟ (ସବ୍ କଲେକ୍ଟର) ଅଫିସରେ ମୁଖ୍ୟ କିରାଣୀ ରୂପେ କାର୍ଯ୍ୟକରୁ ଥିଲେ । ତାଙ୍କର ବଂଶଧର ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ କୁରପାମ ରାଜାଙ୍କ ଅମଳରେ କାମ କରୁଥିଲେ । ୧୯୧୦ ସାଲ୍‌ରେ କୁରୁପାମ୍ ତ୍ୟାଗ କରି ଜୟପୁରକୁ ଚାଲି ଆସିଲେ । ତାଙ୍କ ମାତାଙ୍କ ନାମ ଚାନ୍ଦବିବି ।

ନବରଙ୍ଗପୁରରେ ଶିକ୍ଷାରମ୍ଭ କରି ଅଷ୍ଟମ ଶ୍ରେଣୀ ଯାଏଁ (ସେତେବେଳେ ନବରଙ୍ଗପୁରରେ ହାଇସ୍କୁଲ ନଥିଲା), ଜୟପୁର ହାଇସ୍କୁଲରେ ଦଶମ ଯାଏଁ ପଢ଼ିଥିଲେ । ପାଠ ପଢୁଥିବା ସମୟରେ ଜୟପୁରରେ ତ୍ୟାଗୀ ଓ ଦେଶପ୍ରେମୀମାନଙ୍କ ସହ ମିଶି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ସତ୍ୟାଗ୍ରହୀ ହୋଇ ଜେଲ ଯାଇ ଗାନ୍ଧିଙ୍କୁ ସାକ୍ଷାତ୍ କରି ତାଙ୍କଠାରୁ ଉପଦେଶ ଶୁଣିବାକୁ ଅହରହ ତାଙ୍କ ସାଙ୍ଗସାଥୀମାନଙ୍କୁ କହୁଥିଲେ । ନିଜ ପାଖରେ ଥିବା ପୁରୁଣା ଜାପାନ ମଡ଼େଲର ସାଇକେଲଟିକୁ ୩୫ ଟଙ୍କାରେ ବିକ୍ରୀ କରି ଏବଂ ବିଧବା ଭଉଣୀ ନିକଟରୁ କିଛି ଟଙ୍କା ନେଇ ଓ ଜଣେ ସାଙ୍ଗ ନିକଟରୁ ସାଇକେଲ ନେଇ ରାୟପୁରକୁ ସାଇକେଲରେ ଯାଇ, ରାୟପୁରରୁ ୱାର୍ଦ୍ଧା ସେବାଶ୍ରମକୁ ରେଳ ଯୋଗେ ଯାଇଥିଲେ । ତା. ୦୫.୦୧.୧୯୪୦ ଦିନ ମହାତ୍ମା ମୌନବ୍ରତ କରିଥିବାରୁ ଭେଟ ହୋଇ ନ ପାରି ସେଠାକାର ଯମୁନାଲାଲଙ୍କ ଧର୍ମଶାଳାରେ ରହିଥିଲେ । ତା.୦୬-୦୧-୧୯୪୦ରିଖ ମଙ୍ଗଳବାର ଦିନ ଗାନ୍ଧିଙ୍କ ସେକ୍ରେଟାରୀ ମହାଦେବ ଭାଇଙ୍କ ମାଧ୍ୟମରେ ଗାନ୍ଧୀଙ୍କ ସହ ଭେଟ ହୋଇପାରିଥିଲା ।

ମହାତ୍ମା ଗାନ୍ଧୀଙ୍କ ସହ ପ୍ରଥମ ସାକ୍ଷାତକାର ନେଇ ମହମ୍ମଦ ବାଜୀ କହନ୍ତି 'ଗାନ୍ଧି କହିଲେ, କାହିଁକି ଏଠାକୁ ଆସିଛ? ମୁଁ କହିଲି ଆପଣଙ୍କ ଦର୍ଶନ ପାଇଁ' । ଗାନ୍ଧି କହିଲେ ତୁମ ମୋ ଭିତରେ କିଛି ପ୍ରଭେଦ ନାହିଁ । ତୁମର

ଦୁଇଟି ହାତ ଦୁଇଟି ଗୋଡ଼ ଅଛି, ମୋର ମଧ୍ୟ ଅଛି । ଗୋଟିଏ ମୁଣ୍ଡ ଅଛି । ମୋ ପାଖରେ ଥିବା ସତ୍ୟାଗ୍ରହ ପତ୍ରଟି ଦେଖାଇଲି । ସେ କହିଲେ ଜେଲ୍ ଯିବାକୁ ପଡ଼ିବ, ଲାଠି ମାଡ଼ ଖାଇବାକୁ ହେବ । ପ୍ରାଣବଳି ଦେବାକୁ ପଡ଼ିବ, ତୁମ୍ ଯବାନ୍ ହୋ, ଏତିକି କହି ମୋ ପିଠିରେ ହାତ ମାରିଲେ । ଉକ୍ତ ସତ୍ୟାଗ୍ରହ ପତ୍ରରେ ସେ ଲେଖିଦେଲେ ହିଂସା କରନାହିଁ । ଧନ ସଂପତ୍ତି ମନୁଷ୍ୟକୁ ସାହାଯ୍ୟ କରେନାହିଁ । ଏହା ହିଁ ଆମ ସତ୍ୟାଗ୍ରହର ମୂଳମନ୍ତ୍ର ଥିଲା । ଏସବୁ ମୋତେ ହିନ୍ଦୀରେ କହିଲେ । ତା ପର ଦିନ ମୁଁ ଘରକୁ ଫେରି ଆସିଲି ।

କୋରାପୁଟ ଜିଲ୍ଲାର ପ୍ରଥମ ତିନିଜଣ ସତ୍ୟାଗ୍ରହୀ ହେଲେ (୧) ସଦାଶିବ ତ୍ରିପାଠୀ (୨) ମହମ୍ମଦ ବାଜୀ (୩) ଜଗନ୍ନାଥ ତ୍ରିପାଠୀ । ଏହି ତିନି ଜଣ ଜାତୀୟ ସଂଗ୍ରାମର ବାର୍ତ୍ତା ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରିବା ଓ ପ୍ରଚାରପତ୍ର ବାଣ୍ଟିବା ହେତୁ ଅନେକଥର ଗିରଫ ହୋଇଥିଲେ । ଏହି ତିନିଜଣଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପରବର୍ତ୍ତୀ ସମୟରେ କୋରାପୁଟ ଜିଲ୍ଲାରୁ ରାଧାକୃଷ୍ଣ ବିଶ୍ୱାସରାୟ, କୃଷ୍ଣଚନ୍ଦ୍ର ସାନ୍ତ୍ରା ପାତ୍ର, ସଦାଶିବ ବେହେରା, ଡମ୍ବରୁ ତଲିଆ, ନରସିଂହ ସାହୁ, ନରସିଂହ ପଣ୍ଡା, ମାଧବ ପ୍ରଧାନୀ, ବିଶ୍ୱନାଥ ମହାପାତ୍ର, ରବି ସିଂ ମାଝୀ, ସନୁ ମାଝୀ ପ୍ରଭୃତି ଗିରଫ ହୋଇ କୋରାପୁଟ ଜେଲରେ କାରାବରଣ ହୋଇଥିଲେ ।

ତା. ୨୨.୧୧.୧୯୩୬ରିଖ ଦିନ ପଣ୍ଡିତ ନୀଳକଣ୍ଠ ଦାସ ଓ ଦିବାକର ପଟ୍ଟନାୟକ ମହମ୍ମଦ ବାଜୀଙ୍କ ଘରେ ଆତିଥ୍ୟ ଗ୍ରହଣ କରିଥିଲେ ଓ ସେହିଦିନ ହିଁ ରାମ ମନ୍ଦିର ପାର୍ଶ୍ୱବର୍ତ୍ତୀ ସ୍ଥାନରେ ଏକ ବିରାଟ ସଭା ହୋଇଥିଲା । ତହିଁ ପରଦିନ ଅର୍ଥାତ୍ ତା.୨୩.୧୧.୧୯୩୬ରିଖ ସୋମବାର ଦିନ ଏକ ବିରାଟ ପଟୁଆର ସହ ସାପ୍ତାହିକ ହାଟ ନିକଟସ୍ଥ ସଭାରେ ହଜାର ହଜାର ଲୋକ ଏକତ୍ରିତ ହୋଇଥିଲେ । ଶ୍ରୀଯୁକ୍ତ ଲକ୍ଷ୍ମୀଚନ୍ଦ୍ର ଦାସ ଓ ମହମ୍ମଦ ବାଜୀ ଏହାର ଆୟୋଜକ ଥିଲେ, ଯାହାକି ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ଆଖିରୁ ନିଦ ହଜାଇ ଦେଇଥିଲା ।

ମହାତ୍ମା ଗାନ୍ଧୀଙ୍କ ଆଇନ ଅମାନ୍ୟ ଆନ୍ଦୋଳନ ଆହ୍ୱାନରେ ସାରା ଭାରତରେ ବିଦ୍ରୋହର ବାର୍ତ୍ତା ପ୍ରଚାରିତ ହୋଇଥିଲା । ମହମ୍ମଦ ବାଜୀ ସହ ସ୍ୱାଧୀନତା ସଂଗ୍ରାମୀମାନେ ଗ୍ରାମ ଗ୍ରାମ ବୁଲି ଲଙ୍ଗଳ ପାନ୍ଥ, ବେଠି କାମ, ଡୋଲିବୁହା କାମ, ଯୁଦ୍ଧଚାନ୍ଦା ନ ଦେବା, ଯୁଦ୍ଧ ପାଇଁ ଲୋକ ନ ପଠାଇବା ଇତ୍ୟାଦି ଲୋକମାନଙ୍କୁ ପ୍ରବର୍ତ୍ତାଇ ଥିଲେ ।

ଜୟପୁର ନିକଟସ୍ଥ ନୁଆପୁଟ ଗ୍ରାମରେ ୧୯୩୮ ସାଲରେ ରାଧାକୃଷ୍ଣ ବିଶ୍ୱାସରାୟ ନିଜ ଜମିରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ଏକ ତାଲିମ କେନ୍ଦ୍ର ଖୋଲିଲେ । ପ୍ରଥମରେ ୨୫୦ ଜଣ ଓ ପରେ ୪୫୦ ଜଣ କର୍ମୀ ତାଲିମ ପାଇ ସ୍ୱାସ୍ଥ୍ୟରକ୍ଷା, ଗ୍ରାମ ସଫେଇ, ବ୍ୟାୟାମ ଶିକ୍ଷା, ଲାଠି ଚାଳନା, ଅକ୍ଷରାଭ୍ୟାସ, ସତ୍ୟ ଓ ଅହିଂସା ବ୍ରତ ସହ 'କାଟି ପିନ୍ଧ, କୁଟି ଖାଅ' ଓ ବିଦେଶୀ ବସ୍ତ୍ର ବର୍ଜନ ପ୍ରଭୃତି ସଚେତନତା ସୃଷ୍ଟି କରାଇଥିଲେ । ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର ସମୟରେ ଗ୍ରାମ ଗ୍ରାମ ବୁଲି, ଯେଉଁ ଗ୍ରାମରେ ଯାହା ମିଳିଲା ଅର୍ଥାତ୍ ମାଣ୍ଡିଆ ଜାଉ, ଆମ୍ବଟାକୁଆ ଜାଉ, ଖୁଦ ଜାଉ ଇତ୍ୟାଦି ଖାଇ ଦିନ କାଟିବାକୁ ପଡୁଥିଲା ।

ତା. ୧୨.୦୮.୧୯୪୨ରିଖ ମହମ୍ମଦ ବାଜୀ ନିଜ ଗୃହର ମେର୍ଦା ଭିତରେ ପେଟ୍ରୋମାକ୍ସ ଲାଇଟ୍ ଜଳାଇ ସାଇକ୍ଲୋଷ୍ଟାଇଲ କରି ପ୍ରଚାରପତ୍ର ଛପାଇବା ସମୟରେ ବ୍ରିଟିଶ୍ ପୋଲିସ୍ ଜାଣିପାରି ତାଙ୍କ ଘର ଚଢ଼ାଉ କରିଥିଲେ । ବ୍ରିଟିଶ ପୋଲିସ୍‌ର ବୁଟ୍ ମାଡ଼ରେ ମହମ୍ମଦ ବାଜୀଙ୍କର ପଞ୍ଜରା ହାଡ଼ ଭାଙ୍ଗି ଯାଇଥିଲା । ମହମ୍ମଦ ବାଜୀଙ୍କୁ ଛଅ ମାସ ନବରଙ୍ଗପୁର ଜେଲ୍‌ରେ କାରାବାସ ଓ ୬ ମାସ କୋରାପୁଟ ଜେଲ୍‌ରେ କାରାବାସ ଭୋଗ କରିବାକୁ ପଡ଼ିଥିଲା । ଆହତ ପଞ୍ଜରା ହାଡ଼ର ଉପଯୁକ୍ତ ଚିକିତ୍ସା ସକାଶେ କଟକ ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା ।

ଝରିଗାଁ ବ୍ଲକ୍ ଅନ୍ତର୍ଗତ ବିଜାପୁରଠାରେ ଏକ ଗାନ୍ଧିନଗର ପ୍ରତିଷ୍ଠା ଅବସରରେ ମା' ରମାଦେବୀ, ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ ପ୍ରଭୃତି

ଯୋଗଦେଇ ଏକ ବିରାଟ ସଭାର ଆୟୋଜନ କରାଯାଇଥିଲା ଓ ସେହି ସଭାରେ ଆମ ଦେଶକୁ, ଆମ ଗ୍ରାମକୁ, ଆମ ଘରକୁ ଆମେ ହିଁ ସଜାଡ଼ିବାକୁ ପଡ଼ିବ ବୋଲି ଆଲୋଚନା କରାଯାଇଥିଲା ।

ବ୍ୟାସକବିଙ୍କ ପଂକ୍ତିକୁ ଉଦ୍ଧାର କରି ସେ କହନ୍ତି :-

''ଉତ୍କଳେ ଜନମ ଉତ୍କଳେ ମରଣ
ଉତ୍କଳ ଅନ୍ନରେ ଜୀବନ ଧାରଣ ।''

୧୯୫୨ ଠାରୁ ୧୯୫୮ ସାଲ ଯାଏଁ ଭୂଦାନ ଆନ୍ଦୋଳନରେ ବିନୋବା ଭାବେଙ୍କ ସହ ସକ୍ରିୟ ଯୋଗଦାନ କରି ଗ୍ରାମ ଗ୍ରାମ ବୁଲି ବହୁତ ଜମିଥିବା ଲୋକଙ୍କଠାରୁ ଜମି ମାଗି ଆଣି ଜମି ନଥିବା ଲୋକଙ୍କୁ ବଣ୍ଟନ କରାଯାଇଥିଲା । ତାଙ୍କ ମତ ଥିଲା ଗ୍ରାମଗୁଡ଼ିକ ଲୋକଙ୍କ ଶ୍ରମ ଦାନରେ ହିଁ ନିର୍ମାଣ କରାଯିବା ଉଚିତ । ନିଜର ୧୪ ଏକର ଜମିକୁ ଭୂଦାନ ଆନ୍ଦୋଳନରେ ଦାନ କରିଥିଲେ । ନିଶା ନିବାରଣ ବିଷୟରେ ଗାଁ ଗାଁ ପଦଯାତ୍ରା କରି ମଦ ଖାଇବା ଦ୍ୱାରା ସ୍ୱାସ୍ଥ୍ୟହାନି, ଅର୍ଥହାନି, ପରିବାର ଅଶାନ୍ତି ଇତ୍ୟାଦି ବିଷୟରେ ସଚେତନତା କରାଉଥିଲେ । ଗାଁ ଗାଁରେ ଚାଟଶାଳୀରେ ପିଲାମାନଙ୍କୁ ପାଠ ପଢ଼ାଇବା, ନୈଶ୍ୟ ବିଦ୍ୟାଳୟ ଖୋଲି ଆବାଳବୃଦ୍ଧବନିତାଙ୍କୁ ଶିକ୍ଷାପ୍ରଦାନ କରିବା, ରାସ୍ତା ନିର୍ମାଣ କରିବା, ଜଙ୍ଗଲ ସୃଷ୍ଟି କରିବା, ରାସ୍ତାକଡ଼ରେ ଫଳ ବୃକ୍ଷ ଲଗାଇବା, ପୋଖରୀ ଓ କୂଅ ଖୋଳିବା ପ୍ରଭୃତି ଉନ୍ନୟନ କାମରେ ସଦା ସର୍ବଦା ନିୟୋଜିତ ରହୁଥିଲେ ।

ମହମ୍ମଦ ବାଜୀ ଜୀବନରେ ସମ୍ମାନ ଚାହିଁ ନାହାନ୍ତି, କାହାଠାରୁ ନମସ୍କାର ପାଇବା ନିମନ୍ତେ ଆଶା କରି ନାହାନ୍ତି । କିନ୍ତୁ ସେ ହୋଇଛନ୍ତି ଆଜି ସବୁଦିନ ପାଇଁ ସମସ୍ତଙ୍କ ଚିର ନମସ୍ୟ । ସମଗ୍ର ଭାରତବର୍ଷରେ ତାଙ୍କପରି ଜଣେ ସାଧକ, ତପସ୍ୱୀ, ସେବକ, ତ୍ୟାଗୀ, ନିଃସ୍ୱାର୍ଥପର କର୍ମୀ ବିରଳ । ସେ ଆଜି ନାହାନ୍ତି । ଦେଶମାତୃକାର ସେବା କରି ୧୦୩ ବର୍ଷ ବୟସରେ ଗତ ତା.୨୭.୦୬.୨୦୧୯ରିଖ ଗୁରୁବାର ଦିନ ନବରଙ୍ଗପୁର ସୁନାରି ସାହିସ୍ଥିତ ବାସଭବନରେ ତାଙ୍କର ପରଲୋକ ହୋଇଯାଇଛି । ମୃତ୍ୟୁ ଖବର ଜାଣିବା ପରେ ସମଗ୍ର ଜିଲ୍ଲାରେ ଶୋକାକୁଳ ପରିବେଶ ସୃଷ୍ଟି ହୋଇଥିଲା ।

ଭାରତମାତା ପାଇଁ ଏହା ଏକ ଅପୂରଣୀୟ କ୍ଷତି । ଏ ଜାତି ହରାଇଲା ଜଣେ ନିଷ୍କାପର ଜନସେବକଙ୍କୁ କିନ୍ତୁ ଏବେବି ଅଗଣିତ ଅନୁଗାମୀ, ପ୍ରଶଂସକଙ୍କ ଚିନ୍ତା ଓ ଚେତନାରେ ସେ ଜୀବିତ ଅଛନ୍ତି ଓ ରହିବେ ମଧ୍ୟ ।

ଆଜୀବନ ସଭ୍ୟ, ଉତ୍କଳ ସମ୍ମିଳନୀ
ସଭାପତି, ଆର୍ଯ୍ୟ ସମାଜ, ବ୍ରହ୍ମପୁର
ଅଳକାପୁରୀ-୨ୟ ସରଣି, ବ୍ରହ୍ମପୁର-୭୬୦୦୧୦



# ଓଡ଼ିଆ ସ୍ୱାଭିମାନର ସମର୍ଥ ସାରଥି : ମଧୁବାବୁ

ଡଃ. ପ୍ରଫୁଲ୍ଲ କୁମାର ସାହୁ

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରାଣପ୍ରତିଷ୍ଠାତା ଉତ୍କଳ ଗୌରବ ମଧୁସୂଦନ ଦାସ । ଓଡ଼ିଆ ସ୍ୱାଭିମାନର ସମର୍ଥ ସାରଥି । ଅଖଣ୍ଡ ତାଙ୍କ ବ୍ୟକ୍ତିତ୍ୱ । ଅସାଧାରଣ ତାଙ୍କ ନେତୃତ୍ୱ । ବିଶ୍ୱର ଏହି ଅଦ୍ୱିତୀୟ ତ୍ୟାଗଦୀପ୍ତ ପ୍ରଜ୍ଞାପୁରୁଷଙ୍କୁ ଆମେ ଜାଣୁ ମଧୁବାବୁ ନାମରେ । ଗୋଟିଏ ନିର୍ଜୀବ ଓ ନିଷ୍ପ୍ରାଣ ଜାତିର ଅସ୍ଥି କଙ୍କାଳ ଉପରେ ଜୀବନ୍ୟାସ ଦେଇ ତାକୁ ବାଙ୍ମୟ କରିଥିବା ବିଶ୍ୱକର୍ମା ଭାବରେ । ଜାତୀୟ ଜୀବନର ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ ସ୍ପର୍ଦ୍ଧା, ସ୍ୱାଭିମାନ ଓ ସଂକଳ୍ପର ସେ ଯେଉଁ ଅନନ୍ୟ ଉଦାହରଣ ସୃଷ୍ଟି କରିଛନ୍ତି, ତାହାକୁ ଅଭିନିବେଶ ସହକାରେ ତନ୍ନ ତନ୍ନ ନିରୀକ୍ଷଣ କଲେ ବିସ୍ମୟ ପ୍ଳାବିତ ଶ୍ରଦ୍ଧାରେ ପୂରିଉଠେ ଅନ୍ତରର କୋଣ ଅନୁକୋଣ ।



୧୮୪୮ ମସିହା ଅପ୍ରେଲ ୨୮ତାରିଖରେ ଅବିଭକ୍ତ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିବା ମଧୁସୂଦନଙ୍କର ପିତୃମାତୃଦତ୍ତ ନାମ ଥିଲା ଗୋବିନ୍ଦ ବଲ୍ଲଭ । ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା ଗାଁ ଚାଟଶାଳିର ଜଣେ ମାଟିବଂଶ ଅବଧାନଙ୍କ ପାଖରେ । ଗାଁ ଚାହାଳୀର ଏହି ଗୁଣବାନ ଚାଟ ମହାସିଂପୁର ଗ୍ରାମ ମଧ୍ୟଇଂରାଜୀ ବିଦ୍ୟାଳୟରେ ଶିକ୍ଷା ଶେଷ କରି ୧୯୬୦ ମସିହାରେ କଟକ ସରକାରୀ ହାଇସ୍କୁଲରେ ନାମ ଲେଖାଇଲେ ୧୩ ବର୍ଷ ବୟସରେ । ସ୍କୁଲ ଆସୁଥିଲେ ନାଲିକନାର ଖଣ୍ଡେ ତନ୍ତବୁଣା କୁରୁତା ପିନ୍ଧି, ଯାହାକୁ କୁହାଯାଉଥିଲା ମିରିଜାଇ । ସେଥିରେ ବୋତାମ ଲାଗୁନଥିବାରୁ ତାହା ବନ୍ଧା ହେଉଥିଲା କନାଧଡ଼ି କିମ୍ବା ସୂତା ସାହାଯ୍ୟରେ । ପାଦରେ ପିନ୍ଧୁଥିଲେ ହଳେ ମରହଟ୍ଟା ଅମଳର ପାଣ୍ଡୋଇ । ମଫସଲ ଗାଁରୁ ଆସିଥିବା ମଧୁସୁଦନଙ୍କର ଏଭଳି ବିଚିତ୍ର ବେଶପୋଷାକ ଦେଖି ତାଙ୍କୁ ଥଟ୍ଟା ପରିହାସ କରୁଥିଲେ ରେଭେନ୍ସା କଲେଜିଏଟ୍ ସ୍କୁଲର ବଂଗାଳୀ ସହପାଠୀମାନେ । ଚୌଧୁରୀ ରଘୁନାଥ ଦାସଙ୍କ ପୁଅ ଭାବରେ ଗାଁ ଲୋକଙ୍କଠାରୁ ଆଦର ଓ ସମ୍ମାନ ପାଉଥିବା ସ୍ୱାଭିମାନୀ ମଧୁସୂଦନଙ୍କୁ ସହପାଠୀଙ୍କ ବ୍ୟବହାର ଖୁବ୍ ଆଘାତ ଦେଇଥିଲା ଏବଂ ସେ ଅନୁଭବ କଲେ, 'ସ୍ୱଦେଶେ ପୂଜ୍ୟତେ ରାଜା, ବିଦ୍ୱାନ ସର୍ବତ୍ର ପୂଜ୍ୟତେ' ଉକ୍ତିର ଯଥାର୍ଥତା । ଏଇଠୁ ଆରମ୍ଭ ହେଲା ବିଦ୍ୱାନ ହେବାର ପ୍ରତିଜ୍ଞାବଦ୍ଧ ପ୍ରୟାସ । ସ୍ୱାଭିମାନର ଦୁରନ୍ତ ଯାତ୍ରା ।

୧୮୬୪ ମସିହାରେ ଏଣ୍ଟ୍ରାନ୍ସ ପାସ ପରେ ଉଚ୍ଚଶିକ୍ଷା ପାଇଁ ସେ ବାହାରିଲେ କଲିକତା । ମାତ୍ର ଅର୍ଥ ସାଜିଲା ବାଧକ । ପରିସ୍ଥିତି ବାଧ କଲା ଚାକିରି ଖୋଜିବା ପାଇଁ । ୧୮୬୫ରେ ମିଳିଗଲା ବାଲେଶ୍ୱର ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦବୀରେ ନିଯୁକ୍ତି । ଶିକ୍ଷକତା କରିବାର ଅଳ୍ପଦିନ ପରେ ଯୋଗ ଦେଲେ ବାଲେଶ୍ୱର ରେଜିଷ୍ଟ୍ରେସନ ଅଫିସର କିରାଣି ଭାବରେ । ମାତ୍ର ଉଚ୍ଚାଭିଳାଷୀ ମଧୁସୁଦନଙ୍କୁ ବେଶି କାଳ ବାନ୍ଧି ରଖିପାରିଲା ନାହିଁ କିରାଣି କିମ୍ବା ଶିକ୍ଷକତା ବୃତ୍ତି । ଇପ୍‌ସିତ ଅଭିମାନ ଓ ଅଭିଳାଷ ଏତେ ଦୁର୍ବାର ଥିଲା ଯେ ପିତାମାତା ଓ ପ୍ରିୟ ପରିଜନଙ୍କ ଆଦେଶ ଓ ଉପଦେଶକୁ ଉଲ୍ଲଙ୍ଘନ କରି ୧୮୬୬ ମସିହାରେ କଲିକତା ଅଭିମୁଖେ ଯାତ୍ରା କଲେ ଉଚ୍ଚଶିକ୍ଷା ଲାଭ ଉଦ୍ଦେଶ୍ୟରେ ।

କଲିକତାରେ ପହଞ୍ଚିବା ମାତ୍ରେ ପରିଚୟ ହେଲା ବଂଗୀୟ ଖ୍ରୀଷ୍ଟିୟାନ ପାଦ୍ରି ଅମ୍ବିକା ପ୍ରସାଦ ହାଜରାଙ୍କ ସହିତ । ମଧୁସୂଦନଙ୍କ ଜ୍ଞାନସ୍ପୃହା ତଥା ଉଚ୍ଚାଭିଳାଷର ପରିଚୟ ପାଇ ସେ ଖୁବ୍ ମୁଗ୍ଧ ହେଲେ ଏବଂ ତାଙ୍କରି ସୁପାରିସ୍‌କ୍ରମେ ମଧୁସୂଦନ ନାମ ଲେଖାଇଲେ ମିଶନାରୀ ସୋସାଇଟି କଲେଜରେ । ଅମ୍ବିକା ପ୍ରସାଦଙ୍କ ସହିତ ଘନିଷ୍ଠତା ହିଁ ତାଙ୍କୁ ଆଣିଦେଲା ବହୁ ପାଦ୍ରି ଓ ବଡ଼ ବଡ଼ ଇଂରେଜ ହାକିମଙ୍କ ସହିତ ମିଶିବାର ସୁଯୋଗ । ସେମାନଙ୍କ ବକ୍ତୃତା ଓ ଉପଦେଶ ଶୁଣି ଶୁଣି ସେ ସ୍ୱତଃ ଟାଣି ହୋଇଗଲେ ଖ୍ରୀଷ୍ଟଧର୍ମ ଆଡ଼କୁ । ଥରେ ଜଣେ ପାଦ୍ରି ପ୍ରାର୍ଥନାତ୍ମକ ଭାଷଣରେ ଯୀଶୁଖ୍ରୀଷ୍ଟଙ୍କ ବାଣୀ ଉଦ୍ଧାର କରି କହୁଥିଲେ- ''ହେ ସ୍ୱର୍ଗୀୟ ପିତା, ଏମାନଙ୍କୁ ରକ୍ଷା କର । କାରଣ ଏମାନେ କ'ଣ କରୁଛନ୍ତି ନିଜେ ଜାଣନ୍ତିନି ।'' ଏହି ବକ୍ତବ୍ୟର ମାନବବାଦୀ ଆବେଦନ ତାଙ୍କ ଅନ୍ତରକୁ ଏଭଳି ଉଦ୍‌ବୋଧିତ କଲା ଯେ ସେ ମନେ ମନେ ନିଷ୍ପତ୍ତି ନେଲେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେବାପାଇଁ । ଚିଠି ଲେଖି ବାପା ମାଆଙ୍କୁ ଜଣେଇ ଦେଲେ ନିଜର ମନକଥା । ଖବର ପାଇ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ ବାପା ଓ ପରିବାରର ଅନ୍ୟମାନେ । କାଳବିଳମ୍ବ ନ କରି କଲିକତା ଛୁଟିଲେ ବାପା ଚୌଧୁରୀ ରଘୁନାଥ ଦାସ । ପୁଅକୁ ଅନେକ ବୁଝାସୁଝା କଲେ ଧର୍ମ ପରିବର୍ତ୍ତନ ନ କରିବା ପାଇଁ । କିନ୍ତୁ ବଦଳିଲା ନାହିଁ ଏକଜିଦିଆ ପୁଅର ନିଷ୍ପତ୍ତି ।

କଲିକତା ହାଇକୋର୍ଟରେ ଅସ୍ଥାୟୀ ଅନୁବାଦକ ଭାବରେ କାର୍ଯ୍ୟ କରିବା ଅବସରରେ ବି.ଏ. ପଢିବା ପାଇଁ ସେ ନାମ ଲେଖାଇଲେ ପ୍ରେସିଡ଼େନ୍ସି ସାନ୍ଧ୍ୟ ମହାବିଦ୍ୟାଳୟରେ । ୧୮୭୦ ମସିହାରେ ସେ ବି.ଏ.ପାସ କଲାପରେ ତାଙ୍କ ପ୍ରାଣକୁ ଆନ୍ଦୋଳିତ କଲା ଗାଆଁକୁ ଫେରି ମାଆକୁ ଭେଟିବାର ଇଚ୍ଛା । ଦୀର୍ଘ ଚାରିବର୍ଷର ବ୍ୟବଧାନ ପରେ ସେ ଗାଆଁ ମାଟିକୁ ଫେରିଲେ ପ୍ରଥମ ଓଡ଼ିଆ ଗ୍ରାଜୁଏଟ ହେବାର ଗୌରବ ନେଇ । ଏତେଦିନ ପରେ ପୁଅ ଗାଆଁକୁ ଫେରୁଥିବାରୁ ମା' ମନ ତ ଆନନ୍ଦରେ ଫାଟି ପଡ଼ିବା କଥା । ମାତ୍ର ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ପୁଅକୁ ପାଖରେ ପାଇ ବି ସରାଗରେ କୋଳେଇ ନେଇ ପାରିଲେ ନାହିଁ ଗର୍ଭଧାରିଣୀ ମାଆ ପାର୍ବତୀ ଦେବୀ । ବରଂ ପୁଅର ଗୃହ ପ୍ରବେଶକୁ ବାରଣ କରି ଦାଣ୍ଡ ବାରଣ୍ଡାରେ କଦଳୀପତ୍ର ବିଛାଇ ପରଶିଦେଲେ ଭାତ ତରକାରି । ଧର୍ମ ନଷ୍ଟହେବା ଭୟରେ ମନର ସବୁ ବ୍ୟାକୁଳତାକୁ ଚାପିରଖି ଦାଣ୍ଡ ଆଗରେ ଥିବା ରସକୁଣ୍ଡ ପୋଖରୀରେ ବୁଡ଼ପକେଇ ଘର ଭିତରକୁ ପ୍ରବେଶକଲେ ମାଆ । ଆହତ ମନ ନେଇ ସେଇ ଦାଣ୍ଡ ଦୁଆରୁ କଲିକତା ବାହୁଡ଼ିଗଲେ ସ୍ନେହକାଙ୍ଗାଳ ମଧୁସୂଦନ ।

୧୮୭୩ ମସିହାରେ ସେ ଇଂରାଜୀଭାଷା ସାହିତ୍ୟରେ ଏମ.ଏ.ପାସ୍ କଲେ ଏବଂ ଖିଦିରପୁର ଗାର୍ଡ଼େନ୍ ରିଚ୍ ହାଇସ୍କୁଲରେ ଯୋଗଦେଲେ ପ୍ରଧାନଶିକ୍ଷକ ଭାବରେ । ସେହିବର୍ଷ ତାଙ୍କର ବିବାହ ସମ୍ପନ୍ନ ହେଲା ବଂଗାଳୀ ଖ୍ରୀଷ୍ଟିଆନ ଧର୍ମଯାଜକ ଯଦୁନାଥ ଭଟ୍ଟାଚାର୍ଯ୍ୟଙ୍କ କନ୍ୟା ଉଚ୍ଚଶିକ୍ଷିତା ସୌଦାମିନୀଙ୍କ ସହିତ । ମଧୁସୂଦନ ବିବାହ ବେଳକୁ ସେଠାରେ ଆରମ୍ଭ ହୋଇସାରିଥିଲା 'ୟଙ୍ଗ ବେଙ୍ଗଲ'ର ଯୁଗ । କୁଳ ହରେଇ, ଧର୍ମ ହରେଇ କଲିକତା ମାଟିରେ ଏକୁଟିଆ ଯୁଝୁଥିବା, ମଧୁସୂଦନ ବଙ୍ଗଳାର ଯୁବଶକ୍ତି ଦ୍ୱାରା ପ୍ରଭାବିତ ହୋଇ ଦେଖିଲେ 'ୟଙ୍ଗ ଓଡ଼ିଶା'ର ସ୍ୱପ୍ନ । ବିଶାଳ କଲିକତା ମହାନଗରୀର ବକ୍ଷରେ ସେ ଘୂରି ବୁଲିଲେ ଆପଣା ଜାତିଭାଇମାନଙ୍କୁ ଏକାଠି କରିବା ଲକ୍ଷ୍ୟରେ ।

ସେତେବେଳେ କଲିକତାରେ ଶିକ୍ଷିତ ଓଡ଼ିଆଙ୍କ ସଂଖ୍ୟା ଥିଲା ଅତି ନଗଣ୍ୟ । ଯେଉଁମାନେ ପେଟପାଟଣା ପାଇଁ କଲିକତାରେ ପଡ଼ି ରହିଥିଲେ, ସେମାନଙ୍କ ମଧ୍ୟରୁ କିଏ କଳକାରଖାନାରେ କୁଲିକାମ କରୁଥିଲା ତ କିଏ ଟାଣୁଥିଲା ଠେଲାଗାଡ଼ି । ଯିଏ ଯେଉଁ କାମ କରୁନା କାହିଁକି, ଏହି ନିର୍ଯ୍ୟାତିତ ଓଡ଼ିଆ ଭାଇମାନଙ୍କ ପ୍ରତି ସମ୍ବେଦନାର ସ୍ରୋତ ରକ୍ତ ସ୍ରୋତ ପରି ପ୍ରବାହିତ ହେଉଥିଲା ମଧୁବାବୁଙ୍କର ଅନ୍ତରର ଅନ୍ତସ୍ଥଳରେ । ତାଙ୍କ ଦୃଷ୍ଟିରେ ଏହି ଅପାଠୁଆ ଓ ମଳିମୁଣ୍ଡିଆ ଓଡ଼ିଆମାନେ ଥିଲେ ଏକ ସମୃଦ୍ଧ ଜାତିର ଆତ୍ମ ବିସ୍ମୃତ ଦାୟାଦ, ଯେଉଁ ଜାତି ଦିନେ ସାମ୍ରାଜ୍ୟ ବିସ୍ତାର କରିଥିଲା ଆଗଙ୍ଗା ଗୋଦାବରୀ । ସାତ ସମୁଦ୍ର ତେରନଈ ପାର ହୋଇ ସ୍ଥାପନ କରିଥିଲା ନୂଆ ଉପନିବେଶ । ନିହାଣ ମୁଗୁର ଧରି ଗଢ଼ିଥିଲା ପୁରୀ, ଲିଙ୍ଗରାଜ, କୋଣାର୍କ ଓ ରାଜରାଣୀ ପରି କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର । ସେଇ ସୁପ୍ତ ଜାତିର ଉତ୍‌ଥାନ ତଥା ତାହାର ପୁନଃ ପରିଚୟ ଓ ପ୍ରତିଷ୍ଠା ନିମନ୍ତେ ବ୍ୟାକୁଳ ହୋଇ ଉଠିଲା ମଧୁସୂଦନଙ୍କ ପ୍ରାଣ ।

ସେ ଜାଣିଥିଲେ ନିରକ୍ଷରତା ଏକ ସାମାଜିକ ବ୍ୟାଧି । ଏହି ବ୍ୟାଧିରୁ ଜନ୍ମନିଏ ବେକାରି, ଦାରିଦ୍ର୍ୟ ଓ ହୀନମନ୍ୟତା । ତେଣୁ ଜଣେ ପାଠୁଆ ଅନେକ ନିରକ୍ଷରଙ୍କୁ ସାକ୍ଷର କରିପାରିଲେ ଜାଗ୍ରତ ହେବ ଓଡ଼ିଆ ଜାତି । ଏହିଭଳି ମହତ୍ ଉଦ୍ଦେଶ୍ୟ ନେଇ ମାଟିଆ ବୁରୁଜ ଓ ଅନ୍ୟ କେତେକ ସ୍ଥାନରେ ସେ ସ୍ଥାପନ କରିଥିଲେ ନୈଶବିଦ୍ୟାଳୟ । ଅର୍ଥାତ୍ ସ୍ୱାଧୀନ ଭାରତବର୍ଷର ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହେବାର ଗୋଟିଏ ଶତାବ୍ଦୀ ପୂର୍ବରୁ କଲିକତା ମହାନଗରୀରେ ତାର ଭିତ୍ତିପ୍ରସ୍ତର ପକେଇଥିଲେ ଦୂରଦ୍ରଷ୍ଟା ମଧୁସୂଦନ । ତାଙ୍କର ଏ ଅଭିଯାନକୁ କିନ୍ତୁ ସହଜରେ ଗ୍ରହଣ କରିପାରି ନଥିଲେ ପଡ଼ୋଶୀ ବଙ୍ଗାଳୀମାନେ । ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା କାରଣରୁ ମଧୁସୂଦନଙ୍କ ପ୍ରତି ସେମାନଙ୍କର ତୁଚ୍ଛ ତାଚ୍ଛଲ୍ୟ ସମ୍ବୋଧନ ଥିଲା 'ମଧୁଉଡ଼େ' । ସେମାନେ ଭାବୁଥିଲେ ଓଡ଼ିଆ ଶ୍ରମିକମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବା ପାଇଁ ଏହା 'ମଧୁଉଡ଼େ'ର ଚକ୍ରାନ୍ତ ।

ଶିକ୍ଷକତା ନୁହେଁ, ଆଇନ୍ ବ୍ୟବସାୟ ପ୍ରତି ଥିଲା ମଧୁବାବୁଙ୍କର ପ୍ରବଳ ଆଗ୍ରହ । ତେଣୁ ଶିକ୍ଷକତା ଛାଡ଼ି କଲିକତା ବିଶ୍ୱବିଦ୍ୟାଳୟରେ ସେ ଆଇନ୍ ଅଧ୍ୟୟନ କଲେ ଏବଂ ୧୮୭୮ ମସିହାରେ ବି.ଏଲ୍ ପାସ୍ କରି ଆଇନ ବ୍ୟବସାୟ ଆରମ୍ଭ କଲେ ଅଲିପୁର କୋର୍ଟରେ । ଏତିକିବେଳେ ତାଙ୍କୁ ସଂପୂର୍ଣ୍ଣ ସ୍ନେହ କାଙ୍ଗାଳ କରିଦେଲା ପତ୍ନୀ ସୌଦାମିନୀଙ୍କର ଅକାଳ ବିୟୋଗ । ଦାମ୍ପତ୍ୟ ଜୀବନ ଆରମ୍ଭ ହେବାର ମାତ୍ର ପାଞ୍ଚଟି ବର୍ଷ ପରେ ଅକାଳରେ ଛିଡ଼ିଗଲା ସ୍ନେହ ବନ୍ଧନର ଶେଷ ସୂତାଖିଅକ । ସେତେବେଳକୁ ତାଙ୍କର ବୟସ ମାତ୍ର ତିରିଶ । ତଥାପି ମନରୁ ପୋଛିଦେଲେ ଦ୍ୱିତୀୟ ବିବାହର ଚିନ୍ତା । କଲିକତା ଛାଡ଼ି ଫେରିଆସିବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହେବା ଅବସରରେ ଆରପାରିକି ଚାଲିଗଲେ ଅମ୍ବିକାପ୍ରସାଦ ହାଜରା ଏବଂ ତାଙ୍କ ପତ୍ନୀ । କଲିକତାରେ ତାଙ୍କର ପ୍ରଥମ ଆଶ୍ରୟଦାତା ଅମ୍ବିକା ପ୍ରସାଦଙ୍କ ପ୍ରତି କୃତଜ୍ଞତା ସ୍ୱରୂପ ସେ ଛାଡ଼ିଯାଇଥିବା ଗୋଟିଏ ପୁଅ ଓ ଦୁଇ ଝିଅଙ୍କୁ ସେ କୋଳେଇନେଲେ ଆପଣାର ପୁତ୍ର କନ୍ୟା ଭାବି । ପରବର୍ତ୍ତୀ ସମୟରେ ସେ ଝିଅ ଦୁଇ ପାଳିତା ଝିଅଙ୍କୁ ଉଚ୍ଚଶିକ୍ଷା ପାଇଁ ବିଲାତ ପଠେଇଥିଲେ, ଯେଉଁ ଦୁଇ ଝିଅ ମଧ୍ୟରୁ ଜଣେ ହେଉଛନ୍ତି ଭାରତ ବର୍ଷର ପ୍ରଥମ ମହିଳା ଓକିଲ ସୁଧାଂଶୁବାଳା ଓ ଅନ୍ୟ ଜଣେ ଓଡ଼ିଶାର ପ୍ରଥମ ମହିଳା ସାଂସଦ ଶୈଳବାଳା ।

୧୮୮୧ ମସିହାରେ ମଧୁସୂଦନ ଜ୍ଞାନ ଓ ସ୍ୱାଭିମାନର କବଚକୁଣ୍ଡଳ ପିନ୍ଧି ଆପଣା ଭୂଇଁକୁ ଫେରିଆସିଲେ ଏବଂ କଟକରେ ଆରମ୍ଭ କଲେ ଆଇନ ବ୍ୟବସାୟ । ମାତ୍ର ପ୍ରଥମ ଓଡ଼ିଆ ଓକିଲ ଭାବରେ ତିରସ୍କୃତ ହେବା ଥିଲା ତାଙ୍କର ପ୍ରାରମ୍ଭିକ ଭାଗ୍ୟଲିପି । ଏପରିକି ଓକିଲାତି ଆରମ୍ଭବେଳେ ତାଙ୍କୁ ସେଠାରେ ବସିବାପାଇଁ ମିଳିନଥିଲା ଠା । ସମୟକ୍ରମେ ଆପଣା ବିଜ୍ଞତା, ବାଗ୍ମୀତା ଓ ବିଚକ୍ଷଣତା ବଳରେ ବଦଳିଲା ସ୍ଥିତି । ବିଭିନ୍ନ ମୋକଦ୍ଦମାର ସଫଳତା ବିଶେଷ କରି ଅସହାୟ ଓ ସାଧାରଣ ବର୍ଗଙ୍କ ପ୍ରତି ମାନବୀୟ ସମ୍ବେଦନା ଓ ସାମାଜିକ ଦାୟିତ୍ୱବୋଧ

ତାଙ୍କୁ ଆଣିଦେଲା ସ୍ୱତନ୍ତ୍ର ପରିଚୟ, ପ୍ରତିଷ୍ଠା ଓ ସୁନାମ । ଏ ସମ୍ପର୍କରେ ଦୃଷ୍ଟାନ୍ତଟିଏ । ନିର୍ଦ୍ଦିଷ୍ଟ ଏକ ଜମିର ଦଖଲକୁ ନେଇ ପୁରୀ ସହରର ଜନୈକ ଧନୀ ମହନ୍ତ ମୋକଦ୍ଦମା କରିଥିଲେ ଜଣେ ଗରିବ ଚାଷୀ ବିରୋଧରେ । ଯେକୌଣସି ଉପାୟରେ ଚାଷୀକୁ ମୋକଦ୍ଦମାରେ ହରେଇ ଜମି ଖଣ୍ଡକ ହାତେଇ ନେବା ପାଇଁ ରଚିଲେ ଚକ୍ରବ୍ୟୂହ । ଯୋଜନା ଅନୁସାରେ ସେ ସବୁ ଓକିଲଙ୍କୁ ନିଜ ପକ୍ଷକୁ ନେଇଗଲେ ନିଜ ଲ', ଏଜେଣ୍ଟ ଜରିଆରେ । ବାକି ରହିଗଲେ ଏକମାତ୍ର ମଧୁବାବୁ । ମହନ୍ତଙ୍କ ସବୁ ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରି ସେ ଠିଆହେଲେ ଗରିବ ଚାଷୀଟି ସପକ୍ଷରେ । ଜଣେ କନିଷ୍ଠ ଓଡ଼ିଆ ଓକିଲ ବିରୋଧରେ ଗଲେବି କିଛି ଫରକ ପଡ଼ିବନି ବୋଲି ଭାବି ନେଇଥିଲେ ମହନ୍ତ । କିନ୍ତୁ ବିଧିର ନିର୍ଦ୍ଦେଶ ଥିଲା ଅଲଗା । ବହୁ ନାମୀଦାମୀ ବଂଗାଳୀ ଓକିଲ ମହନ୍ତଙ୍କ ସପକ୍ଷରେ ଲଢୁଥିଲେ ବି ଜିତାପଟ ହେଲା ଗରିବ ଚାଷୀର । ମୋକଦ୍ଦମା ରାୟ ପ୍ରକାଶ ପାଇବା ମାତ୍ରେ କନିଷ୍ଠ ଓକିଲ ମଧୁବାବୁଙ୍କ ଖ୍ୟାତି ବଢ଼ିବା ସହିତ ଛୁଟିଲା ମହକିଲ ଓ ଅର୍ଥର ସୁଅ । ମଧୁବାବୁ ବାରିଷ୍ଟରୀ ପାସ୍ କରିନଥିଲେ ସତ, କିନ୍ତୁ ତାଙ୍କ ଓକିଲାତି ଢଙ୍ଗ ଓ ବୃତ୍ତିଗତ ସଫଳତା ତାଙ୍କୁ ପହଞ୍ଚେଇ ଦେଲା ବାରିଷ୍ଟର ଉଚ୍ଚତାରେ । ଲୋକେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନର ସହିତ ସମ୍ବୋଧନ କଲେ ମଧୁ ବାରିଷ୍ଟର ।

ଅର୍ଥ ଓ ପ୍ରତିଷ୍ଠା ଦୃଷ୍ଟିରୁ ସେ ଯେତେ ଉପରକୁ ଗଲେ ବି ତାଙ୍କ ଜୀବନଶୈଳୀ ଥିଲା ଅତ୍ୟନ୍ତ ସରଳ । ଖାଣ୍ଟି ଓଡ଼ିଆ ପୁଅର ସ୍ୱଭାବ ଓ ରୁଚି ନେଇ ସେ ଖାଉଥିଲେ ମଦରଙ୍ଗା ଶାଗଭଜା ଓ ବଗଡ଼ା ଚାଉଳର ଭାତ । ଉଚ୍ଚ ଚିନ୍ତା, ପ୍ରକୃତି ପ୍ରେମ, ଜୀବେଦୟା ଓ ନିରାଡ଼ମ୍ବର ଜୀବନଚର୍ଯ୍ୟା ସାଙ୍ଗକୁ ଜାତିର ସର୍ବତୋମୁଖୀ କଲ୍ୟାଣ ସାଧନ ଥିଲା ତାଙ୍କ ଜୀବନର ଧ୍ୟେୟ । ଓଡ଼ିଆ ଜାତିର ଉନ୍ନତି କଳ୍ପେ ଭାଷା, ସାହିତ୍ୟ, ସଂସ୍କୃତି, କୃଷି, ଶିଳ୍ପ ଆଦି ପ୍ରତ୍ୟେକ କ୍ଷେତ୍ରରେ ତାଙ୍କ ସାଧନାର ବହୁମୁଖୀ ଦିଗନ୍ତ ଯେଭଳି ଅଦ୍ଭୁତ ଭାବେ ପ୍ରସାରିତ – ତାହା କଳ୍ପନା କରିବା ଜଣେ ସାଧାରଣ ମଣିଷ ପକ୍ଷରେ ଦୁରୂହ ବ୍ୟାପାର ।

ମଧୁବାବୁ ଥିଲେ ପ୍ରଚଣ୍ଡ ଭାଷାପ୍ରେମୀ । ସେ କଟକ ଫେରିଲା ବେଳକୁ ସଂପୂର୍ଣ୍ଣ ବିପନ୍ନ ହୋଇପଡ଼ିଥିଲା ଓଡ଼ିଆ ଭାଷାର ସ୍ଥିତି । ସେଯାଏଁ ସଂପୂର୍ଣ୍ଣ ଥମି ନଥିଲା ଓଡ଼ିଆ ଭାଷାକୁ ମୂଳପୋଛ କରିଦେବା ପାଇଁ ବାବୁ ରାଜେନ୍ଦ୍ରଲାଲ ମିତ୍ର ଓ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ରଚିଥିବା ଚକ୍ରାନ୍ତର ପ୍ରଭାବ । ତେଣେ ୧୮୬୧ରେ ନୂଆ ହୋଇ ଗଢା ହୋଇଥିବା ମଧ୍ୟପ୍ରଦେଶର ଆଁ ଭିତରକୁ ପଶି ଯାଇସାରିଥିଲା ମାଆ ସମଲେଇଙ୍କ ସମ୍ବଲପୁର । ଓଡ଼ିଆ ଭାଷାର ସୁରକ୍ଷା ତଥା ଓଡ଼ିଶାର ସ୍ୱାର୍ଥ, ସମୃଦ୍ଧି ଓ ସ୍ୱାତନ୍ତ୍ର୍ୟ ପାଇଁ ୧୮୮୨ରେ ସେ ଗଠନ କଲେ 'ଉତ୍କଳସଭା' । ମଧୁବାବୁଙ୍କ ନେତୃତ୍ୱରେ ୧୮୮୫ରେ ସମ୍ବଲପୁର କଚେରିରୁ ଆରମ୍ଭ ହେଲା ଭାଷା ଆନ୍ଦୋଳନ । ମାତୃଭାଷା ପ୍ରତି ମଧୁବାବୁଙ୍କର ଆନ୍ତରିକତାର ଦୃଷ୍ଟାନ୍ତ ରହିଛି ସେ ରେଭେନ୍ସା ମହାବିଦ୍ୟାଳୟର ପ୍ରଥମ ଓଡ଼ିଆ ଅଧ୍ୟାପକ କାଶୀନାଥ ଦାସଙ୍କୁ ସେ ଲେଖିଥିବା ଚିଠିରେ । ସେଥିରେ ସେ ଲେଖିଥିଲେ – ''ତୁମ ଉପରେ ଖୁବ୍ ବଡ଼ ଦାୟିତ୍ୱ ଅର୍ପଣ କରାଯାଉଛି । ତୁମେ ନିଷ୍ଠାପର ଭାବେ ଏପରି ଶିକ୍ଷାଦାନ କର, ଯେଉଁଥିରେ ଓଡ଼ିଆ ପିଲାଙ୍କର ଉନ୍ନତ ଚରିତ୍ର ଗଠନ ସହିତ ସେମାନେ ଭାରତମାତା ଓ ଉତ୍କଳ ଜନନୀଙ୍କୁ ଭଲ ପାଇ ବସିବେ । ତୁମର ଶିକ୍ଷାକୁ ପାଥେୟ କରି ଛାତ୍ରମାନେ ଉତ୍ତମ ପ୍ରବନ୍ଧ, କବିତା ଲେଖିବେ ଓ ସର୍ବୋପରି ଓଡ଼ିଆ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି କରିବେ ।'' ମଧୁବାବୁଙ୍କ ପ୍ରେରଣାରେ ପ୍ରତିଷ୍ଠା ହୋଇଥିଲା 'ଉତ୍କଳ ସାହିତ୍ୟ ସମାଜ' । ପରବର୍ତ୍ତୀ ସମୟରେ ସେହି ଅନୁଷ୍ଠାନ ଜରିଆରେ ସୃଷ୍ଟି ହୋଇଛନ୍ତି ଅନେକ ବିପ୍ଳବୀ ସାହିତ୍ୟିକ ।

୧୯୦୩ ମସିହାରେ ଗଠନ ହୋଇଥିଲା ଜାତୀୟ ମହାମଞ୍ଚ 'ଉତ୍କଳ ସମ୍ମିଳନୀ' । ଏହାର ପୃଷ୍ଠଭୂମିରେ ଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପ୍ରସ୍ତାବକୁ ନେଇ କଂଗ୍ରେସ ନେତାଙ୍କ ସହ ମଧୁବାବୁଙ୍କ ମତଭେଦ । କଲିକତାରେ ଅନୁଷ୍ଠିତ ଜାତୀୟ କଂଗ୍ରେସ ଅଧିବେଶନରେ ମଧୁବାବୁଙ୍କ ଦ୍ୱାରା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପ୍ରସ୍ତାବ କାଟଖାଇବା ପରେ ସେ କଂଗ୍ରେସଠାରୁ ଦୂରେଇ ଆସି

ସେ ସମ୍ପୂର୍ଣ୍ଣ ନିମଜ୍ଜିତ ଓ ଉତ୍ସର୍ଗୀକୃତ ରହିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ । ତାଙ୍କର ଐକାନ୍ତିକ ଉଦ୍ୟମ ଯୋଗୁଁ ଏକାଠି ହେଲେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଦେବ, କନିକା ରାଜା ରାଜେନ୍ଦ୍ର ନାରାୟଣ, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ ଏବଂ ଫକୀରମୋହନ ସେନାପତି, ଗଦାଧର ବିଦ୍ୟା ଭୂଷଣ, ବଳରାମ ମହାରଣା, ନରସିଂହ ଦାସ ଓ ନୀଳମଣି ବିଦ୍ୟାରତ୍ନଙ୍କ ଭଳି ଓଡ଼ିଶାର ଅନେକ ବରପୁତ୍ର । ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଆସିଥିବା ୩୩୫ ଜଣ ପ୍ରତିନିଧିଙ୍କୁ ନେଇ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା କଟକର ଇଦ୍‌ଗା ପଡ଼ିଆରେ । ସମ୍ମିଳନୀର ମହାମନ୍ତ୍ର ଘୋଷଣା ନିମନ୍ତେ ତାର ପ୍ରାଣ ପ୍ରତିଷ୍ଠାତା ମଧୁବାବୁ ଲେଖିଲେ-

'ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁଧରେ
ତୋର ପ୍ରାଣ ବିନ୍ଦୁ ମିଶେଇ ଦେ ଭାଇ ଡ଼େଇଁ ପଡ଼ି ସିନ୍ଧୁ ନୀରେ ।'

ଏହି ଆହ୍ୱାନର ପ୍ରତିଟି ଅକ୍ଷର ଏଭଳି ଅନୁଭବସିଦ୍ଧ ସତ୍ୟତା ଓ ବିଶ୍ୱାସର ବହ୍ନିରେ ପ୍ରଜ୍ୱଳିତ ଥିଲା ଯେ ତାର ଯାଦୁକରୀ ସ୍ପର୍ଶରେ ଚେଇଁ ଉଠିଲା ସମଗ୍ର ଓଡ଼ିଆ ଜାତି । ମଧୁବାବୁ କବି ନଥିଲେ, ମାତ୍ର ଜାତିପ୍ରାଣରେ ସମନ୍ୱୟ ଭରିଦେବା ପାଇଁ ସେ ଲେଖିଥିଲେ କବିତା । ତାଙ୍କ ଦୃଷ୍ଟିରେ ଅତୀତ କେବଳ ସ୍ତୁପୀକୃତ କଂକାଳ ନୁହେଁ, ବରଂ ସୁପ୍ତ ଜାତିକୁ ଜାଗ୍ରତ କରିବା ପାଇଁ ତାର ସ୍ମୃତିଚାରଣ ଏକ ସଂଜୀବନୀ ମନ୍ତ୍ର । ସେଥିପାଇଁ ସେ ଜାତିପ୍ରାଣର ନବ ଉନ୍ମାଦନା ଭରିଦେବା ପାଇଁ 'ଉତ୍କଳ ସନ୍ତାନ' କବିତାରେ ଗାଇଛନ୍ତି -

ତୋ ପୂର୍ବପୁରୁଷ ଜୟ କରିଥିଲେ ଗଂଗାଠାରୁ ଗୋଦାବରୀ,
ତାଙ୍କରି ଔରସେ ଜନ୍ମ ହୋଇ ତୁହି କେଉଁ ଗୁଣେ ତାଙ୍କ ସରି ?

ସତ୍ୟର ଜୟଗାନରେ ଜୀବନ ଯାହାର ବ୍ରତୀ, ଆତ୍ମତ୍ୟାଗର ଦୁର୍ଗମ ପଥରେ ଯାତ୍ରା ପାଇଁ ପ୍ରାଣ ଯାହାର ସଂକଳ୍ପବଦ୍ଧ, ସେହି କେବଳ କବିତା ମାଧ୍ୟମରେ ପଚାରିପାରେ-

'ଜାତି ନନ୍ଦିଘୋଷ ଚଳିବକି ଭାଇ ସ୍ୱାର୍ଥକୁ ସାରଥି କଲେ
ଟାଣେକିରେ ଗାଡ଼ି ଦାନାର ତୋବଡ଼ା ଘୋଡ଼ା ମୁହେଁ ବନ୍ଧା ଥିଲେ ।'

ଉତ୍କଳର ପରିଚୟ ଗଠନ ଥିଲା ମଧୁବାବୁଙ୍କ ଜୀବନବ୍ୟାପୀ ସାଧନାର ଲକ୍ଷ୍ୟ । ସେହି ଲକ୍ଷ୍ୟ ହାସଲ ପାଇଁ ସେ ବତି ଭଳି ଜଳି ଜଳି ଖୋଜୁଥିଲେ ଆଗକୁ ବଢ଼ିବାର ବାଟ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ବିନିଯୋଗ କରୁଥିଲେ ଏକ ଯୋଜନାବଦ୍ଧ ଚିନ୍ତନ ମାଧ୍ୟମରେ । ବଂଗ ଭଂଗ ପାଇଁ ବଡ଼ଲାଟ ଲର୍ଡ଼ କର୍ଜନକୁ କୁହାଯାଏ ଦୁର୍ଜନ କର୍ଜନ । ମାତ୍ର ଓଡ଼ିଶା ପାଇଁ ସେ ସାବ୍ୟସ୍ତ ହୋଇଥିଲେ ସଜ୍ଜନ । ଓଡ଼ିଶାର କ୍ଷୋଭ ଓ କଷଣ ଜଣେଇବା ପାଇଁ ୧୯୦୦ ମସିହାରେ ଲର୍ଡ କର୍ଜନକୁ ସାକ୍ଷାତ୍ କରି ଦାବି ଉପସ୍ଥାପନ କରିଥିଲେ ମଧୁବାବୁ । ସେଠାରେ ତାଙ୍କର ଦାବି ଉପସ୍ଥାପନା ଶୈଳୀ ଏତେ ଉଚ୍ଚକୋଟୀର ଥିଲା ଯେ ସେଥିରେ ପ୍ରଭାବିତ ହୋଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଦାବିକୁ ସେ ସମର୍ଥନ ଜଣେଇ କର୍ଜନ ଜାରି କରିଥିଲେ ରିସ୍‌ଲେ ସର୍କୁଲାର । ସେହି ଆଧାରରେ ୧୯୦୫ ମସିହାରେ ମଧ୍ୟପ୍ରଦେଶରୁ ସମ୍ବଲପୁର, କଳାହାଣ୍ଡି, ପାଟଣା, ସୋନପୁର, ବାମଣ୍ଡା, ରେଢାଖୋଲ ଏବଂ ବିହାରର ଛୋଟନାଗପୁର ଅଞ୍ଚଳରୁ ଗାଙ୍ଗପୁର, ବଣେଇ, ଷଢେଇକଳା ଓ ଖରସୁଆଁ ଆଦି ଅଞ୍ଚଳ ଆସି ମିଶିଲା ଓଡ଼ିଶା ଡ଼ିଭିଜନରେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ ସବୁଠୁ ଅଧିକ ମହତ୍ୱ ରଖେ ସାଇମନ୍ କମିଶନ । ୧୯୨୮ ମସିହାରେ କଂଗ୍ରେସର ନିଷ୍ପତ୍ତି କ୍ରମେ ସାଇମନ କମିଶନଙ୍କୁ ବିରୋଧ କଲା ଦେଶ । କଂଗ୍ରେସ ସ୍ଲୋଗାନ୍ ଦେଲା ସାଇମନ ତୁମେ ଫେରିଯାଅ । ସାଇମନ କମିଶନ ପାଟଣାରେ ପହଞ୍ଚିବା ଦିନ ପ୍ରତିବାଦ ସ୍ୱରୂପ ସମ୍ପୂର୍ଣ୍ଣ ଶୂନ୍‌ଶାନ୍ ହୋଇଗଲା ସହର । ସେଦିନ କିନ୍ତୁ ମଧୁବାବୁଙ୍କ ଯୋଜନାକ୍ରମେ ପାଟଣା ଷ୍ଟେସନରେ ପହଞ୍ଚି କମିସନଙ୍କୁ ସ୍ୱାଗତ କରିଥିଲା ଓଡ଼ିଶାର ଏକ ପ୍ରତିନିଧି ଦଳ । ସେଇବାଟ ଦେଇ ମିଳିଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସୁପାରିସ୍ ।

ମଧୁବାବୁ ଯେ କେବଳ ଓକିଲାତି ଓ ରାଜନୀତି କ୍ଷେତ୍ରରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ତାହା

ନୁହେଁ, ସମାଜର ବିକାଶ ତଥା ଅନ୍ୟ ଅନେକ କ୍ଷେତ୍ରରେ ସେ ଥିଲେ ଆଦ୍ୟ ଓ ଏକକ ଉଦ୍ୟୋକ୍ତା । ଓଡ଼ିଆ ଗଣଜୀବନକୁ ଭାରତ ମାନଚିତ୍ରରେ ଉଜ୍ଜ୍ୱଳ କରିବା ପାଇଁ ମଧୁବାବୁ ହିଁ ପ୍ରଥମେ ଆରମ୍ଭ କରିଥିଲେ ଗ୍ରାମ୍ୟ ଶିଳ୍ପ ଆନ୍ଦୋଳନ । ଭାରତ ବାହାରେ ଓଡ଼ିଆଙ୍କ ଶିଳ୍ପଗୌରବ ପ୍ରଚାର ପାଇଁ ୧୮୯୭ରେ ଲଣ୍ଡନ ସହରରେ ସେ ଆୟୋଜନ କରିଥିଲେ ସ୍ୱଦେଶୀ ଶିଳ୍ପ ପ୍ରଦର୍ଶନୀ । ୧୯୦୫ରେ ପ୍ରତିଷ୍ଠା କରିଥିଲେ ଉତ୍କଳ ଟ୍ୟାନେରି, ଯାହା ଦେଖି ବିଶ୍ୱ ଜାଣିଲା ଓଡ଼ିଆପୁଅର ହାତ ଯଶ କଥା । ସେଥିପାଇଁ 'ଉତ୍କଳ ଦୀପିକା' ସେତେବେଳେ ଲେଖିଥିଲେ – ''ଜଣେ ଓଡ଼ିଆ ପୁଅ ଗୋଟିଏ ବ୍ୟବସାୟରେ ହାତ ଦେଇ ପୃଥିବୀର ଶିଳ୍ପ ରାଜ୍ୟରେ ଓଡ଼ିଶାର ଯେଉଁ ସୁଖ୍ୟାତି ଅର୍ଜନ କରିଛି, ସେଥି ସକାଶେ ଆମ୍ଭେମାନେ ଗର୍ବ ଅନୁଭବ କରୁ'' । ଟ୍ୟାନେରିର ଜୋତା ସେତେବେଳେ ଖୁବ ଆଦୃତି ଲାଭ କରିଥିଲା ଜାପାନ, ଫ୍ରାନ୍ସ ଓ ରୁଷିଆ ଆଦି ଦେଶରେ । ମଧୁବାବୁ ଭାବୁଥିଲେ ଓଡ଼ିଶା ନିର୍ମିତ ଜୋତା ତାର ଉଚ୍ଚମାନ ରକ୍ଷା କରି ନ ପାରିଲେ ବଦ୍‌ନାମ ହେବ ଓଡ଼ିଆ ଜାତି । ଏଭଳି ଜାତିପ୍ରେମ ଯୋଗୁଁ କ୍ରମାଗତ କ୍ଷତିକୁ ସାମ୍ନା କରି ଶେଷରେ ବୁଡ଼ିଗଲା ଉତ୍କଳ ଟ୍ୟାନେରି । ମଧୁବାବୁ ବୁଝିଥିଲେ ଯେବେଠାରୁ ଆମ ସମାଜରେ ଶ୍ରମ ମର୍ଯ୍ୟାଦାଚ୍ୟୁତ ହୋଇଛି, ସେବେଠାରୁ ଆମକୁ ଗ୍ରାସିଛି ଦାରିଦ୍ର୍ୟତା । ତେଣୁ ଶ୍ରମ ଓ ଶ୍ରମିକର ମର୍ଯ୍ୟାଦା ନିମନ୍ତେ ଅକ୍ଳାନ୍ତ ପ୍ରଚେଷ୍ଟା ଓ ବିପୁଳ ଅର୍ଥ ବ୍ୟୟରେ ସେ ପ୍ରତିଷ୍ଠା କରିଥିଲେ ଭାରତ ବିଖ୍ୟାତ ତାରକସି ଶିଳ୍ପ । ତାରକସି କାରିଗରମାନଙ୍କୁ କାବୁଲି ମହାଜନ ଓ ବ୍ୟବସାୟୀମାନଙ୍କ ଶୋଷଣରୁ ରକ୍ଷା କରିବା ପାଇଁ ୧୮୯୭ରେ ପ୍ରତିଷ୍ଠା କରିଥିଲେ ଓଡ଼ିଶା ଆର୍ଟ ବା ଓଡ଼ିଶା ଶିଳ୍ପାଗାର । ଦୂରଦ୍ରଷ୍ଟା ମଧୁବାବୁ ଥିଲେ ସମବାୟ ଆନ୍ଦୋଳନର ଆଦ୍ୟ ଉଦ୍‌ଗାତା । ତାଙ୍କରି ଉଦ୍ୟମ ଯୋଗୁଁ ୧୮୯୮ ମସିହା ଜୁନ୍ ମାସ ୧୧ ତାରିଖରେ ପ୍ରତିଷ୍ଠା ହୋଇଥିଲା 'କଟକ ଖାଉଟି ଭଣ୍ଡାର' । ଏ ସମ୍ପର୍କରେ 'ଉତ୍କଳ ଦୀପିକା' ଲେଖିଥିଲେ (୧୮.୦୬.୧୮୯୮), ''ମଧୁସୂଦନ ଦାସଙ୍କ ଘରଠାରେ ୧୮୯୮ ମସିହା ଜୁନ୍ ମାସ ୧୧ ତାରିଖରେ ଏକ ସର୍ବସାଧାରଣ ସଭାରେ ବହୁ ସଂଖ୍ୟକ ଓକିଲ, ମୁକ୍ତାର ଓ ଅମଲା ଉପସ୍ଥିତ ଥିଲେ । ତହିଁରେ ଅଂଶୀଦାର ଓ ସର୍ବସାଧାରଣଙ୍କୁ ଚାଉଳ, ଡାଲି, ଘିଅ, ତେଲ, ଲୁଗା ଓ ଜାଳିବା ପାଇଁ କାଠ ଇତ୍ୟାଦି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟମାନ ଯୋଗାଇବା ପାଇଁ ଗୋଟିଏ ଯୌଥ ଭଣ୍ଡାର ସ୍ଥାପନ ପାଇଁ ସ୍ଥିର ହେଲା । ବାବୁ ମଧୁସୂଦନ ଦାସ ଉକ୍ତ ଯୌଥ ଭଣ୍ଡାରର ସମ୍ପାଦକ ଏବଂ ଜାନକୀନାଥ ବସୁ କୋଷାଧ୍ୟକ୍ଷ ନିଯୁକ୍ତ ହେଲେ । ପ୍ରତି ଛ'ମାସରେ ଅଂଶୀଦାରମାନଙ୍କ ସଭା ହେବ । କେବଳ ଓଡ଼ିଶାରେ କାହିଁକି, ଏହାଥିଲା ସମଗ୍ର ଦେଶରେ ସମବାୟ ଆନ୍ଦୋଳନର ଐତିହାସିକ ଅଭ୍ୟୁଦୟ । ଗାନ୍ଧିଜୀଙ୍କ ବହୁ ପୂର୍ବରୁ ସେ ଲୁଣମରା ଅଭିଯାନ ଆରମ୍ଭ କରିଥିଲେ ଏବଂ ଉତ୍କଳ ସମ୍ମିଳନୀ ମଣ୍ଡପରେ ବସି ସୂତା କାଟିଥିଲେ କୁଟୀରଶିଳ୍ପର ବିକାଶ ପାଇଁ ।

ଦେଶର ତରୁଣ ସମାଜକୁ ଜାଗ୍ରତ କରିବା ପାଇଁ ସେ ୧୯୦୩ ମସିହାରେ ଆରମ୍ଭ କରିଥିଲେ ଛାତ୍ର ସମ୍ମିଳନୀ । ରୁଷିଆର ଅକ୍ଟୋବର ବିପ୍ଳବ ବହୁପୂର୍ବରୁ (୧୯୦୯) କୃଷକମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ସେ ଗଠନ କରିଥିଲେ ପ୍ରଜା ପରିଷଦ । ତତ୍‌କାଳୀନ ବଙ୍ଗ ଦେଶର ବିଧାନସଭାରେ ଜମିଦାରମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଆଗତ ପ୍ରଜାସ୍ୱତ୍ତ୍ୱ ବିଲ୍ ବିରୋଧରେ ସେ ଉପସ୍ଥାପନ କରିଥିବା ବଳିଷ୍ଠ ଓ ଯୁକ୍ତିସିଦ୍ଧ ବକ୍ତବ୍ୟରେ ପ୍ରଭାବିତ ହୋଇ ବିଲ୍‌ଟିକୁ ଅଗ୍ରାହ୍ୟ କରିଦେଇଥିଲେ ଲର୍ଡ ହାର୍ଡିଞ୍ଜ । କୋର୍ଟ କଚେରିରେ ମହିଳାମାନଙ୍କୁ ସାହାଯ୍ୟ କରିବା ପାଇଁ ସେ ନିଜର ପାଳିତା କନ୍ୟା ସୁଧାଂଶୁବାଳାଙ୍କୁ ପଢେଇଥିଲେ ଓକିଲାତି । ମାତ୍ର ଲିଗାଲ ପ୍ରାକ୍ଟିସନର୍ସ ଆକ୍ଟରେ ମହିଳାମାନେ ଓକିଲ ହେବାର ବିଧି ନଥିବାରୁ ସୁଧାଂଶୁବାଳାଙ୍କୁ ମିଳିନଥିଲା ଓକିଲାତି ଲାଇସେନ୍ସ । ଏହାର ପ୍ରତିବାଦରେ ମଧୁବାବୁ ମୋକଦ୍ଦମା କଲେ ଏବଂ ପ୍ରିଭି କାଉନସିଲ ପର୍ଯ୍ୟନ୍ତ ଲଢ଼ିବା ଫଳରେ ବଦଳିଲା 'ଲିଗାଲ ପ୍ରାଟିସନର୍ସ ଆକ୍ଟ' । ସୁଧାଂଶୁବାଳା ଓକିଲାତି କଲେ ଏବଂ ନାରୀ ସଶକ୍ତିକରଣ କ୍ଷେତ୍ରରେ ଯୋଡ଼ିହେଲା ନୂଆ ଫର୍ଦ୍ଦ ।

ମଧୁବାବୁଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା 'ଓଡ଼ିଆ' ନାମକ ଏକ ଇଂରାଜୀ ସମ୍ବାଦପତ୍ର । ସେସମୟରେ ଏହି ସାପ୍ତାହିକ ସମ୍ବାଦପତ୍ରକୁ କୁହାଯାଉଥିଲା ସାମାଜିକ ଓ ରାଜନୈତିକ ଓଡ଼ିଶାର ମୁଖପତ୍ର । ମଧୁବାବୁ ସେଥିରେ ନିୟମିତ ଲେଖୁଥିଲେ ବିଭିନ୍ନ ବିଷୟରେ ଚିନ୍ତାଗର୍ଭକ ପ୍ରବନ୍ଧ ଓ ଅନେକ ଟୀକାଟିପ୍ପଣୀ । ସେତେବେଳେ ଓଡ଼ିଶାର ବହୁ ଯାତ୍ରାଦଳ ଥିଲେ ବି ସ୍ୱତନ୍ତ୍ର ରଂଗମଂଚ ନଥିଲା ଏବଂ ପରିବେଷଣ କୌଶଳ ଥିଲା ଅତି ନିମ୍ନମାନର । ଏହି ଅଭାବ ଦୂର କରିବା ପାଇଁ ମଧୁବାବୁ ନିଜ ଘର ସାମ୍ନାରେ ଅସ୍ଥାୟୀ ରଂଗମଂଚ ନିର୍ମାଣ କରି ନାଟକ ମଞ୍ଚସ୍ଥ କରାଇଥିଲେ ଅଭିନବ ଢଙ୍ଗରେ । ଏ ସମ୍ପର୍କରେ 'ଉତ୍କଳ ଦୀପିକା' ୧୮୮୮ ମସିହା ଜୁନ୍ ୨ ତାରିଖରେ ଲେଖିଥିଲେ – ''ବାବୁ ମଧୁସୂଦନ ଦାସଙ୍କ କଲ୍ୟାଣରୁ ଏ ନଗରରୁ ନାଟ୍ୟଶାଳାର ଅଭାବ ଦୂର ହେବାରୁ ଏଠାରେ ସୌଖିନ – ଦର୍ଶକ ସମ୍ପ୍ରଦାୟ ନାଟ୍ୟାଭିନୟ ଦେଖିବାକୁ ଅଧିକ ତତ୍ପର ହେବାର ଜାଣି ଆମ୍ଭେ ଆନନ୍ଦିତ ହୋଇଅଛୁ ।'' ଏଥିସହିତ କୁଷ୍ଠାଶ୍ରମ ସ୍ଥାପନ, ଜଗନ୍ନାଥ ଯାତ୍ରୀଙ୍କ ନିମନ୍ତେ ହଇଜା ପ୍ରତିଷେଧକ ବ୍ୟବସ୍ଥା, ବ୍ୟାୟାମ ଶିକ୍ଷାର ପ୍ରସାର, ସାମ୍ପ୍ରଦାୟିକ ସଦ୍‌ଭାବନା ପ୍ରତିଷ୍ଠା ଆଦି ବିଭିନ୍ନ କ୍ଷେତ୍ରରେ ସେ ଛାଡ଼ିଯାଇଥିବା ଅକଳନ ଦାନକୁ ସ୍ମରଣ କରି କବି ବିଦ୍ୟୁତପ୍ରଭାଦେବୀ ଲେଖିଛନ୍ତି –

''ଆଧୁନିକ ଉତ୍କଳର ଯାହା କିଛି ସର୍ବଶ୍ରେଷ୍ଠ କୃତ୍ୟ
ତା ତଳେ ଅଦେଖା ଭାବେ ରହି ଅଛି ଲୁଚି ତୁମ ହାତ ।''

ଦାଦାଭାଇ ନାରୋଜୀ ଓ ସାର୍ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ପରେ ବ୍ରିଟିଶ ପାର୍ଲାମେଣ୍ଟକୁ ସମ୍ବୋଧିତ କରିବାରେ ମଧୁବାବୁ ହେଉଛନ୍ତି ତୃତୀୟ ଭାରତୀୟ । ବ୍ରିଟିଶ ପାର୍ଲିଆମେଣ୍ଟରେ ମଧୁବାବୁଙ୍କ ବକ୍ତବ୍ୟର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲା 'ଲଣ୍ଡନ ଟାଇମସ୍' । ବ୍ରିଟେନର ପ୍ରଧାନମନ୍ତ୍ରୀ ସାର୍ ରାମସେ ମ୍ୟାକ୍‌ଡୋନାଲଡ ମଧୁବାବୁଙ୍କୁ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ବୋଲି ଅଭିହିତ କରିଥିବା ବେଳେ ତାଙ୍କୁ ରୋମ୍‌ର ପ୍ରସିଦ୍ଧ ସିନେଟର କେଟୋଙ୍କ ସହିତ ତୁଳନା କରିଥିଲେ ବଂଗର ଗଭର୍ଣ୍ଣର ବୋର୍ଡର ଲିନ୍ । ମଧୁବାବୁଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ତାଙ୍କୁ ୧୯୦୪ ମସିହାରେ 'ଭାରତ ସାମ୍ରାଜ୍ୟର ସଖା' ଉପାଧିରେ ଭୂଷିତ କରିଥିଲେ ଇଂରେଜ ସରକାର । ଦେଶ ପାଇଁ ତାଙ୍କର ତ୍ୟାଗ, ସାଧନା ଓ ସଫଳତାରେ ମୁଗ୍ଧ ହୋଇ ତାଙ୍କୁ ବିଭିନ୍ନ ସମୟରେ ପ୍ରଶଂସା କରିଛନ୍ତି ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ ଓ ରବୀନ୍ଦ୍ରନାଥ ଟାଗୋର ପ୍ରମୁଖ ପ୍ରଣମ୍ୟ ପୁରୁଷ । ହରିଜନଙ୍କ ପ୍ରତି ମଧୁବାବୁ ପୋଷଣ କରିଥିବା ଚିନ୍ତାଧାରାରେ ମୁଗ୍ଧ ହୋଇ ମହାତ୍ମାଗାନ୍ଧୀ କହିଥିଲେ – ''ସମାଜରେ ଏକ ଅଂଶ ପ୍ରତି ଆମେ ଯେଉଁ ଅପରାଧ କରି ଚାଲିଛେ, ମଧୁସୂଦନ ଦାସ ସେଇ ସମ୍ପର୍କରେ ମୋର ଆଖି ଖୋଲି ଦେଇଛନ୍ତି ।''

କେବଳ କଥାରେ ନୁହେଁ, ମଧୁବାବୁ ଥିଲେ ମନରେ, ପିଣ୍ଡରେ ଓ ପ୍ରାଣରେ ଓଡ଼ିଆ । ଓଡ଼ିଆ ଜାତି ପାଇଁ ତାଙ୍କର ଆକୁଳ ବେଦନା, ଆତ୍ମୀୟତା, ଆନ୍ତରିକତା ଓ ତ୍ୟାଗ ଅକଳ୍ପନୀୟ । ଜୀବନରେ ସେ ବିପୁଳ ଅର୍ଥ ଉପାର୍ଜନ କରିଥିଲେ ବି ସବୁ ବିନିଯୋଗ କରି ଦେଇଛନ୍ତି ଜାତୀୟ ସ୍ୱାର୍ଥ ନିମନ୍ତେ । ଏ ସମ୍ପର୍କରେ ସେ କହିଛନ୍ତି – 'ମୁଁ ଟଙ୍କା ଥଳି ଧରି ଜନ୍ମ ହୋଇନଥିଲି । ଯାହା ଅର୍ଜିଛି ତାକୁ ମୋ ଜନନୀ ପାଇଁ, ମୋ ଭାଇ ଭଉଣୀଙ୍କ ପାଇଁ ଖର୍ଚ୍ଚକରି ଫେରିଯିବି ଶୂନ୍ୟ ହସ୍ତରେ । ଶେଷ ଜୀବନରେ ସେ ଶୂନ୍ୟହସ୍ତ ହୋଇ ପଡ଼ିଛନ୍ତି ସତ, ହେଲେ ଆତ୍ମସମ୍ମାନକୁ ଜଳାଞ୍ଜଳି ଦେଇ ହାତ ପତେଇ ନାହାନ୍ତି କାହା ପାଖରେ । ତାଙ୍କର ବ୍ୟକ୍ତିଗତ ଦର୍ଶନ ଥିଲା – 'ଆଲୋ ସଖୀ ଆପଣା ମହତ ଆପେ ରଖି ।'

ରାଜନୀତି ଥିଲା ମଧୁବାବୁଙ୍କ କର୍ମମୟ ଜୀବନର ପ୍ରମୁଖ ଅଙ୍ଗ । ମାତ୍ର ରାଜନୀତି ଅର୍ଥ ସେ ବୁଝିଥିଲେ ଦେଶପ୍ରେମ । ଏକ ନିଃସ୍ୱାର୍ଥପର ସେବା । ତେଣୁ ୧୯୨୧ ମସିହାରେ ବିହାର-ଓଡ଼ିଶାରେ ମନ୍ତ୍ରୀ ହେବାପରେ କ୍ଷମତା ଲିପ୍‌ସା ଓ ସ୍ୱାର୍ଥର ଊର୍ଦ୍ଧ୍ୱରେ ରହି ସେ ଉଠେଇଥିଲେ ମନ୍ତ୍ରୀପଦକୁ ଅବୈତନିକ କରିବା ଦାବି । ତାଙ୍କର ଏ ଦାବି ଅଗ୍ରାହ୍ୟ ହେବାରୁ ୧୯୨୩ ମସିହା ମାର୍ଚ୍ଚ ୧୮ ତାରିଖରେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଭାରତୀୟ ରାଜନୀତିରେ ସୃଷ୍ଟିକଲେ ଏକ ନୂଆ ଇତିହାସ । ନେତୃତ୍ୱ ଯେଉଁଠି ଆଦର୍ଶ ହୋଇ ଦିଗ୍‌ଦର୍ଶନ ଦିଏ, ସେଠାରେ ଉତ୍ତରପିଢ଼ି ପାଇଁ

ଆଲୋକବର୍ତ୍ତିକା ହୋଇ ରହିଯାଏ ଆଦର୍ଶବାଦୀର ବ୍ୟକ୍ତିତ୍ୱ । ମଧୁବାବୁଙ୍କର ସେହି ଆଦର୍ଶ ଓ ତ୍ୟାଗପୂତ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ବ୍ୟାସକବି ଫକୀରମୋହନ ଲେଖିଥିଲେ –

''ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ
ଉତ୍କଳ ମାତାର ଯୋଗ୍ୟ ନନ୍ଦନ ।
ଦେଇ ଉତ୍କଳକୁ ନବ ଜୀବନ
ଶିଖାଇଲ ଲୋକେ ଜାତି ବନ୍ଧନ ।''

ଅବସ୍ଥା ଚକ୍ରରେ ପଡ଼ି ମଧୁବାବୁ ଧର୍ମାନ୍ତରିତ ହୋଇଥିଲେ ସତ, କିନ୍ତୁ ମହାପ୍ରଭୁ ଶ୍ରୀଜଗନ୍ନାଥ ଥିଲେ ତାଙ୍କର ଆରାଧ୍ୟ ଦେବତା । ଉତ୍କଳ ସମ୍ମିଳନୀ ଠାରୁ ଆରମ୍ଭ କରି ଇମ୍ପେରିଆଲ କାଉନସିଲ୍ ପର୍ଯ୍ୟନ୍ତ ଯେଉଁଠି ଭାଷଣ ଦେଲେ ବି ସେ ଉଚ୍ଚାରଣ କରନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନାମ । ଓଡ଼ିଆ ଘରେ ଶିଶୁଟିଏ ଜନ୍ମ ହେଲେ ଶ୍ରୀଜଗନ୍ନାଥ ଓ ଗଜପତିଙ୍କ ନାମରୁ ହିଁ ଲେଖାଯାଏ ତାର ଜାତକ । ଏହିକଥା ଚେତେଇ ଦେବା ପାଇଁ ଓଡ଼ିଆ ଜାତିକୁ ଆହ୍ୱାନ ଦେଇ ସେ ଲେଖିଛନ୍ତି –

କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ ଡ଼ାକ ତ୍ରାହି ଜଗନ୍ନାଥ,
ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ ଜାତିର ଉନ୍ନତି ପଥ ।

ବ୍ରିଟିଶ ସରକାରଙ୍କ ଚକ୍ରାନ୍ତରୁ ଶ୍ରୀମନ୍ଦିର ତଥା ଗଜପତି ପରମ୍ପରାର ସୁରକ୍ଷା ପାଇଁ ସେ ଯେଉଁ ଅଦାଲତି ଲଢ଼େଇ ଲଢ଼ିଥିଲେ ତାହା ତାଙ୍କ ଜଗନ୍ନାଥପ୍ରାଣତାର ନମୁନା । ୧୮୮୭ ମସିହାର ଘଟଣା । ପୁରୀ ଶ୍ରୀମନ୍ଦିରକୁ ନିଜ କବ୍‌ଜାକୁ ନେବା ଉଦ୍ଦେଶ୍ୟରେ ଗଜପତି ଦିବ୍ୟସିଂହଦେବଙ୍କୁ ଏକ ମିଛ ମୋକଦ୍ଦମାରେ ଫସାଇ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତକଲେ ଇଂରେଜ ସରକାର । ସେତେବେଳେ ଗଜପତିଙ୍କ ପୁତ୍ର ଜଗନ୍ନାଥ ଜେନାମଣି ଥିଲେ ନାବାଳକ । ଏହାର ସୁଯୋଗ ନେଇ ବ୍ରିଟିଶ ସରକାର ରତ୍ନ ଭଣ୍ଡାରରେ ଜଉମୁଦ ଦେଲେ କୋର୍ଟ ଆଦେଶ ବଳରେ । ଏଭଳି ସ୍ଥିତିରେ ଶ୍ରୀମନ୍ଦିର ପରମ୍ପରାର ସୁରକ୍ଷା ପାଇଁ ଅଣ୍ଟା ଭିଡ଼ିଲେ ଦିବ୍ୟସିଂହଦେବଙ୍କ ମାତା ସୂର୍ଯ୍ୟମଣି ପାଟମହାଦେଈ । ବିଡ଼ମ୍ବନାର ବିଷୟ ରାଜମାତାଙ୍କ ଅନୁରୋଧ ସତ୍ତ୍ୱେ ମୋକଦ୍ଦମା ଲଢ଼ିବାକୁ ଆଗେଇ ଆସିଲେ ନାହିଁ କୌଣସି ନାମିଦାମୀ ଓକିଲ । ଓଡ଼ିଆ ଜାତିର ଏହି ସଙ୍କଟ କାଳରେ ନୀରବ ହୋଇ ବସି ପାରିଲେନି ଜାତିପ୍ରାଣ ମଧୁବାବୁ । ହେଲେ ସେଇ ମଧୁବାବୁ ସ୍ୱତଃପ୍ରବୃତ୍ତ ହୋଇ ଲଢ଼ିଲେ ମୋକଦ୍ଦମା । ଶ୍ରୀମନ୍ଦିର ଓ ଗଜପତି ପରଂପରା ସଂପର୍କରେ ବ୍ୟାପକ ଅନୁଧ୍ୟାନ ପୂର୍ବକ ପ୍ରସ୍ତୁତ କଲେ ଏକ ଐତିହାସିକ ଆବେଦନପତ୍ର (ଅର୍ଜି) । କେତେଜଣ ବରିଷ୍ଠ ଓକିଲଙ୍କ ଜରିଆରେ କଲିକତା ହାଇକୋର୍ଟରେ ଦାୟର କଲେ ମୋକଦ୍ଦମା । ମହାପ୍ରଭୁଙ୍କ ଅପାର କରୁଣାରୁ ଗଜପତି ପରଂପରା ସପକ୍ଷରେ ଆସିଲା ରାୟ । ରାୟ ନକଲ ଧରି କଲିକତାରୁ କଟକ ଫେରିଲେ ବିଜୟୀବୀର ମଧୁବାବୁ । ସାରା ଓଡ଼ିଶାରେ ଖେଳିଗଲା ଖୁସିର ଲହରୀ । ସେତେବେଳେ କଟକରୁ ପୁରୀ ଯିବାକୁ ଟ୍ରେନ୍ କିମ୍ବା ବସ୍ ନ ଥିବାରୁ ତାଙ୍କୁ ପୁରୀ ଯିବାକୁ ପଡ଼ିଲା ପାଲିଙ୍କି ସାହାଯ୍ୟରେ । ତାଙ୍କ ସହ ସଂକୀର୍ତ୍ତନ କରି ଶହଶହ ଲୋକ ଚାଲିଲେ ଶୋଭାଯାତ୍ରାରେ । ଶଙ୍ଖ, ଘଣ୍ଟା, ହରିବୋଲ, ହୁଳହୁଳି ଓ ସଙ୍କୀର୍ତ୍ତନରେ କମ୍ପିଲା ରାସ୍ତା । ସାକ୍ଷୀଗୋପାଳ ପାଖରୁ ଜନଗହଳି ବହୁତ ବଢ଼ିଗଲା ଏବଂ ଲୋକେ ଏତେ ଭାବବିହ୍ୱଳ ହୋଇପଡ଼ିଲେ ଯେ ସେମାନେ ମଧୁବାବୁଙ୍କୁ ପାଲିଙ୍କିରୁ ଟେକି ନେଇ କାନ୍ଧରେ ବସେଇ ଶୋଭାଯାତ୍ରାରେ ଚାଲିଲେ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ । କୌଣସି ଦିଗ୍‌ବିଜୟୀ ସମ୍ରାଟଙ୍କ ବିଜୟ ଉତ୍ସବ ତୁଳନାରେ କିଛି କମ୍ ନଥିଲା ସେ ଶୋଭାଯାତ୍ରା ।

୧୮୯୭ରେ ପ୍ରଥମଥର ପାଇଁ ବିଲାତ ଯାତ୍ରାକଲେ ମଧୁବାବୁ । ୧୮୯୮ରେ ଫେରିବା ପରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ 'ଉତ୍କଳଗୌରବ' ବୋଲି ଅଭିହିତ କଲା 'ଉତ୍କଳ ଦୀପିକା' । ପରିଣତ ବୟସରେ ତାଙ୍କୁ କୁଳବୃଦ୍ଧ ବୋଲି ସମ୍ବୋଧନ କରୁଥିଲେ ବନ୍ଧୁମାନେ । ସେ କିନ୍ତୁ କହୁଥିଲେ ମୋତେ କୁଳବୃଦ୍ଧ ନ ଡ଼ାକି ଚିର ଯୁବକ (Grand Young man) ବୋଲି ଡ଼ାକ । ଏହାଦ୍ୱାରା ମୋର କର୍ମପ୍ରବଣତା ବୃଦ୍ଧି ପାଇବ । ବାସ୍ତବରେ ପରିଣତ ବୟସରେ ବି ମଧୁବାବୁଙ୍କ ପାଖରେ ଥିଲା ତାରୁଣ୍ୟର ଉଦ୍ଦାମତା । ସେକଥା ଅନୁଭବ କରି ତାଙ୍କ ଜୀବନୀ ଲେଖକ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି – 'ତାରୁଣ୍ୟ ଭଂଗୁର ଦେହରେ ନାହିଁ,

ଅଛି ମାନସିକତାରେ, ଅତୃପ୍ତି, ଆକାଂକ୍ଷା ଓ ଉଦ୍‌ବେଳନ ପୁଣି ଅବଦମିତ ସଂକଳ୍ପ ମଧ୍ୟରେ । ମଧୁସୂଦନ ଥିଲେ ତାର ପ୍ରତୀକ ।'' (କୁଳବୃଦ୍ଧ)

ଓଡ଼ିଶା ଇତିହାସର ମହାନାୟକ ମଧୁବାବୁଙ୍କ ଜୀବନଦୀପ ନିର୍ବାପିତ ହେଲା ୧୯୩୪ ମସିହା ଫେବୃୟାରୀ ୪ ତାରିଖରେ । ସକାଳ ହେଲାବେଳକୁ ଏହି ଦାରୁଣ ଦୁଃସମ୍ବାଦ ଚାରିଆଡ଼େ ବ୍ୟାପୀ ସାରିଥିଲା ଏବଂ ମଧୁସ୍ମୃତି ହତା ଆଡ଼େ ଛୁଟିଥିଲା ଶୋକସନ୍ତପ୍ତ ଜନତାର ସୁଅ । ସବୁରି ମୁହଁରେ ଗୋଟିଏ କଥା- ଦୀପ ଲିଭିଗଲା । କୁଳବୃଦ୍ଧଙ୍କ ପୁଷ୍ପବିମଣ୍ଡିତ ମର ଦେହକୁ ଗୋଟିଏ ଖୋଲା କଫିନ ଉପରେ ରଖି ପଟୁଆର ଚାଲିଲା ବାରବାଟୀ ଦୁର୍ଗ ଆଡ଼େ । ରାସ୍ତାସାରା ଲୋକାରଣ୍ୟ । ଦୁଇ କଡ଼ରେ ଥିବା କୋଠା ଉପରୁ ବୃଷ୍ଟି ହେଉଥାଏ ପୁଷ୍ପ । ପଟୁଆର ବାରବାଟୀ ଦ୍ୱାର ଦେଶରେ ପହଞ୍ଚିଲାବେଳକୁ ପଶ୍ଚିମଦିଗକୁ ଢଳି ସାରିଥିଲେ ସୂର୍ଯ୍ୟ । କବରର ଗର୍ଭ ଭିତରକୁ ଓହ୍ଲାଇ ଦିଆଗଲା କଫିନ । ହାତରେ ଆଞ୍ଜୁଳା ଆଞ୍ଜୁଳା ମାଟି ଧରି ଅଶ୍ରୁପୂର୍ଣ୍ଣ ନୟନରେ ଓଡ଼ିଆ ଜାତିର ତ୍ରାଣକର୍ତ୍ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେଲେ ଉପସ୍ଥିତ ଜନତା । ସ୍ନେହମୟୀ ଉତ୍କଳ ଜନନୀ ତାଙ୍କୁ କୋଳାଗ୍ରତ କରିନେଲା ସେହି ଶୋକାକୁଳ ପରିବେଶରେ । ମାତ୍ର ତାଙ୍କ ଅବର୍ତ୍ତମାନର ପରେ ବି ଏ ଜାତି ତାଙ୍କୁ ଝୁରୁଛି ଏବଂ ଝୁରୁଥିବ କାଳ କାଳ ପାଇଁ ।

ବିଜୁ ପଟ୍ଟନାୟକ ନଗର, ଭଦ୍ରକ

# ଓଡ଼ିଶା ମୋର ଦେଶ

ଧନଞ୍ଜୟ ସ୍ୱାଇଁ

ଓଡ଼ିଶା ମୋର ଦେଶ
ଯେଉଁ ଦେଶ ରାଜା ଝାଡୁ ହାତେ ଧରି
ଦେବତାର ହୁଏ ଦାସ
ଓଡ଼ିଶା ମୋର ଦେଶ ।
ମାଟି କାନ୍ଥେ ଲେଖା ତାର ଝୋଟି ଚିତା
ପଥରେ ଫୁଟିଛି କଳାର କବିତା
ଯେ ଦେଶ ପାହାଡ଼ ପରବତ ଅଟେ
ମୁନି ଋଷିଙ୍କର ବାସ
ଓଡ଼ିଶା ମୋର ଦେଶ ।
ଏ ଦେଶର ପୁଅ ସାଗରକୁ ଡେଇଁ
ଆଣୁଥିଲେ ହୀରା, ନୀଳା, ମୋତି ବୋହି
ଯେ ଦେଶ କୃଷକ ମାଟି ସାଥେ ମିଶି
ଫଳାଏ ସୁନାର ଶସ୍ୟ
ଓଡ଼ିଶା ମୋର ଦେଶ ।
ହେଲେ ହେଉ ପଛେ ଯେତେ ରକ୍ତକ୍ଷୟ
ହୃଦୟର ଜୟ ପ୍ରକୃତ ବିଜୟ
ଏହି କଥା କୁହେ ସଭିଙ୍କୁ ନିର୍ଭୟେ
ଧଉଳିର ଇତିହାସ
ଓଡ଼ିଶା ମୋର ଦେଶ ।
ହେ ଦରଦୀ, ତ୍ୟାଗବୀର ଗୋପବନ୍ଧୁ
ବିପ୍ଳବୀ ସୁଭାଷ, ସ୍ୱାଭିମାନୀ ମଧୁ
ଭୋଗ ନୁହେଁ ତ୍ୟାଗ ଅକ୍ଷୟ କୀରତି
ଯାହାଙ୍କର ଆଦରଶ
ଓଡ଼ିଶା ମୋର ଦେଶ ।

'ମଙ୍ଗଳାଳୟ',ପ୍ଲଟ୍ ନଂ-୩୪୮୭
ଗ୍ରାମ-ପୋଷ୍ଟ- ରାଜେନ୍ଦ୍ର ନଗର
ମଙ୍ଗଳା ମନ୍ଦିର ରୋଡ଼, ବର୍ଦ୍ଧନ ଗଳି
କଟକ-୭୫୩୦୧୦

# ଭାରତୀୟ ବୈଦେଶିକ ନୀତି

ପ୍ରଫେସର ସୂର୍ଯ୍ୟନାରାୟଣ ମିଶ୍ର

ଗୋଟିଏ ରାଷ୍ଟ୍ରରେ ଆଭ୍ୟନ୍ତରୀଣ ସ୍ଥିତି ଓ ନୀତି ବିଶ୍ୱ ଦରବାରରେ ଯୋଗଦାନ ପାଇଁ ଯଥେଷ୍ଟ ନୁହେଁ । କାରଣ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସୌହାର୍ଦ୍ଦ୍ୟ, ସହାନୁଭବତା ଓ ସହଭାଗିତା ରହିବା ଆଜିର ପରିବର୍ତ୍ତିତ ବିଶ୍ୱରେ ଏକାନ୍ତ ଆବଶ୍ୟକ । ଗୋଟିଏ ରାଷ୍ଟ୍ରର ବିଶ୍ୱ ଭୂଗୋଳରେ ସ୍ଥିତି ଓ ଏହାର ପରିବେଶ ତାର ନୀତି ନିର୍ଦ୍ଧାରଣରେ ସହାୟକ ହୋଇଥାଏ । ଏ ସଂକ୍ରାନ୍ତରେ ରାଜନୈତିକ ବ୍ୟବସ୍ଥା, ଶିଳ୍ପାୟନ, ଅର୍ଥନୀତିରେ ସ୍ୱରୂପ, ଦେଶର ନାଗରିକଙ୍କ ବ୍ୟବସ୍ଥା ପ୍ରତି ଆନୁଗତ୍ୟ, ପଡ଼ୋଶୀ ରାଷ୍ଟ୍ରମାନଙ୍କ ସହ ସମ୍ପର୍କ ଏବଂ ଆମଦାନୀ ଓ ରପ୍ତାନିର ଉତ୍ସ ଆଦି ଗୋଟିଏ ରାଷ୍ଟ୍ରର ବୈଦେଶିକ ନୀତି ପ୍ରସ୍ତୁତି ଓ ସଞ୍ଚାଳନ କରାଇଥାଏ । ରାଷ୍ଟ୍ରର ବୈଦେଶିକ ନୀତି ଆନ୍ତର୍ଜାତିକ ବ୍ୟବସ୍ଥା ଓ ସମ୍ପର୍କ ଉପରେ ପର୍ଯ୍ୟବସିତ ।

ବସ୍ତୁତଃ ଊନବିଂଶ ଶତାବ୍ଦୀ ପ୍ରାରମ୍ଭରୁ ନେପୋଲିୟନଙ୍କ ପରାଜୟ ପରେ ଗୋଟିଏ ସୁସ୍ଥ ଇଉରୋପୀୟ ବ୍ୟବସ୍ଥା ନିମନ୍ତେ ୪ ଗୋଟି ରାଷ୍ଟ୍ର (ଇଂଲଣ୍ଡ, ପ୍ରୁସିଆ, ଅଷ୍ଟ୍ରିଆ ଓ ଋଷ ) ଉଦ୍ୟମ କରିଥିଲେ । ପରେ ସେଥିରେ ଫ୍ରାନ୍ସକୁ ଗ୍ରହଣ କରାଯାଇଥିଲା । ଏହି ଉଦ୍ୟମକୁ ଭିଏନା କଂଗ୍ରେସ କୁହାଯାଏ । ଦେଶ ଦେଶ ମଧ୍ୟରେ ସମ୍ପର୍କ ଓ ଶକ୍ତି ଭାରସମ୍ୟ ରକ୍ଷା ଇତ୍ୟାଦି ବିଷୟରେ ଆଲୋଚନା କରାଯାଇ ଏହାର ସଂରକ୍ଷଣ ନିମନ୍ତେ ବିଭିନ୍ନ ସମିଳନୀ ମଧ୍ୟ କରାଯାଇଥିଲା । ଏହି ଉଦ୍ୟମ ୧୮୧୫ରୁ ୧୯୧୪ ମସିହା ପର୍ଯ୍ୟନ୍ତ ୟୁରୋପରେ ଆପାତତଃ ଶାନ୍ତି ବଜାୟ ରଖିଥିଲା ଓ ଜର୍ମାନୀ ଏବଂ ଇଟାଲୀ ସ୍ୱତନ୍ତ୍ର ରାଷ୍ଟ୍ର ହିସାବରେ ଗଠିତ ହୋଇଥିଲେ । ମହତ ଆକାଂକ୍ଷା ଥିବା ରାଷ୍ଟ୍ରମାନେ ଶିଳ୍ପ ବିପ୍ଳବର ଆବଶ୍ୟକ କଞ୍ଚାମାଲ୍‌ର ଆମଦାନୀ ଓ ବିକ୍ରୟ ପାଇଁ ବଜାର ସୃଷ୍ଟି କରିବା ଫଳରେ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ପ୍ରତିଯୋଗିତା ଓ ସାମଗ୍ରିକ ସରଞ୍ଜାମ ତିଆରି ତଥା ଗଚ୍ଛିତ କରି ରଖିବା ଦ୍ୱାରା ସାମୟିକ ଉତ୍ତେଜନା ମଧ୍ୟ ସୃଷ୍ଟି ହେଉଥିଲା ।

ବିଂଶ ଶତାବ୍ଦୀ ପ୍ରାରମ୍ଭରୁ ଭୟ ବାତାବରଣ ଦେଖା ଦେଲା । ସାମରିକ ସରଞ୍ଜାମ ଆମଦାନୀ ତଥା ପ୍ରସ୍ତୁତି ଓ ବ୍ୟବହାରକୁ ନିୟନ୍ତ୍ରଣ କରିବା ପାଇଁ ଆନ୍ତର୍ଜାତିକ ଆଇନମାନ ହେଲା । ତନ୍ମଧ୍ୟରୁ ହେଗ୍ ରେଗୁଲେସନ ଓ ଲଣ୍ଡନ ନାଭାଲ ସମାବେଶ ଅନ୍ୟତମ । କିନ୍ତୁ ମହତ ଆକାଂକ୍ଷୀ ଜର୍ମାନୀ ମୁଖ୍ୟ କାଇଜର ଉଇଲିୟମ୍ ଦ୍ୱିତୀୟଙ୍କ ବିସ୍ତାରବାଦୀ ତଥା ଯୁଦ୍ଧଖୋର ମନୋବୃତ୍ତି ୟୁରୋପ ରାଜନୀତିରେ ଝଡ଼ ସୃଷ୍ଟି କରି ଦୁଇଟି ସାମରିକ ଗୋଷ୍ଠୀ ଗଠନ ହେଲା । ଏହି ଅପରିଣାମଦର୍ଶିତା ପରିପ୍ରେକ୍ଷୀରେ ଦୁଇଗୋଟି ବିଶ୍ୱଯୁଦ୍ଧ ବିଂଶ ଶତାବ୍ଦୀର ପ୍ରଥମ ୫୦ ବର୍ଷ ମଧ୍ୟରେ କରାଇଲା ଓ ଦୁଇଟିଯାକ ଜର୍ମାନୀ ଦ୍ୱାରା ଆରମ୍ଭ ଓ ଆମେରିକାର ନେତୃତ୍ୱରେ ଗଠିତ ଗୋଷ୍ଠୀ ଦ୍ୱାରା ବିଜୟ ସହ ସମାପ୍ତ । ଏହା ମଧ୍ୟ କନ୍ଦଳ ନିୟନ୍ତ୍ରଣ କରି ସାମାଜିକ-ଅଥନୈତିକ ବିକାଶ ନିମନ୍ତେ ଆନ୍ତର୍ଜାତିକ ଅନୁଷ୍ଠାନ ଗଢ଼ାଇଲା । ବିଶ୍ୱ ଜାତିସଂଘ ଓ ଜାତିସଂଘ ଏହାର ଉଦାହରଣ ।

ଯେତେବେଳେ ବିଶ୍ୱରେ ସାମରିକ କାର୍ଯ୍ୟକ୍ରମର ସୂତ୍ରପାତ ହେଉଥିଲା, ଔପନିବେଶିକ ଭାରତରେ ରାଜନୈତିକ ସଚେତନତା ବୃଦ୍ଧି ସହ ସ୍ୱରାଜ ପାଇଁ ଆନ୍ଦୋଳନର ପ୍ରାକ୍ ପ୍ରସ୍ତୁତି ହେଉଥିଲା । ବ୍ରିଟିଶ ସରକାରଙ୍କଠାରୁ ସ୍ୱାୟତ୍ତ ଶାସନ ପାଇବା ପାଇଁ ପ୍ରମୁଖ ଆନ୍ଦୋଳନକାରୀ ଗୋଷ୍ଠୀ କଂଗ୍ରେସ

ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଜର୍ମାନ ବିରୋଧୀ ଶକ୍ତିଙ୍କୁ ସହାୟତା ଦେଇଥିଲା । କିନ୍ତୁ ଯୁଦ୍ଧ ପରେ ଔପନିବେଶିକ ସରକାର ଦମନ ଲୀଳା ଓ କଠୋର ଆଇନ ଦ୍ୱାରା ନିୟନ୍ତ୍ରଣ କରିବା ଆରମ୍ଭ କଲା । ଫଳରେ ୧୯୨୦-୧୯୪୨ ମସିହା ମଧ୍ୟରେ ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ ଓ ଭାରତଛାଡ଼ ଆନ୍ଦୋଳନ ଆମ ସ୍ୱାଧୀନତା ହାସଲ ପ୍ରକ୍ରିୟାକୁ ଶାଣିତ କରିଥିଲା ।

ଯଦିଓ ଭାରତ ଗୋଟିଏ ବ୍ରିଟିଶ ଶାସନାଧୀନ ଉପନିବେଶ ଥିଲା, ତଥାପି ଏହାର ଜାତୀୟବାଦୀ ସ୍ୱାଧୀନତା ଆନ୍ଦୋଳନ ବୈଦେଶିକ ନୀତି ତଥା ଆଭିମୁଖ୍ୟର ଅୟଂ ଆରମ୍ଭ କରିଥିଲା । ଦୁଇ ବିଶ୍ୱଯୁଦ୍ଧ ମଧ୍ୟବର୍ତ୍ତୀ କାଳରେ ଭାରତର ସଂଗ୍ରାମୀ ଜାତୀୟତାବାଦୀ ନେତାମାନେ ବିଶ୍ୱ ସମସ୍ୟା ସଂକ୍ରାନ୍ତରେ ଆଲୋଚନା ଓ ଅଗ୍ରଲେଖ ଲେଖୁଥିଲେ । ତନ୍ମଧ୍ୟରେ ଜବାହରଲାଲ ନେହେରୁ, କୃଷ୍ଣ ମେନନ, ଲୋହିଆ, ଜୟପ୍ରକାଶ ଆଦିଙ୍କ ଉଦ୍ୟମ ପ୍ରଶଂସନୀୟ । ନେହେରୁ କଂଗ୍ରେସର ବୈଦେଶିକ ନୀତି ପରଚାଳନା ସମିତିର ଅଧ୍ୟକ୍ଷ ଥିଲେ । ୧୯୩୯ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତରେ ଗଠିତ ନିର୍ବାଚିତ ସରକାରଙ୍କ ବିନା ପରାମର୍ଶରେ ଭାରତକୁ ଯୁଦ୍ଧରେ ଯୋଗଦେବା ଘୋଷଣା ଗାନ୍ଧୀ ଓ ଅନ୍ୟାନ୍ୟ ଜାତୀୟବାଦୀଙ୍କୁ ଦୃଢ଼ତାର ସହ ମୁକାବିଲା କରିବାକୁ ପ୍ରୋତ୍ସାହନ ଦେଇଥିଲା । ଭାରତ ଛାଡ଼ ଆନ୍ଦୋଳନ ଏବଂ ଗାନ୍ଧୀଙ୍କ ''କରୋ ୟା ମରୋ' ଉକ୍ତି ଏହାର ପ୍ରମାଣ ଦିଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅନ୍ତ ଭାରତ ପାଇଁ ଶୁଭଙ୍କର ଥିଲା । ଅବଶ୍ୟ ଆନ୍ତର୍ଜାତିକ ଆଲୋଚନା ଓ ସଙ୍ଗଠନମାନଙ୍କରେ ଭାରତ ୧୯୨୦ ମସିହାରୁ ଭାଗ ନେଇ ବିଶ୍ୱ ଜାତିସଂଘ ଓ ପରେ ମିଳିତ ଜାତିସଂଘର ପ୍ରତିଷ୍ଠାତା ସଦସ୍ୟ ହୋଇଥିଲା । ଆମେରିକାର ରାଷ୍ଟ୍ରପତି ରୁଜଭେଲ୍ଟଙ୍କ ପରାମର୍ଶକ୍ରମେ ଯୁଦ୍ଧ ପରବର୍ତ୍ତୀ ଦୁର୍ବଳ ବ୍ରିଟିଶ ସରକାରଙ୍କ ପତନ ପରେ ଶ୍ରମିକ ସରକାର ଗଠନ ହେବା ଦ୍ୱାରା ଆଲୋଚନାର ମାର୍ଗ ସରଳ ହୋଇ ପ୍ରଥମେ କ୍ୟାବିନେଟ୍ ମିଶନ ଓ ପରେ ମାଉଣ୍ଟବାଟେନ୍ ପ୍ରସ୍ତାବ ଦ୍ୱାରା କ୍ଷମତା ହସ୍ତାନ୍ତରୀକରଣ ଆଗେଇଲା । ୧୯୪୬ ମସିହାରେ ଭାରତୀୟମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଶାସନତନ୍ତ୍ରରେ ଯୋଗଦେବା ପାଇଁ ପଥ ସୁଗମ ହେଲା । ୧୯୪୭ ଅଗଷ୍ଟ ୧୫ ଆମ ପାଇଁ ସ୍ମରଣୀୟ ହୋଇ ରହିବ ।

ଉନବିଂଶ ଶତାବ୍ଦୀର ୟୁରୋପର ରାଜନୀତି ତଥା କୂଟନୀତି ବିଂଶ ଶତାବ୍ଦୀ ପ୍ରାରମ୍ଭରୁ ବିଶ୍ୱ ରାଜନୀତି ଓ କୂଟନୀତି ହୋଇସାରିଥିଲା । ଭାରତ ଯାହାକି ଏକ ସଭ୍ୟତା ସଂସ୍କୃତି ସମ୍ପନ୍ନ ରାଷ୍ଟ୍ର ବହୁ ଶତାବ୍ଦୀ ଧରି ବିଦେଶୀ ଶାସକଙ୍କ କବଳରେ ରହି ଏହାର ମାନ, ମର୍ଯ୍ୟାଦା ଓ ପରାକାଷ୍ଠା ପ୍ରାୟ ହରାଇ ବସିଥିଲା । କିନ୍ତୁ ଜାତୀୟତାବାଦୀ ଆନ୍ଦୋଳନ ଓ ତାର ପ୍ରମୁଖ ନେତୃତ୍ୱରେ ଚେଷ୍ଟା ଓ ଦୃଢ଼ ମନୋବଳ ପରିଶେଷରେ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଏକ ସମ୍ବେଦନଶୀଳ ସମୟରେ ସ୍ୱାଧୀନତା ହାସଲ କଲା । ଅବଶ୍ୟ ଭାରତ ତାର ପତିଆରା ପ୍ରଦର୍ଶନ କରିବା ପାଇଁ ୧୯୪୭ ମାର୍ଚ୍ଚ ମାସରେ ଦିଲ୍ଲୀଠାରେ ଏସିଆନ୍ ରିଲେସନ୍ କନ୍‌ଫରେନ୍ସ ଆୟୋଜନ କରି ଔପନିବେଶତା ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଦେଇଥିଲା । କିନ୍ତୁ ଦେଶ ସ୍ୱାଧୀନ ହେଲାବେଳକୁ ଏକ ଭିନ୍ନ ସ୍ୱାଦର ସମସ୍ୟା ଦେଖିବାକୁ ପାଇଲା । ତାହାଥିଲା ସମସ୍ୟା ସମାଧାନ ପାଇଁ ଗଠିତ ଜାତିସଂଘର ଅସହାୟତା ଓ ପୁଞ୍ଜିବାଦ-ସମାଜବାଦର ପ୍ରଭାବ ବିସ୍ତାର ଉଦ୍ୟମରୁ ଶୀତଳଯୁଦ୍ଧ । ନୂତନ କରି ସ୍ୱାଧୀନତା ପାଇଥିବା ଓ ଦୁଃଖଦପୂର୍ଣ୍ଣ ରାଷ୍ଟ୍ର ବିଭାଜନ ତଥା ଶରଣାର୍ଥୀ ସମସ୍ୟା ସହ ଅର୍ଥନୀତିକୁ ଠିକ୍ ରାସ୍ତାରେ ଚଳାଇବା କଷ୍ଟକର ଥିଲା । ଏଥିପାଇଁ ଦରକାର ଥିଲା ଦୃଢ଼ ଆଭ୍ୟନ୍ତରୀଣ ନୀତି ଓ କାର୍ଯ୍ୟକ୍ରମ ଯାହାକୁ ଲୌହମାନବ ସର୍ଦ୍ଦାର ପଟେଲ ସକ୍ଷମତାର ସହ କରିଥିଲେ । ମାତ୍ର ଭାରତ ତାର ବୈଦେଶିକ ସମ୍ପର୍କକୁ ମାପି ଚୁପି ଚଳାଇବାକୁ ଉଦ୍ୟମ କରିବା ଫଳରେ କ୍ରମଶଃ ଆମେରିକାର ସାମ୍ୟବାଦୀ ନିୟନ୍ତ୍ରଣ ନୀତି ସହ ଜଡ଼ିତ ନ ହୋଇପାରି କ୍ରୋଧର ଶିକାର ହେଲା । ଷ୍ଟାଲିନ୍‌ଙ୍କ ସୋଭିଏତ୍ ୟୁନିଅନ୍ ମଧ୍ୟ ଭାରତକୁ ପୁଞ୍ଜିବାଦର ପ୍ରତିନିଧି କହି ତିରସ୍କାର କଲା । ୧୯୪୯ ଅକ୍ଟୋବର ୧ ତାରିଖରେ ଚୀନ୍ ସାମ୍ୟବାଦୀ ରାଷ୍ଟ୍ର ହେବା ପରେ ଉଭୟ ଆମେରିକା ଓ ଋଷ ତତ୍ପର ହୋଇଥିଲେ ।

ଭାରତର ବୈଦେଶିକ ନୀତି ପରିଚାଳନା କରିବା ନିମନ୍ତେ ଅଦ୍ୟାବଧି ୩୦ ଜଣ ମନ୍ତ୍ରୀ ଦାୟିତ୍ୱ ନେଇସାରିଛନ୍ତି । ତେବେ ସ୍ୱାଧୀନତାଠାରୁ ନିରବଚ୍ଛିନ୍ନ ଭାବରେ ନେହେରୁ

ପ୍ରଧାନମନ୍ତ୍ରୀ ପଦବୀ ସହ ବୈଦେଶିକ ମନ୍ତ୍ରୀ ଦାୟିତ୍ୱରେ ରହିଥିଲେ । ଫଳରେ ତାଙ୍କର ଦୀର୍ଘଦିନର ଅନୁଭୂତି, ବିଶ୍ୱ ସମସ୍ୟାର ମୂଳକାରଣର ଉତ୍ସ, ପୁଞ୍ଜିବାଦ-ସାମ୍ୟବାଦ ଲଢ଼େଇରୁ ସାମରିକ ଗୋଷ୍ଠୀ ଗଠନର ଭୟାବହତା ବିଷୟରେ ବିଶେଷ ଜ୍ଞାନ ତଥା ନୂତନ ଭାବେ ସାମ୍ୟବାଦୀ ରାଷ୍ଟ୍ର ଗଠନର ଏସିଆ ମାନଚିତ୍ରରେ ଗୁରୁତ୍ୱ ସମ୍ପର୍କରେ ଅନୁଶୀଳନ ପ୍ରାଥମିକ ଅବସ୍ଥାରେ ଭାରତର ବୈଦେଶିକ ନୀତି ପ୍ରସ୍ତୁତି ଓ ପରିଚାଳନାରେ ସହାୟକ ହେଲା ।

ଶୀତଳଯୁଦ୍ଧଠାରୁ ଦୂରରେ ରହିବା ନିମନ୍ତେ ଗୋଷ୍ଠୀ ନିରପେକ୍ଷ ଉପରେ ପ୍ରାଧାନ୍ୟ ଦେବା ଫଳରେ ଆମେରିକାର ଆକ୍ଷେପୋକ୍ତିର ଶିକାର ହେଲା ଓ ସୋଭିଏତ୍ ୟୁନିଅନ୍‌ର ମଧ୍ୟ ସମଦୂରତ୍ୱ କୂଟନୀତି ପ୍ରତି ଅସୂୟାଭାବ ଦେଖିଲା । ପଚାଶ ଦଶକରେ ଭାରତ ଏକ ପଞ୍ଚଶୀଳ ନୀତି ଘୋଷଣା କରି ଭାରତର ବୈଦେଶିକ ନୀତିର ମୂଳଢାଞ୍ଚା ପ୍ରସ୍ତୁତ କରିଦେଲା । ପରେ ଏହା ୧୯୫୫ ମସିହା ବାନ୍ଦୁଙ୍ଗ ସମ୍ମିଳନୀରେ ସ୍ୱୀକୃତି ଲାଭ କଲା । ଅନାକ୍ରମଣ, ପରସ୍ପର ମଧ୍ୟରେ ସମାନତା ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଅନ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା ଆଦି ଉପରେ ବିଶ୍ୱ ଶାନ୍ତି ସ୍ଥାପନା ନିମନ୍ତେ ଓ ସାମରିକ ପ୍ରତିଯୋଗିତା ହ୍ରାସ କରିବା ପାଇଁ ଏକ ଶକ୍ତିଶାଳୀ ଉଦ୍ୟମ ଥିଲା । ସେହିଦିନଠାରୁ ଭାରତର ଗଣତାନ୍ତ୍ରିକ ବ୍ୟବସ୍ଥା ଓ ବୈଦେଶିକ ନୀତିର ବୈଶିଷ୍ଟ୍ୟ ଅନ୍ତତଃ ପାଶ୍ଚାତ୍ୟ ରାଷ୍ଟ୍ର ଓ ଆଫ୍ରୋ-ଏସିଆନ୍ ରାଷ୍ଟ୍ରମାନେ ବୁଝି ପାରିଲେ ।

ଆମ ବୈଦେଶିକ ନୀତିର ଆଲୋଚନା କଲାବେଳେ ଦୁଇଟି ବିଷୟ ପ୍ରତି ଧ୍ୟାନ ଦେବାକୁ ପଡ଼ିବ । ପ୍ରଥମଟି ଆନ୍ତର୍ଜାତିକ ରାଜନୈତିକ ତଥା କୂଟନୈତିକ ବାତାବରଣ । ଅନ୍ୟଟି ଭାରତର ଆଭ୍ୟନ୍ତରୀଣ ସାମାଜିକ ଆର୍ଥନୀତିକ ଓ ରାଜନୈତିକ ସ୍ଥିତି । ଏହି କ୍ରମରେ ଏହି ଲେଖାରେ ଲେଖକ ଭାରତର ବୈଦେଶିକ ନୀତିକୁ ଦୁଇଟି ଭାଗରେ ତର୍ଜମା କରୁଛି । ପ୍ରଥମଟି ସ୍ୱାଧୀନତାଠାରୁ ଶୀତଳଯୁଦ୍ଧ ଶେଷ ପର୍ଯ୍ୟନ୍ତ ଓ ଦ୍ୱିତୀୟଟି ଶୀତଳଯୁଦ୍ଧ ଅବସାନ ପରେ ବହୁ କୈନ୍ଦ୍ରିକ ବିଶ୍ୱ ବ୍ୟବସ୍ଥା ।

ଶୀତଳଯୁଦ୍ଧ କାଳରେ ବସ୍ତୁତଃ ଦେଶରେ କଂଗ୍ରେସ ଶାସନ ଥିଲା । ନେହେରୁଙ୍କ ୧୭ ବର୍ଷ , ଇନ୍ଦିରାଙ୍କ ୧୬ ବର୍ଷ ଓ ରାଜୀବଙ୍କ ୫ ବର୍ଷ ସମୟ ଭାରତ ଇତିହାସରେ ବିରଳ । ଗୋଟିଏ ପରିବାରର ତିନିପିଢ଼ିର ବ୍ୟକ୍ତିତ୍ୱ ଭାରତକୁ ନେତୃତ୍ୱ ଦେବା ଫଳରେ ନୀତି ପରିଚାଳନାରେ କିଛିଟା ସାମଞ୍ଜସ୍ୟ ରହିବା ସ୍ୱାଭାବିକ । ଆମେରିକା ଭାରତର ଗୋଷ୍ଠୀ ନିରପେକ୍ଷତା ପ୍ରତି ଅସୂୟାଭାବ ପ୍ରକାଶ କରି ପାକିସ୍ଥାନକୁ ସାମରିକ ମେଣ୍ଟରେ ମିଶାଇବା ସାମ୍ୟବାଦୀ ବିରୁଦ୍ଧରେ ହେଲେ ମଧ୍ୟ ପାକିସ୍ଥାନ ଏହାକୁ ଭାରତ ବିରୋଧୀ କାର୍ଯ୍ୟରେ ମୁଖ୍ୟତଃ ଲଗାଇ ଥିଲା । ୫୦ ଦଶକରେ କୋରିଆ ଯୁଦ୍ଧ, ହଙ୍ଗେରି ସମସ୍ୟା, ସୁଏଜ ସମସ୍ୟା ଆଦିରେ ଭାରତ ଜାତିସଂଘରେ ବଳିଷ୍ଠ ଭୂମିକା ନେଇଥିଲା । କିନ୍ତୁ ଚୀନ୍‌ର ମତିଗତି ପରିବର୍ତ୍ତନ ଦେଖି ଭାରତ-ସୋଭିଏତ୍ ସମ୍ପର୍କ ଦୃଢ଼ କରିବାକୁ ନେହେରୁ ଉଦ୍ୟମ କରିଥିଲେ । ଆଇଜେନ୍‌ହୋର ସରକାର ପରେ କେନେଡ଼ି ସରକାରଙ୍କ ସମୟରେ ଭାରତ ଆମେରିକା ସମ୍ପର୍କ ଉନ୍ନତି ପଥରେ ଚାଲୁଥିଲା । ତେବେ ଗୋଆ ଦଖଲ କରିବା ଅଭିଯାନର ସଫଳ ରୂପାୟନ ଓ ଆଙ୍ଗ୍ଲୋ-ଫ୍ରେଞ୍ଚ ସାମରିକ ପଦକ୍ଷେପ ନାସେରଙ୍କ ଦ୍ୱାରା ପଣ୍ଡ ହେବା ପାଶ୍ଚାତ୍ୟ ଶକ୍ତିଙ୍କ ପାଇଁ ଏକ ଧକ୍‌କା ଥିଲା ।

ଶୀତଳ ଯୁଦ୍ଧ କାଳରେ ଆମେରିକାର ମତିଗତି ଭିନ୍ନ ଥିଲା । ୧୯୬୨ ମସିହା ଚୀନ୍ ଯୁଦ୍ଧ ବେଳେ କେନେଡି ସରକାର ସାମରିକ ସହାୟତା ଦେଇଥିବାବେଳେ, ୧୯୬୫ରେ ପାକିସ୍ଥାନ ସହ ଝଗଡ଼ା ବେଳେ ଜନ୍‌ସନ୍ ସରକାର ପାକିସ୍ତାନକୁ ବହୁମାତ୍ରାରେ ସହଯୋଗ କରିଥିଲେ । ୧୯୬୦ ଦଶକରୁ ଆରମ୍ଭ ପରମାଣୁ ଶକ୍ତି ନିୟନ୍ତ୍ରଣ କାର୍ଯ୍ୟକ୍ରମରେ ୧୯୬୮ ମସିହା 'ପରମାଣୁ ଅସ୍ତ୍ର ବିସ୍ତାର ନିରୋଧ ଚୁକ୍ତି'କୁ ଇନ୍ଦିରା ସରକାର ଏକପାଖିଆ ଦର୍ଶାଇ ପ୍ରତ୍ୟାଖ୍ୟାନ କରିବା, ବିଶ୍ୱ ଦରବାରରେ ଭାରତର ଗୌରବ ବୃଦ୍ଧିର ପରିଚୟ ଦିଏ । ସେହିଭଳି ମାନବିକତା ଦୃଷ୍ଟିକୋଣରୁ ବାଙ୍ଗାଳାଦେଶ ସମସ୍ୟାରେ ଭାରତର ହସ୍ତକ୍ଷେପ ନିକ୍ସନ୍‌ଙ୍କ ଯୁଦ୍ଧ ଧମକ ସତ୍ତ୍ୱେ ଭାରତ ନ୍ୟାୟ ପ୍ରଦାନ କରିବାରେ ସମର୍ଥ ହୋଇଥିଲା । ୧୯୭୪ ମସିହା ପୋଖାରନ 'ଶାନ୍ତିପାଇଁ ପରମାଣୁ ଶକ୍ତି ପରୀକ୍ଷା' ମଧ୍ୟ ଶୀତଳ ଯୁଦ୍ଧ ସମୟର ଏକ ବୃହତ୍ ପଦକ୍ଷେପ ।

ଏହି ସମୟ ମଧ୍ୟରେ ଭାରତ-ଆମେରିକା ଦୂରତ୍ୱ ବୃଦ୍ଧି ଓ ଭାରତ- ସୋଭିଏତ୍ ସଂପର୍କ ବୃଦ୍ଧି ପରିଲକ୍ଷିତ ହୋଇ ଏକ ବେସାମରିକ ଚୁକ୍ତି ମଧ୍ୟ ନୂଆଦିଲ୍ଲୀ ଓ ମସ୍କୋ ମଧ୍ୟରେ ହୋଇପାରିଥିଲା । ତେବେ ଏହି କ୍ରମରେ ଭାରତ ୭୦ ଦଶକ ଓ ୮୦ ଦଶକରେ ବିଭିନ୍ନ ଆନ୍ତର୍ଜାତିକ ସମସ୍ୟା ସଂପର୍କରେ ସୁଚିନ୍ତିତ ମତ ଦେଇପାରିଛି । ଯୁଦ୍ଧ ବଦଳରେ ଶାନ୍ତି, ମାନବ ଅଧିକାର ସୁରକ୍ଷା ପାଇଁ ପ୍ରଚେଷ୍ଟା, ପର୍ଯ୍ୟାବରଣ ସଂରକ୍ଷଣ ଓ ଅଣୁଅସ୍ତ୍ର ପ୍ରସାର ବିରୋଧ ଆଦି ମୁଖ୍ୟ ଥିଲା । ଜାତିସଂଘ ନିରସ୍ତ୍ରୀକରଣ ସମ୍ମିଳନୀରେ ବିଶେଷ କରି ୧୯୭୮ ଓ ୧୯୮୮ ମସିହାରେ ଯଥାକ୍ରମେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଓ ରାଜୀବ ଗାନ୍ଧୀ ଭାରତର ଆନ୍ତର୍ଜାତିକ ସମ୍ମାନର ସ୍ତର ବୃଦ୍ଧି କରିଥିଲେ ।

ଶୀତଳ ଯୁଦ୍ଧ ଅବସାନ ସମୟଟି ଭାରତ ପାଇଁ ଶୁଭଙ୍କର ନଥିଲା । ରାଜନୈତିକ ଅସ୍ଥିରତା, ବୈଦେଶିକ ମୁଦ୍ରା ଗଚ୍ଛିତ ପାଣ୍ଠି ସମସ୍ୟା ସହ ଜାତି ଓ ଧର୍ମଭିତ୍ତିକ କନ୍ଦଳ ବିଶ୍ୱ ଦରବାରରେ ଭାରତର ଛବି ମଳିନ କରୁଥିଲା । ଜଗତକରଣ ଯୁଗରେ ୧୯୯୧ରେ ଗଠିତ ହୋଇଥିବା ରାଓ ସରକାର ଓ ତାଙ୍କର ଦକ୍ଷ ଅର୍ଥମନ୍ତ୍ରୀ ମନମୋହନ ସିଂହ ନୂତନ ଅର୍ଥନୀତି ଓ ଶିଳ୍ପନୀତି ପ୍ରଣୟନ କରି ଦୋଦୁଲ୍ୟମାନ ଭାରତର ସମ୍ମାନକୁ ବଞ୍ଚାଇଲେ । କିନ୍ତୁ ତାଙ୍କ ପରେ କ୍ରମାନ୍ୱୟରେ ଅଣକଂଗ୍ରେସ ସରକାର ରାଜନୈତିକ ଅସ୍ଥିରତା ଶିକାର ହେଉଥିବା ବେଳେ ବିଶ୍ୱରେ ଆମେରିକା ନେତୃତ୍ୱରେ ଏକ-କୈନ୍ଦ୍ରିକ ବିଶ୍ୱ ବ୍ୟବସ୍ଥା ଓ ଚୀନ୍‌ର ପ୍ରଗତି ଉଲ୍ଲେଖଯୋଗ୍ୟ । ୧୯୯୮ର ଏନ୍.ଡି.ଏ ସରକାରର ନେତୃତ୍ୱ ଶ୍ରୀ ବାଜପେୟି ନେଇ ଆମର ଦ୍ୱିତୀୟୀ ପୋଖରାନ ପରୀକ୍ଷା କରି ସି.ଟି.ବି.ଟି (CTBT) ଆହ୍ୱାନର ପ୍ରତ୍ୟୁତ୍ତର ଦେଇଥିଲେ ।

୨୦୦୧ର ଆମେରିକା ଉପରେ ଆତଙ୍କବାଦୀ ଆକ୍ରମଣ, ସୀମାପାର ଆତଙ୍କବାଦୀ ପ୍ରବେଶ ଓ ନରସଂହାର ତଥା ଆଫଗାନିସ୍ଥାନ ତାଲିବାନ ସମସ୍ୟା ଆଦି ଭାରତର ନୀତି ନିର୍ଣ୍ଣୟରେ ଶାଳୀନତା ଦେଖାଇଥିଲା । ଏଥି ମଧ୍ୟରେ ଭାରତ WTO, G-20, SAARC ଆଦିରେ ପ୍ରମୁଖ ଭୂମିକା ଗ୍ରହଣ କରି ଏକ ସ୍ୱଷ୍ଟ ପରମାଣୁ ନୀତି ପ୍ରଦାନ କରିଥିଲା । ଭାରତର ସମୃଦ୍ଧି ପାଇଁ କୁଟନୀତି ମାଧ୍ୟମରେ ବାଣିଜ୍ୟ ବୃଦ୍ଧି, ଦ୍ୱିପାକ୍ଷିକ ଓ ବହୁପାକ୍ଷିକ ସହଯୋଗ, ଆଫ୍ରୋ-ଏସୀୟ ରାଷ୍ଟ୍ରଙ୍କ ସଂପର୍କରେ ଉନ୍ନତି ସତ୍ତ୍ୱେ ପଡ଼ୋଶୀ ପାକିସ୍ଥାନ ଓ ଚୀନ ଭାରତକୁ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ । ଏହି ଦୁଇରାଷ୍ଟ୍ରଙ୍କ ମଧ୍ୟରେ ଗୁପ୍ତ ବୁଝାମଣା ଭୟର ବାତାବରଣ ମଧ୍ୟ ସୃଷ୍ଟି କରିଥିଲା । ୨୦୦୪ ମସିହା ପରେ UPA ସରକାର ଜାତିସଂଘରେ ଆତଙ୍କବାଦ ବିରୋଧୀ ଆନ୍ଦୋଳନର ପ୍ରମୁଖ ଭୂମିକା ନେବା ସହ ଆମେରିକା ସହ ବେସାମରିକ ପରମାଣୁ ଚୁକ୍ତି ମଧ୍ୟ କରିଥିଲା ଓ ପରମାଣୁ ଇନ୍ଧନ ପାଇଁ ପ୍ରଗତି ପାଇଁ ଏହାର ବିନିଯୋଗର ସୁଯୋଗ ପାଇଥିଲା । ଏହି ସମୟରେ ଚୀନ୍ ଓ ଜାପାନ ସହ ଦ୍ୱିପାକ୍ଷିକ ସଂପର୍କ ବୃଦ୍ଧି ଘଟିଥିଲେ ମଧ୍ୟ ଚୀନ୍ ବିଶ୍ୱସନୀୟ ପଡ଼ୋଶୀ ନୁହେଁ ବୋଲି ନୀତି ନିର୍ଦ୍ଧାରକମାନେ ଅନୁଭବ କରିଥିଲେ ।

ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ୨୫ ବର୍ଷ ପରେ ଗୋଟିଏ ଦୃଢ଼ ଅଣକଂଗ୍ରେସ ସରକାର କ୍ଷମତାକୁ ଆସିଲା । ପ୍ରଥମ ଦିବସରୁ ପଡ଼ୋଶୀଙ୍କ ସହ ସୁସମ୍ପର୍କ, ବିଭିନ୍ନ ଆନ୍ତର୍ଜାତିକ ସମସ୍ୟାରେ ସକାରାତ୍ମକ ଯୋଗଦାନ ଓ ଭାରତ-ଆମେରିକା (ଓବାମା ସମୟର) ଓ ଭାରତ-ଜାପାନ ଦ୍ୱିପାକ୍ଷିକ ବିକାଶ ପ୍ରଣୋଦିତ ସଂପର୍କ ବୃଦ୍ଧି ଉଲ୍ଲେଖ ଯୋଗ୍ୟ । ଏହି ଦଶକରେ ଭାରତ SCO (ସାଂଘାଇ କୋଅପରେସନ ଅର୍ଗାନାଇଜେସନ)ର ପୂର୍ଣ୍ଣ ସଦସ୍ୟ ହୋଇଥିଲା । ଏହା ପୂର୍ବରୁ BIMSTEC, BRICKS, BOB ଆଦି ବହୁ ରାଷ୍ଟ୍ରୀୟ ସହଯୋଗ ଗୋଷ୍ଠୀର ସଦସ୍ୟ ହୋଇଥିଲା । ପରିଶେଷରେ ଚୀନ୍‌ର ମତିଗତି, ଚୀନ୍-ରୁଷ ଗୁପ୍ତ ସଂପର୍କ ଓ ଉତ୍ତରକୋରିଆର ଅମାନିଆ ରଣନୀତି ଭାରତକୁ ଜାପାନ ସହାୟତାରେ QUAD (ଭାରତ, ଅଷ୍ଟ୍ରେଲିଆ, ଜାପାନ ଓ ଆମେରିକା)ର ପୁନର୍ଜୀବନ ପ୍ରଦାନ କରିପାରିଲା । ୨୦୨୦ରୁ ୨୦୨୨ ପର୍ଯ୍ୟନ୍ତ ଭାରତ ନିରାପତ୍ତା ପରିଷଦର ଅଷ୍ଟମ ଥର ପାଇଁ ସଦସ୍ୟତା ଗୌରବଦାୟୀ ଥିଲା । ଚୀନ୍‌ର ଭାରତ ମହାସାଗର ଅଞ୍ଚଳରେ ପ୍ରଭାବ ବୃଦ୍ଧି ଉଦ୍ୟମକୁ କିଛି ମାତ୍ରାରେ ହ୍ରାସ କରିବାରେ ଭାରତ ସଫଳ ହୋଇଛି । ସଂପ୍ରତି ୨୦୨୩ରେ G-20 ସମ୍ମିଳନୀର ଅଧ୍ୟକ୍ଷତା ଭାରତକୁ ସୁନାମ, ଗୌରବଓ ଭାରତର ସାଂସ୍କୃତିକ କୂଟନୀତିର ସଫଳତା ପ୍ରଦାନ କରିଛି ।

ବିଗତ ଏକ ଦଶନ୍ଧି ଭାରତ ବହୁଳ ମାତ୍ରାରେ ଉଭୟ ଚୀନ୍ ଓ ପାକିସ୍ଥାନ ସହ ବିଭିନ୍ନ ସୀମା ସମସ୍ୟାର ସମ୍ମୁଖୀନ ହୋଇଛି । ଗଲଓ୍ୱାନ, ଡୋକଲାମ୍ ଓ ତାଓ୍ୱାଙ୍ଗଠାରେ ଭାରତ-ଚୀନ୍ ସାମରିକ ବାହିନୀ ମୁହାଁମୁହିଁ ହୋଇଛନ୍ତି ଓ ଉଭୟ ପକ୍ଷରୁ ମୃତାହତ ମଧ୍ୟ ହୋଇଛନ୍ତି । ପାକିସ୍ତାନର ଅପରିଣାମଦର୍ଶୀ ଆତଙ୍କବାଦୀ ଆକ୍ରମଣ ଓ ପୁଲଓ୍ୱାମାଠାରେ ଶାନ୍ତିରେ ଯାଉଥିବା ଯବାନମାନଙ୍କୁ ବୋମା ଆକ୍ରମଣ ଦ୍ୱାରା ହତ୍ୟା ଓ ଆତଙ୍କବାଦୀ ଶିବିର ଧ୍ୱଂସ କରିବାକୁ ଭାରତର ରାଜନୈତିକ ନେତୃତ୍ୱର ଇଚ୍ଛା ଶକ୍ତି ବିଶ୍ୱରେ ବନ୍ଦନୀୟ । ଏନ୍.ଡି.ଏ (୨)ର ବୈଦେଶିକ ମନ୍ତ୍ରୀ ସୁଷମା ସ୍ୱରାଜ ଓ ପରେ କୂଟନୀତିଜ୍ଞ ଜୟଶଙ୍କର ଭାରତର ସକାରାତ୍ମକ ଆନ୍ତର୍ଜାତିକ ଭାଗିଦାରିତା ବୃଦ୍ଧି କରିବାରେ ସଫଳ ମଧ୍ୟ ହୋଇଛନ୍ତି ।

ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଲା , କୋଭିଡ଼ ମହାମାରୀ ସମୟରେ ଭାରତର ଅର୍ଥନୈତିକ ଓ ସ୍ୱାସ୍ଥ୍ୟ ପରିଚାଳନା ଅତି ଉଚ୍ଚକୋଟୀର ଥିଲା । ନିଜର ଆବଶ୍ୟକତା ପୂରଣ କରି ବିଶ୍ୱର ବହୁରାଷ୍ଟ୍ରକୁ ଟିକା ସାହାଯ୍ୟ ଦେବା ଅନ୍ୟ ରାଷ୍ଟ୍ରର କଳ୍ପନାର ବାହାରେ । ସେହିଭଳି ଆଫଗାନିସ୍ଥାନକୁ ତାଲିବାନ ଦଖଲ କରିବା ପରେ ମାନବୀୟ ସହାୟତା ପ୍ରଦାନ କରିବାରେ ଭାରତ ଅଗ୍ରଣୀ ଭୂମିକା ନେଇଛି । ରୁଷ୍-ୟୁକ୍ରେନ୍ ସାମରିକ କନ୍ଦଳରେ ଭାରତ ଅଭୂତପୂର୍ବ ସକାରାତ୍ମକ ଭୂମିକା ନେଇଛି । ଏପରିକି ଭାରତ ତା'ର ମିତ୍ର ପୁଟିନ୍‌ଙ୍କୁ 'ବର୍ତ୍ତମାନ ସମୟ ଶାନ୍ତିର, ଯୁଦ୍ଧର ନୁହେଁ ' କହିବା ଐତିହାସିକ ଅଟେ । ଚୀନ୍‌ର ଆକ୍ରମଣାତ୍ମକ ଆଭିମୁଖ୍ୟକୁ ନରମ କରିବା ପାଇଁ ଭାରତ-ରୁଷ୍ ସମ୍ପର୍କରେ ସ୍ଥିରତା ଆବଶ୍ୟକ ଓ ଏହାକୁ ଉଭୟ ରାଷ୍ଟ୍ର ହୃଦୟଙ୍ଗମ କରିଛନ୍ତି । କେବଳ ନିରାପତ୍ତା ପରିଷଦର ସ୍ଥାୟୀ ସଦସ୍ୟତା ପାଇଁ ଚୀନ୍‌ର ବିରୋଧ ଭାରତ ପାଇଁ ଦୁଃଖର କାରଣ ହୋଇଛି । ବାଣିଜ୍ୟ ଦେଶର ଅଭିବୃଦ୍ଧି କରାଇଥାଏ । ଭାରତ-ଆମେରିକା ବାଣିଜ୍ୟ ୧୯୯୪-୨୦୧୮ ମଧ୍ୟରେ ଛଅଗୁଣ ବୃଦ୍ଧି ପାଇବା ଉଭୟ ଦେଶର ଦ୍ୱିପାକ୍ଷିକ ସମ୍ପର୍କରେ ଉନ୍ନତି ସୂଚାଏ ।

ଉପସଂହାର : ଭାରତର ଅମୃତ ମହୋତ୍ସବ (ସ୍ୱାଧୀନତାର ୭୫ ବର୍ଷ) ପାଳନ ସମୟରେ ଆମର ବୈଦେଶିକ ନୀତିର ମୂଲ୍ୟାୟନ ହେବା ଦରକାର । ଭୌଗଳିକ, ଅର୍ଥନୈତିକ, ସାମାଜିକ ତଥା ସାଂସ୍କୃତିକ ତଥା ରାଜନୈତିକ ବ୍ୟବସ୍ଥା ସହ ବିଶ୍ୱସନୀୟ ନୀତି ପ୍ରଣୟନ ଓ ବିନିଯୋଗ ମୁଖ୍ୟ ଅଂଶ ଅଟେ । ପରିବର୍ତ୍ତିତ ବିଶ୍ୱରେ ରାଷ୍ଟ୍ରମାନଙ୍କୁ ଗଠନଧର୍ମୀ ହେବା ନିମନ୍ତେ ଆନ୍ତର୍ଜାତିକ ଅନୁଷ୍ଠାନ, ଆନ୍ତର୍ଜାତିକ ଆଇନ ତଥା ବିଭିନ୍ନ ବହୁ ରାଷ୍ଟ୍ରୀୟ ଅନୁଷ୍ଠାନ କାର୍ଯ୍ୟ କରିଥାଏ । ରାଷ୍ଟ୍ରମାନଙ୍କ ମଧ୍ୟରେ କିଛି ଆଇନ ମାନି ଚାଲନ୍ତି ତ ଆଉ କିଛି ଆଇନ ଭାଙ୍ଗିବାରେ ଆନନ୍ଦ ପାଆନ୍ତି । ତେବେ ସବୁଠାରୁ ପ୍ରଶଂସାଯୋଗ୍ୟ ହୁଅନ୍ତି ଆଇନ କରିବା ରାଷ୍ଟ୍ରମାନେ । ଭାରତ ତା'ର ଦେଶ ଗଠନ ଓ ଯାତ୍ରା ସମୟରେ ଆଇନ ପାଳନ କରିଛି ଓ ୧୯୬୮ରେ ଏନ୍.ପି.ଟିରେ ଯୋଗ ନ ଦେଇ ୧୯୭୪ରେ ପୋଖରାନ ପରମାଣୁ ପରୀକ୍ଷା କରି ଓ ୧୯୯୫ରେ ସି.ଟି.ବି.ଟିରେ ସ୍ୱାକ୍ଷର ନ କରି ଆଇନ ଭାଙ୍ଗିଛି । ତେବେ ସଂପ୍ରତି ଆମେ ଭାରତକୁ ଆଇନ କରିବା କାର୍ଯ୍ୟରେ ବିଶେଷ ଦେଖୁଛେ । ଏହା ଆମର ବଡ଼ ଉପଲବ୍ଧି ।

୭୫ ବର୍ଷର ରାଜନୈତିକ ଭ୍ରମଣରେ ଭାରତ ଗୋଟିଏ ବିଶ୍ୱସନୀୟ ରାଷ୍ଟ୍ର ହିସାବରେ ବିଶ୍ୱ ସମୁଦାୟ ଦ୍ୱାରା ଆଦୃତ ହୋଇଛି । ଏହି ଭ୍ରମଣ କାଳରେ ଭାରତ ଯାହା ପ୍ରଥମରୁ ଆଦର୍ଶବାଦୀ ଥିଲା, ପରବର୍ତ୍ତୀ କାଳରେ ବାସ୍ତବବାଦୀ ହୋଇପାରିଛି । ଶୀତଳ ଯୁଦ୍ଧ କାଳରେ ଭାରତର ଜବାବ୍ ଥିଲା ଗୋଷ୍ଠୀ ନିରପେକ୍ଷତା । ପରମାଣୁ ଶସ୍ତ୍ର ନିୟନ୍ତ୍ରଣ ସମୟରେ ଭାରତ ଅନ୍ୟ ରାଷ୍ଟ୍ରର ଏକଚାଟିଆମି ଗ୍ରହଣ ନ କରି ଦୁଇଥର ପ୍ରୋତ୍ସାହନ ପରୀକ୍ଷା କରିଛି । ଭାରତ ମଧ୍ୟ ଜାଣିଛି ଯେ ଏସିଆରେ ୫ଗୋଟି ପରମାଣୁ ଶକ୍ତି ସମ୍ପନ୍ନ ରାଷ୍ଟ୍ର (ଭାରତ, ଚୀନ୍, ପାକିସ୍ତାନ, ଇଜ୍ରାଏଲ୍ ଓ ଉତ୍ତରକୋରିଆ) ଅଛନ୍ତି । ଅନ୍ୟ ଚାରୋଟି (ଆମେରିକା, ରୁଷ୍, ବ୍ରିଟେନ୍ ଓ ଫ୍ରାନ୍ସ) ତେଣୁ ଏହା ବାସ୍ତବବାଦୀ ଆଣବିକ ନୀତି ଆପଣେଇଛନ୍ତି । ଏହା ସହିତ ଅର୍ଥନୈତିକ କୂଟନୀତି ଓ ସୁସ୍ଥ ଅଶାନ୍ତ ଆନ୍ତର୍ଜାତିକ ବ୍ୟବସ୍ଥା ପାଇଁ ଉଦ୍ୟମ ଜାରି ରହିଛି । ଏହା ହିଁ ଏ ଦେଶର ମହନୀୟତା ।

ଟାଓ୍ୱାର-୫, ଘର ନଂ-୧୨୦
ରୟାଲ ଲାଗୁନ୍, ପଟିଆ, ଭୁବନେଶ୍ୱର

# ସ୍ମୃତି ମଧୁରମ୍

ଡଃ. ସିଦ୍ଧାର୍ଥ କାନୁନ୍‌ଗୋ

ଆଜିର ପରିସ୍ଥିତିରେ ମଧୁସୂଦନଙ୍କ ପରି ଜନନେତାଙ୍କ ନୀରବ ସାଧନା ଓ ସଂକଳ୍ପକୁ ହୁଏତ କଳନା କରିହେବ ନାହିଁ । ମଧୁସୂଦନଙ୍କ ଜନ୍ମ ୧୮୪୮ ଏପ୍ରିଲ ମାସ ୨୮ ତାରିଖ ଓ ମୃତ୍ୟୁ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖ । ବୟସ ଦୃଷ୍ଟିରୁ ସେ ଥିଲେ କୁଳବୃଦ୍ଧ । କିନ୍ତୁ ଚିନ୍ତା ତଥା ଆଭିମୁଖ୍ୟ ଦୃଷ୍ଟିରୁ ସେ ଥିଲେ ଚିର ତାରୁଣ୍ୟର ପ୍ରତୀକ । ଭାରତୀୟ ସାମ୍ବିଧାନିକ ଇତିହାସରେ ମଧୁସୂଦନ ଯେ ଭାଷାଭିତ୍ତିକ ପ୍ରଦେଶ ଗଠନର ଆଦ୍ୟ ପ୍ରବକ୍ତା ଥିଲେ, ଏ କଥା ତଥ୍ୟ ଦୃଷ୍ଟିରୁ ଅସ୍ୱୀକାର କରିହେବ ନାହିଁ । ମଧୁବାବୁଙ୍କୁ ଏକ ପ୍ରାଦେଶିକ ସ୍ତରର ନେତା ଭାବରେ ଚିତ୍ରିତ କଲେ ତାଙ୍କ ଅନନ୍ୟ ବ୍ୟକ୍ତିତ୍ୱର ସଠିକ୍ ମୂଲ୍ୟାଙ୍କନ ହେବ ନାହିଁ । ଚିନ୍ତା ଓ ଚେତନା ଦୃଷ୍ଟିରେ ସେ ହେଉଛନ୍ତି ଜାତୀୟ ଗୌରବର ପଦବାଚ୍ୟ ।

ଆଲୋଚନା ପ୍ରସଙ୍ଗରେ କେହିକେହି ମଧୁବାବୁଙ୍କୁ ମଧୁ ବାରିଷ୍ଟର ବୋଲି ସମ୍ବୋଧନ କରିଥାଆନ୍ତି ଏବଂ ବହୁ ଲୋକ ଏବେ ମଧ୍ୟ ଏ କଥା କହି ଆତ୍ମତୃପ୍ତି ଲାଭ କରିଥାଆନ୍ତି ଯେ ସେ ହେଉଛନ୍ତି ବିଦେଶ ଯାତ୍ରା କରିବାରେ ପ୍ରଥମ ଓଡ଼ିଆ । ମାତ୍ର ତଥ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ ଏହା ଭ୍ରମାତ୍ମକ । ମଧୁବାବୁ ବାରିଷ୍ଟରି ପାଶ୍ କରି ନ ଥିଲେ । କିନ୍ତୁ କୋର୍ଟରେ ତାଙ୍କର ତଥ୍ୟ ଉପସ୍ଥାପନା କରିବାର ଶୈଳୀ ତାଙ୍କୁ ସାଧାରଣରେ ଏହି ଧାରଣା ଦେଇଥିଲା । ପ୍ରଥମ ଓଡ଼ିଆ ବାରିଷ୍ଟର ହେଉଛନ୍ତି ସ୍ୱର୍ଗତ ବିଶ୍ୱନାଥ ମିଶ୍ର । ଠିକ୍ ସେହିପରି ପ୍ରଥମ ଓଡ଼ିଆ ବିଦେଶ ଯାତ୍ରୀ ଭାବରେ ରାଜା ରାମମୋହନ ରାୟଙ୍କ ଗାଈର ତତ୍ତ୍ୱାବଧାରକ ଭାବେ ଯାଜପୁରର ଜଣେ ଯୁବକ ଇଂଲଣ୍ଡ ଯାତ୍ରା କରି ଇତିହାସର ପୃଷ୍ଠା ମଣ୍ଡନ କରିଛନ୍ତି ।

କବି କହିଛନ୍ତି– ''ସ୍ମୃତି ସେ ତ ନୁହେଁ ଫିଙ୍ଗିବାର । ଫିଙ୍ଗିବାର ହେଲେ ମଣିଷ ପାଆନ୍ତା ନିସ୍ତାର ।'' ଏହି ଉକ୍ତିଟି ମଧୁବାବୁଙ୍କ ପାଇଁ ପ୍ରଯୁଜ୍ୟ । ମଧୁବାବୁଙ୍କ ବ୍ୟକ୍ତିତ୍ୱର ବହୁ ଦିଗ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବେ ଲୋକଲୋଚନକୁ ଆସିପାରିନାହିଁ । ସମସ୍ତଙ୍କ ଅବଗତି ନିମନ୍ତେ ମଧୁବାବୁଙ୍କ ବ୍ୟକ୍ତିତ୍ୱ ବିଷୟରେ ଉତ୍ତରପିଢ଼ିଙ୍କ ଅବଗତି ନିମନ୍ତେ କିଛି ତଥ୍ୟ ନିମ୍ନରେ ସଂକ୍ଷେପରେ ପ୍ରଦତ୍ତ ହେଲା–

ଲୁଣମରା ଅଭିଯାନ ତଥା ଅରଟରେ ସୂତା କାଟିବା ପାଇଁ ମହାତ୍ମା ଗାନ୍ଧୀଙ୍କ ବହୁ ପୂର୍ବରୁ ମଧୁବାବୁ ଲୁଣମରା ଅଭିଯାନ ଆରମ୍ଭ କରିଥିଲେ ଏବଂ ନିଜେ ମଧ୍ୟ ଉତ୍କଳ ସମ୍ମିଳନୀ ମଣ୍ଡପରେ ବସି ସୂତା କାଟିଥିଲେ । ସେହିପରି ଭାଷାଭିତ୍ତିରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ସେ ଥିଲେ ଆଦ୍ୟ ପ୍ରବକ୍ତା ।

ମଧୁବାବୁ ଭାରତରେ ସମବାୟ ଆନ୍ଦୋଳନର ଆଦି ଉଦ୍‌ଗାତା । ତାଙ୍କରି ଉଦ୍ୟମରେ ୧୯୧୯ ମସିହାରେ କଟକ କୋଅପରେଟିଭ୍ ଷ୍ଟୋର ପ୍ରତିଷ୍ଠା ହୋଇଥିଲା ।

ସେ ହେଉଛନ୍ତି ସମାଜବାଦୀ ଚିନ୍ତାଧାରାର ଅଗ୍ର ନାୟକ । ବିନା କ୍ଷତିପୂରଣରେ ଜମିଦାରୀ ପ୍ରଥାର ଉଚ୍ଛେଦ ପାଇଁ ସେ ବଙ୍ଗ, ବିହାର ତଥା ଓଡ଼ିଶା

ବିଧାନସଭାରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଯେଉଁ ଆହ୍ୱାନ ଦେଇଥିଲେ, ତାହା ଭାରତୀୟ ପାର୍ଲାମେଣ୍ଟାରୀ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ।

ମଧୁସୂଦନଙ୍କ ବ୍ୟକ୍ତିଗତ ଉଦ୍ୟମରେ ଭାରତୀୟ ନାରୀ ଓକିଲାତି କରିବାର ସୁଯୋଗ ପାଇଲେ । ମଧୁବାବୁଙ୍କ ପାଳିତା କନ୍ୟା ସୁଧାଂଶୁବାଳା ହେଉଛନ୍ତି ଦେଶର ପ୍ରଥମ ମହିଳା ଓକିଲ । କହିବା ବାହୁଲ୍ୟ ଯେ ଇଂଲଣ୍ଡରେ ମହିଳାମାନେ ଓକିଲାତି ପାଇଁ ସୁଯୋଗ ପାଇବାର ଚାରିବର୍ଷ ପରେ ଭାରତୀୟ ନାରୀ ଏହି ସୁବିଧା ପାଇଥିଲେ ।

ଜୟପ୍ରକାଶ ନାରାୟଣଙ୍କ ବହୁ ପୂର୍ବରୁ ସେ ଲୋକପ୍ରତିନିଧିମୂଳକ ବ୍ୟବସ୍ଥାରେ ନିର୍ବାଚିତ ପ୍ରତିନିଧିଙ୍କ ପ୍ରତ୍ୟାହାର (Re-call) ବିଷୟରେ ୧୯୨୩ ମସିହାରେ ପ୍ରଗତିଶୀଳ ସ୍ୱାୟତ୍ତ ଶାସନ ବିଲ୍ ବିହାର-ଓଡ଼ିଶା ବିଧାନସଭାରେ ଉପସ୍ଥାପନ କରିଥିଲେ । ସେଦିନ ପୂର୍ବତନ ସାଂସଦ ତଥା ଦ୍ୱିତୀୟ ରାଜ୍ୟ ଅର୍ଥ ଆୟୋଗର ଅଧ୍ୟକ୍ଷ ଶ୍ରୀଯୁକ୍ତ ତ୍ରିଲୋଚନ କାନୁନ୍‌ଗୋ ଆଲୋଚନା ପ୍ରସଙ୍ଗରେ ଏକଥା କହିଥିଲେ ଯେ ମଧୁବାବୁଙ୍କ ଦ୍ୱାରା ପ୍ରଣୀତ ବିହାର-ଓଡ଼ିଶା ସ୍ୱାୟତ୍ତ ଶାସନ ଆଇନ ସମଗ୍ର ଭାରତବର୍ଷରେ ସ୍ୱାୟତ୍ତ ଶାସନ କ୍ଷେତ୍ରରେ ଶ୍ରେଷ୍ଠ ଆଇନ ଅଟେ । ଏହାକୁ ଭିତ୍ତିକରି ଓଡ଼ିଶା ସ୍ୱାୟତ୍ତ ଶାସନ ଆଇନ ପ୍ରସ୍ତୁତ ହୋଇ କାର୍ଯ୍ୟକାରୀ ହେଉଛି । ମଧୁସୂଦନ ପ୍ରଥମେ ଆଇନ (୧୯୨୩)ରେ ସ୍ୱାୟତ୍ତ ଶାସନ ସଂସ୍ଥାମାନଙ୍କରେ ଦଳିତମାନଙ୍କ ପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା ରଖିଥିଲେ ।

ଇମ୍ପେରିଆଲ୍ କାଉନ୍‌ସିଲର ପ୍ରଥମ ଓଡ଼ିଆ ସାଂସଦ ଭାବେ ବ୍ରିଟିଶ ଉପନିବେଶବାଦ ତଥା ୟୁରୋପୀୟ ଶୋଷଣଭିତ୍ତିକ ସାମ୍ରାଜ୍ୟବାଦ ବିରୋଧରେ ସ୍ୱର ଉତ୍ତୋଳନ କରି ମଧୁବାବୁ ସେମାନଙ୍କୁ ରକ୍ତ ଶୋଷକ ଦଳ ବୋଲି କହିବାକୁ ଦ୍ୱିଧା ପ୍ରକାଶ କରି ନ ଥିଲେ । ଆଜିର ଜଗତ୍‌କରଣ ପରିପ୍ରେକ୍ଷୀରେ ଏ ପ୍ରକାର ଚିନ୍ତାଧାରାର ମଧ୍ୟ ପ୍ରାସଙ୍ଗିକତା ଅଛି । ମଧୁସୂଦନଙ୍କ ବ୍ୟକ୍ତିଗତ ଉଦ୍ୟମ ଯୋଗୁଁ ପ୍ରଜାସ୍ୱତ୍ୱ ପରିଷଦ ଗଠିତ ହୋଇଥିଲା ଏବଂ ଏହାର ଛତ୍ରଛାୟା ତଳେ ହଜାର ହଜାର କୃଷିଜୀବୀ ଏକାଠି ହୋଇ ସେମାନଙ୍କ ଜମି ଉପରେ ସ୍ୱତ୍ୱ ଲାଭ ପାଇଁ ସଂଗ୍ରାମ କରିଥିଲେ ।

ମଧୁବାବୁଙ୍କ ତୀବ୍ର ବିରୋଧ ସତ୍ତ୍ୱେ ବଙ୍ଗ କାଉନ୍‌ସିଲ୍‌ରେ ଓଡ଼ିଶା ପ୍ରଜାସ୍ୱତ୍ୱ ବିଲ୍ ପାରିତ ହୋଇଥିଲା । ମାତ୍ର ଏହା ଓଡ଼ିଶାର ଚାଷୀକୁଳର ଶୋଷଣ ପାଇଁ ଉଦ୍ଦିଷ୍ଟ ବୋଲି ମଧୁବାବୁ ମତବ୍ୟକ୍ତ କରିଥିଲେ । ମଧୁବାବୁଙ୍କ ଚେତାବନୀ ଯୋଗୁଁ ବଡ଼ଲାଟ୍ ଲର୍ଡ଼ ହାର୍ଡ଼ିଞ୍ଜ ଏହି ବିଲ୍‌ରେ ମୋହର ମାରି ନ ଥିଲେ । ଭାରତୀୟ ସଂସଦୀୟ ଇତିହାସରେ ଏହା ଏକ ବିରଳ ଘଟଣା ।

୧୯୧୫ ମସିହାର ମଧୁସୂଦନ ଗଡ଼ଜାତ ଉଚ୍ଛେଦ ଲାଗି ଦୃଢ଼ ଦାବି ଉପସ୍ଥାପନ କରିଥିଲେ । ଏହାର ଦୀର୍ଘଦିନ ପରେ ଦେଶ ସ୍ୱାଧୀନ ହେବା ପରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନେତୃତ୍ୱରେ ଗଡ଼ଜାତ ରାଜ୍ୟସମୂହର ମିଶ୍ରଣ ଓଡ଼ିଶା ସହ ସମ୍ଭବ ହୋଇଥିଲା । ନୀତିଗତ ପ୍ରଶ୍ନ ଉଠାଇ ମନ୍ତ୍ରୀପଦ ତ୍ୟାଗ କରିବାରେ ମଧୁବାବୁ ହେଉଛନ୍ତି ପ୍ରଥମ ଭାରତୀୟ ।

ଆଜି ଅର୍ଥନୀତି ବିଶାରଦଙ୍କଠାରୁ ଆରମ୍ଭ କରି ଯୋଜନା ପ୍ରଣେତାମାନେ ସମସ୍ତେ ଏହି କଥାରେ ଏକମତ ଯେ କୃଷିର ଉନ୍ନତି ସହ ଗ୍ରାମାଞ୍ଚଳରେ କୃଷିଭିତ୍ତିକ ଶିଳ୍ପ (Agro-Industries)ର ବିକାଶ ଦ୍ୱାରା ଗ୍ରାମାଞ୍ଚଳରେ ବାସ କରୁଥିବା ଅଶୀଭାଗ ଲୋକଙ୍କ ବିକାଶ ସମ୍ଭବ । ଏହି ଚିନ୍ତାର ବାସ୍ତବ ଜନକ ହେଉଛନ୍ତି ମଧୁସୂଦନ ଦାସ ।

ଉତ୍କଳମଣି ଗୋପବନ୍ଧୁ ୧୯୦୭ ମସିହାରେ ବନ୍ୟା ଦୁର୍ଗତଙ୍କ ସେବା ପାଇଁ ଅଣ୍ଟା ଭିଡ଼ିଥିଲେ ଏବଂ ବିହାର-ଓଡ଼ିଶା ବିଧାନସଭାରେ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ଏହି ସମସ୍ୟାକୁ ଉପସ୍ଥାପନ କରିଥିଲେ । ମାତ୍ର ମଧୁସୂଦନ ୧୮୮୭ ମସିହାରୁ ନିରବଚ୍ଛିନ୍ନ ଭାବେ ଏଥିପାଇଁ ନିଜକୁ ନିୟୋଜିତ କରିଥିଲେ । କେବଳ ସେତିକି ନୁହେଁ, ଆନ୍ତର୍ଜାତିକ ସ୍ତରରେ ଏହି ସମସ୍ୟାକୁ ଲୋକଲୋଚନକୁ ଆଣିବା ପାଇଁ ସେ 'ଗ୍ଲାସ୍‌ଗୋ ହେରାଲ୍ଡ୍' ପତ୍ରିକାର ପ୍ରତିନିଧି ନାଭିନ୍‌ସନଙ୍କୁ ଓଡ଼ିଶା ଆଣିଥିଲେ । ମଧୁସୂଦନ ଓ ନାଭିନ୍‌ସନ୍ ଦେଶ ଓ ବିଦେଶର ବହୁ ପତ୍ରପତ୍ରିକାରେ ଏହାର ସବିଶେଷ ବିବରଣୀ ପ୍ରକାଶ କରି ସମସ୍ୟାକୁ ଭାରତ ସରକାରଙ୍କ ଦୃଷ୍ଟିକୁ

ଆଣିଥିଲେ । ଏହାଦ୍ୱାରା ବଙ୍ଗଳାର ଗଭର୍ଣ୍ଣର ଏଣ୍ଡୁଫେଜର ଓଡ଼ିଶାର ବନ୍ୟାଞ୍ଚଳ ପରିଦର୍ଶନରେ ଆସିଥିଲେ ।

ଆଜି ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଓଡ଼ିଶା ସରକାର ଭ୍ରାମ୍ୟମାଣ ଚିକିତ୍ସା କେନ୍ଦ୍ର କଥା ଚିନ୍ତା କରୁଛନ୍ତି ଏବଂ ଏଥିପାଇଁ ବଜେଟ୍‌ରେ ଆବଶ୍ୟକ ବ୍ୟୟବରାଦ ହେଉଛି । କିନ୍ତୁ ଏହାର ବହୁ ପୂର୍ବରୁ ଊନବିଂଶ ଶତାବ୍ଦୀରେ ରଥଯାତ୍ରା ସମୟରେ ମଧୁସୂଦନ ଭ୍ରାମ୍ୟମାଣ ଚିକିତ୍ସା କେନ୍ଦ୍ର ସ୍ଥାପନ କରିବା ସହ ବନ୍ୟା ଓ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳକୁ କେତେବେଳେ ଚାଲି ଚାଲି ବା ଅନ୍ୟ କେତେବେଳେ ପାଲିଙ୍କି ତଥା ବଳଦଗାଡ଼ିରେ ଦୁର୍ଗମ ଅଞ୍ଚଳକୁ ଯାତ୍ରା କରୁଥିଲେ ।

ଆଗରୁ ଓଡ଼ିଆମାନେ ସିଧାସଳଖ ଡେପୁଟି କଲେକ୍ଟର ବା ଡି.ଏସ୍.ପି. ପଦବୀରେ ନିଯୁକ୍ତି ପାଇପାରୁ ନ ଥିଲେ । ମାତ୍ର ବିହାର-ଓଡ଼ିଶା ସରକାରରେ ମନ୍ତ୍ରୀ ଥିବାବେଳେ ମଧୁବାବୁଙ୍କ ବ୍ୟକ୍ତିଗତ ଉଦ୍ୟମ ଯୋଗୁଁ ଓଡ଼ିଆମାନେ ଉପରଲିଖିତ ଦୁଇଗୋଟି ପଦବୀରେ ସିଧାସଳଖ ନିଯୁକ୍ତି ପାଇଲେ ଏବଂ ମଧୁବାବୁଙ୍କ ଭାଇ ତଥା ପୂଜ୍ୟା ରମାଦେବୀଙ୍କ ପିତା ଗୋପାଳବଲ୍ଲଭ ଦାସ ହେଉଛନ୍ତି ପ୍ରଥମ ଓଡ଼ିଆ ଡେପୁଟି କଲେକ୍ଟର ।

ପ୍ରଥମ ବିଲାତ ଯାତ୍ରାବେଳେ ସୁଏଜ୍ କେନାଲ ପାଖରେ ଜେରୁଜେଲମ୍ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ମଧୁବାବୁ ସହଯାତ୍ରୀ ବନ୍ଧୁମାନଙ୍କୁ କହିଲେ, ''ଏହିଠାରେ ସିନା ମାଉଣ୍ଟ ସେନାଇ (ସେନାଇ ପର୍ବତ) ଦେଖୁଛନ୍ତି, ଏଠାରେ ମୋଜେସ୍ ୧୦ଟି କମାଣ୍ଡମେଣ୍ଟ ବା ଆଦେଶ ଦେଇଥିଲେ । ମୋ ଦେଶର ସମୁଦ୍ର କୂଳରେ ନୀଳାଚଳ ନାମରେ ଏକ ଗିରି ବା ପାହାଡ଼ ଅଛି । ସେଠାରେ ଭଗବାନ ଗୋଟିଏ ମାତ୍ର କମାଣ୍ଡମେଣ୍ଟ ବା ଆଦେଶ ଦେଇଛନ୍ତି । ତାହା ହେଉଛି ସାର୍ବଜନୀନ ଭ୍ରାତୃଭାବ ।'' ମଧୁବାବୁ ଏଠାରେ ଜଗନ୍ନାଥ ଧର୍ମର ଉଦାରତା ଯେ ଖ୍ରୀଷ୍ଟିଆନ ଧର୍ମର ଉଦାରତାଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ ଏ କଥା ସୂଚାଇଛନ୍ତି ।

'ବନ୍ଦେ ମାତରଂ' କାଗଜରେ ବିଖ୍ୟାତ ବିପ୍ଳବୀ ନେତା ଅରବିନ୍ଦ ଘୋଷ (ପରବର୍ତ୍ତୀ ସମୟରେ ଯୋଗୀ ଅରବିନ୍ଦ) ଉତ୍କଳ ସମ୍ମିଳନୀ ଓ ଜାତୀୟ ସଂଗଠନ ବିଷୟରେ ୧୯୦୮ ମସିହାରେ ଏକ ପ୍ରବନ୍ଧ ଲେଖି ମଧୁବାବୁଙ୍କ କାର୍ଯ୍ୟର ଭୂୟସୀ ପ୍ରଶଂସା କରିଥିଲେ ଏବଂ ସର୍ବଭାରତୀୟ ସ୍ତରରେ ଓଡ଼ିଆମାନେ ଏପରି ଆନ୍ଦୋଳନ ଚଳାଇବା ଉଚିତ ବୋଲି ମତବ୍ୟକ୍ତ କରିଥିଲେ । ଏହାର ଉତ୍ତରରେ ମଧୁବାବୁ ଶ୍ରୀ ଅରବିନ୍ଦଙ୍କୁ କହିଥିଲେ, ''ବଙ୍ଗଭଙ୍ଗ ହେବାରୁ ଆପଣମାନେ ଅର୍ଥାତ୍ ବଙ୍ଗାଳୀମାନେ ପ୍ରତିବାଦ କରୁଛନ୍ତି । କିନ୍ତୁ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇପଡ଼ିଛି, ତାକୁ ଯୋଡ଼ିବାକୁ ହେବ । ଏ ସମ୍ବନ୍ଧରେ ତ ଆପଣମାନେ କିଛି କହୁନାହାନ୍ତି? ଯେଉଁ ନୀତିରେ ବଙ୍ଗ ଭଙ୍ଗର ପ୍ରତିବାଦ ହେଉଛି, ସେହି ନୀତିରେ ଉତ୍କଳଦେଶ ମିଶ୍ରଣ ପ୍ରଥମେ ହେଉ ଏବଂ ତା' ହେଲେ ସର୍ବଭାରତୀୟ ଉନ୍ନତି ଲକ୍ଷ୍ୟରେ ପ୍ରଦେଶଗୁଡ଼ିକର ସହଯୋଗ ମିଳିବ । ଗୋଟିଏ ପ୍ରଦେଶ ଉଠିବ ଆଉ ଗୋଟିଏ ପ୍ରଦେଶ ଦବିଯିବ, ଏପରି ହେଲେ ଭାରତର ସଂହତି ରକ୍ଷା ହୋଇପାରିବ ନାହିଁ ।'' ଆଜି ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଆଞ୍ଚଳିକ ବୈଷମ୍ୟ ନୀତିର ଶିକାର ହୋଇ ଓଡ଼ିଶା ସମେତ ବହୁ ଅନଗ୍ରସର ରାଜ୍ୟ ଏ ବିଷୟରେ ମୁହଁ ଖୋଲିଲେଣି । ଏହି ଦୃଷ୍ଟିରୁ ବିଚାର କଲେ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ମଧୁସୂଦନ ଯେଉଁ ସ୍ୱର ଉଠାଇଥିଲେ, ତାହାର ପ୍ରାସଙ୍ଗିକତା ଆଜି ମଧ ବେଶ୍ ଉପଲବ୍ଧି କରିହୁଏ ।

ମଧୁବାବୁ ତାଙ୍କ ପ୍ରଥମ ବିଲାତ ଗସ୍ତ ସମୟରେ ୧୮୯୭ ମସିହାରେ ଏକଦା ଓଡ଼ିଶା ଡିଭିଜନର କମିଶନର ଥିବା ମିଷ୍ଟର ଟି.ଇ. ରେଭେନ୍ସାଙ୍କୁ ସାକ୍ଷାତ୍ କରିଥିଲେ । ରେଭେନ୍ସାଙ୍କ ସହ ତାଙ୍କ ସାକ୍ଷାତ୍ ବିଷୟରେ ମଧୁବାବୁ କହନ୍ତି, ''ମୁଁ ଓହ୍ଲାଇବା ସଙ୍ଗେ ସଙ୍ଗେ ଜଣେ ଧବଳ କେଶ ଖର୍ବକାୟ ବୃଦ୍ଧ ମୋ ନିକଟକୁ ଆସି ପଚାରିଲେ- 'ମିଃ. ଦାସ କି?' କେଜାଣି କେଉଁ ପ୍ରାଚୀନ କାଳର ବନ୍ଧୁ ପରି ସେ କରମର୍ଦ୍ଦନ କଲେ । ମୁଁ କହିଲି, ମିଃ ରେଭେନ୍ସା! ଆପଣ ଏତେ ଦୂର ଆସିଥିବାରୁ ମୁଁ ଦୁଃଖିତ । ମୁଁ ନିଶ୍ଚିତ ଆପଣଙ୍କ ଘରକୁ ବାଟ ପାଇଯାଇଥାନ୍ତି । ତାଙ୍କ ଘୋଡ଼ାଗାଡ଼ିରେ ବସି ଦୁହେଁ ତାଙ୍କ ଘରକୁ ଚାଲିଲୁ । କେତେ

ମିନିଟ୍ କଥା ପରେ ସେ ମତେ କହିଲେ, 'କ୍ଷମା କରିବେ! ମୁଁ ଗୋଟିଏ ପ୍ରଶ୍ନ ପଚାରିବି? ଆପଣ କ'ଣ ପ୍ରକୃତ ଓଡ଼ିଆ?' ମୁଁ କହିଲି, ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଓଡ଼ିଆ ରକ୍ତ । ସେ କହିଲେ, 'ମୁଁ ଆପଣଙ୍କ ଜାତିକୁ ଅତି ଶ୍ରଦ୍ଧା କରେ । ଅନ୍ୟମାନଙ୍କ ଅପେକ୍ଷା ଜଣେ ଓଡ଼ିଆ ସହିତ ଅବାଧରେ କଥାବାର୍ତ୍ତା କରିବି ।' ରେଭେନ୍ସାଙ୍କୁ ମୁଁ ଖଣ୍ଡିଏ ଖାଣ୍ଟି ଓଡ଼ିଆ ପିକା ବଢ଼ାଇଦେଲି ।''

ମଧୁବାବୁ ଓ ଗୋପାଳକୃଷ୍ଣ ଗୋଖ୍‌ଲେ ଏକା ଦିନରେ ବ୍ରିଟିଶ ସରକାରଙ୍କ ଦ୍ୱାରା, ସି.ଆଇ.ଇ. ଉପାଧିରେ ଭୂଷିତ ହୋଇଥିଲେ । ଗୋପାଳକୃଷ୍ଣ ଗୋଖ୍‌ଲେଙ୍କୁ ମହାତ୍ମାଗାନ୍ଧୀ ନିଜର ରାଜନୈତିକ ଗୁରୁ ରୂପେ ସ୍ୱୀକାର କରିଥିବାବେଳେ ମଧୁବାବୁଙ୍କୁ ଦ୍ୱିତୀୟ ଟଲ୍‌ଷ୍ଟୟ କହିବାକୁ ଭୁଲିନାହାନ୍ତି । ୧୯୨୫ ମସିହାରେ ମହାତ୍ମାଗାନ୍ଧୀ ଉତ୍କଳ ଟ୍ୟାନେରୀ ପରିଦର୍ଶନ କରିବା ପରେ 'ସାବରମତୀ ଆଶ୍ରମ'ରେ ଏପରି ଏକ ଟ୍ୟାନେରୀ ପ୍ରତିଷ୍ଠା ପାଇଁ ମଧୁବାବୁଙ୍କ ପାଖକୁ ମାର୍ଗ ଦର୍ଶନ ପାଇଁ ତା ୧୬.୩.୧୯୨୮ ରିଖରେ ଏକ ପତ୍ର ଲେଖିଥିଲେ । ଏତଦ୍‌ବ୍ୟତୀତ ମହାତ୍ମାଗାନ୍ଧୀଙ୍କ ଜୀବନକୁ ମଧୁବାବୁ ବହୁଳ ଭାବେ ପ୍ରଭାବିତ କରିଛନ୍ତି ବୋଲି ନିଜେ ମହାତ୍ମାଗାନ୍ଧୀ 'ନବଜୀବନ', 'ହରିଜନ' ଇତ୍ୟାଦି ପତ୍ରିକାରେ ପ୍ରକାଶ ପାଇଥିବା ବହୁ ପ୍ରବନ୍ଧ ଓ ବିଭିନ୍ନ ସଭାସମିତିରେ ସ୍ୱୀକାର କରିଛନ୍ତି । ମଧୁସୂଦନଙ୍କ ଉଦ୍ୟମ କ୍ରମେ କଟକରେ ପ୍ରଥମ କୁଷ୍ଠାଶ୍ରମ ପ୍ରତିଷ୍ଠିତ ହୋଇଥିଲା ଏବଂ କଟକରେ ଅବସ୍ଥାନ କରୁଥିବା କାଳରେ ମହାତ୍ମାଗାନ୍ଧୀ ଏହାକୁ ପରିଦର୍ଶନ କରିଥିଲେ ।

କଟକରେ ମହିଳାମାନଙ୍କ ସ୍ୱାସ୍ଥ୍ୟର ବିକାଶ ପାଇଁ ମଧୁବାବୁଙ୍କ ସହଯୋଗ ତଥା ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଲେଡ଼ି ଟମ୍‌ସନ୍ ଡିସ୍‌ପେନ୍‌ସୋରି ପ୍ରତିଷ୍ଠା କରାଯାଇଥିଲା । ଏହା ସେ ସମୟରେ ନାରୀମାନଙ୍କୁ ସୁଲଭ ଚିକିତ୍ସା ପ୍ରଦାନ କ୍ଷେତ୍ରରେ ଏକ ବୈପ୍ଳବିକ ପଦକ୍ଷେପ ଥିଲା ।

ଏକଥା ଆମେ ପୁନର୍ବାର ଦୋହରାଇବାକୁ ଚାହୁଁଛୁ ଯେ, ମଧୁବାବୁଙ୍କ ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଏ ପର୍ଯ୍ୟନ୍ତ ମଧ ଲୋକଲୋଚନକୁ ଆସିନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟ ବା ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରେ ମଧୁବାବୁଙ୍କ ନାମରେ ଏକ ଚେୟାର ପ୍ରତିଷ୍ଠା କରାଯାଇ ତାଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ କିଛିଟା ଧାରଣା ଅବଗତ କରାଯାଉ ।

ଏପରି ବହୁ କିମ୍ବଦନ୍ତୀ ବା ଉପକଥାର ମହାନାୟକ ହେଉଛନ୍ତି ମଧୁବାବୁ । ସେ ହେଉଛନ୍ତି ଉତ୍କଳ ଜାତୀୟତାର ଶ୍ରେଷ୍ଠ ମାନ୍ତ୍ରିକ । ମୃତ୍ୟୁର ୮୯ ବର୍ଷ ପରେ ମଧ ସେ ଆଜି ପ୍ରଚଣ୍ଡ ବିସ୍ମୟ ଭାବେ ପ୍ରତିଭାତ । ଶତାବ୍ଦୀର ଏହି ମହାନାୟକଙ୍କ ସମ୍ପର୍କିତ ବହୁ ଅଜଣା ଘଟଣାବଳୀକୁ ଆଗାମୀ ପିଢ଼ିଙ୍କ ନିକଟରେ ଉପସ୍ଥାନ କରାଯିବା ପାଇଁ ସମଗ୍ର ଉତ୍କଳବାସୀ ଆଗେଇ ଆସିବା ଉଚିତ ।

ପ୍ରାକ୍ତନ ଅତିରିକ୍ତ ଶାସନ ସଚିବ
ଓଡ଼ିଶା ସରକାର, ଚୈତନ୍ୟ ଧାମ, ଶବର ସାହି
ଭୁବନେଶ୍ୱର



# ନାରୀ ଆନ୍ଦୋଳନ ଓ ଓଡ଼ିଶାର ନାରୀ – ଏକ ଦୃଷ୍ଟିପାତ

**ପ୍ରମିଳା ସ୍ୱାଇଁ**

ପୃଥିବୀର ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ହେଉଛନ୍ତି ମହିଳା । ମାନବିକ ଅଧିକାରର ସୁରକ୍ଷା ଏବଂ ଏକ ସୁସ୍ଥ ଓ ସ୍ଥାୟୀ ସାମାଜିକ ପରିବର୍ତ୍ତନ ପାଇଁ ଏପରି କୌଣସି ଆନ୍ଦୋଳନ ନାହିଁ ଯାହା ମହିଳାଙ୍କ ଯୋଗଦାନ ବିନା ସମ୍ଭବ ହୋଇଛି । ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାପଡେ ଫରାସୀ ବିପ୍ଳବ, ଆମେରିକାର ସ୍ୱାଧୀନତା ସଂଗ୍ରାମ, ପ୍ୟାରିସର କମ୍ୟୁନ୍, ରୁଷିଆର ଅଗଷ୍ଟ ବିପ୍ଳବ, ଚୀନ ବିପ୍ଳବ, ଭାରତର ସ୍ୱାଧୀନତା ସଂଗ୍ରାମ ଭଳି ବହୁ ସାମାଜିକ ବିପ୍ଳବରେ ମହିଳାମାନଙ୍କ ସକ୍ରିୟ ଭୂମିକା ହିଁ ଆନ୍ଦୋଳନର ସଫଳତା ଆଣିବାରେ ସହାୟକ ହୋଇଛି । କିନ୍ତୁ ଯେଉଁ ଆନ୍ଦୋଳନର ଆଭିମୁଖ୍ୟ ଏକ ଏବଂ ବୈଷମ୍ୟହୀନ ସମାଜ ଗଠନ ସହ ସଂହତି ରକ୍ଷାକରିପାରୁଥିବ କେବଳ ସେହି ଆନ୍ଦୋଳନର ଅଂଶ ବିଶେଷ ଯଦି ମହିଳା ହୁଅନ୍ତି ତାହେଲେ ମହିଳାଙ୍କ ଅଧିକାର ସୁରକ୍ଷିତ ହେବ ଏହା ନିର୍ବିବାଦୀୟ ସତ୍ୟ ।

ଓଡିଶାର ମହିଳା ଆନ୍ଦୋଳନ ଲୋକ ଲୋଚନରେ ବ୍ୟାପକ ନ ହେଲେବି ପ୍ରତି ଆନ୍ଦୋଳନରେ ଓଡିଶାର ନାରୀମାନେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛନ୍ତି । ମହିଳା ଆନ୍ଦୋଳନ କ'ଣ କହିଲାବେଳେ ମନେପଡେ ବିଶିଷ୍ଟ ନାରୀବାଦୀ କମଳା ଭାସିନ୍‌ଙ୍କର ଏକ ସଂଜ୍ଞା । ସେ କହିଥିଲେ ଆନ୍ଦୋଳନ କୌଣସି ସଂସ୍ଥା ନୁହେଁ, ଏହା ଏକ ବ୍ୟାପକ ବିଷୟ । ଆନ୍ଦୋଳନ ଏକ ସ୍ୱତଃପ୍ରବୃତ୍ତ କିଛି ପାଇବା, ହାସଲ କରିବା ପାଇଁ ବହୁ ଲୋକଙ୍କର ଏକା ସମୟରେ ଉଦ୍ୟମ । ସେ ଉଦ୍ୟମ ସାମୂହିକ ଉଦ୍ୟମ ହୋଇପାରେ, ହୋଇପାରେ ମଧ୍ୟ ଏକା ଏକା ଉଦ୍ୟମ ବ୍ୟକ୍ତିବିଶେଷଙ୍କ ଉଦ୍ୟମ ଏବଂ ଏହି ସଂଜ୍ଞାକୁ ଆଧାର କଲେ ଗୋଟିଏ ସଂସ୍ଥା ଆନ୍ଦୋଳନର ଏକ ଅଂଶୀଦାର ହୋଇପାରେ, କିନ୍ତୁ ଆନ୍ଦୋଳନ ନୁହେଁ ।

### ଭାରତରେ ନାରୀ ଆନ୍ଦୋଳନ

ଆଜି ଆମ୍ଭେମାନେ ଯାହାକୁ ନାରୀ ଆନ୍ଦୋଳନ ବୋଲି କହୁଛୁ ତାହା ୧୮୦୦ ଖ୍ରୀଷ୍ଟାବ୍ଦ ସାମାଜିକ ସଂସ୍କାର ଆନ୍ଦୋଳନର ଅଂଶବିଶେଷ । ପ୍ରଥମେ ପୁରୁଷ ପରେ ନାରୀ ଯେଉଁମାନେ କି ସାମାଜିକ ଅପନିନ୍ଦା ଓ ଧର୍ମବାଛନ୍ଦ ହୋଇଥିଲେ ସେମାନଙ୍କୁ ସଂସ୍କାରକମାନେ ପ୍ରବର୍ତ୍ତାଇ ଥିଲେ। ବିଧବା ବିବାହ, ନାରୀଶିକ୍ଷା, ସତୀଦାହ ପ୍ରଥା , ବାଲ୍ୟବିବାହ ଆଦି ସବୁ ବିଷୟକୁ ନେଇ ସେମାନେ ଆନ୍ଦୋଳନ କରିଥିଲେ ଏବଂ ଲୋକଙ୍କୁ ଚେତାଇ ଥିଲେ । ସେ ସମୟରେ ବାଲ୍ୟବିବାହ ବହୁତ ସଂଖ୍ୟାରେ ହେଉଥିଲା । କମ୍ ବୟସର ଝିଅମାନେ ବୟସ୍କ ବ୍ୟକ୍ତିଙ୍କୁ ବିବାହ କରୁଥିବାରୁ ଆମ ସମାଜରେ ବାଲ୍ୟବିଧବା ସଂଖ୍ୟା ଅଧିକ ଥିଲା । ବହୁ ବାଧାବିଘ୍ନ ଦେଇ ସମାଜ ସଂସ୍କାରକମାନେ ବ୍ରିଟିଶ ଶାସକଙ୍କୁ ବାଧ କରିଥିଲେ, ସତୀପ୍ରଥାର ଉଚ୍ଛେଦ ପାଇଁ ଏକ ନିୟମ ପ୍ରଣୟନ କରିବାକୁ । ୧୮୨୯ ଖ୍ରୀଷ୍ଟାବ୍ଦରେ ସମାଜ ସଂସ୍କାରକମାନଙ୍କର ଆନ୍ଦୋଳନ ଦ୍ୱାରା ଜଣାଯାଇଥିଲା ଯେ ଅତ୍ୟାଚାରିତା, ଅଜ୍ଞ, ଅଶିକ୍ଷିତା, ନାରୀମାନଙ୍କର ଭାଗ୍ୟ ବିଧିରବିଧାନ ନୁହେଁ । ସମାଜ ସଂସ୍କାର ଆନ୍ଦୋଳନ ହିଁ

ପ୍ରଥମେ ସୁଯୋଗ ଦେଲା ମହିଳାମାନଙ୍କୁ ଶିକ୍ଷା ଗ୍ରହଣ କରି ସମାଜରେ ଡାକ୍ତର, ଶିକ୍ଷକ, ଶିକ୍ଷାବିତ୍ ହେବା ପାଇଁ ।

୧୯୦୦ ଖ୍ରୀଷ୍ଟାବ୍ଦରେ ଭାଷା, ଧର୍ମ ବା କଲ୍ୟାଣମୂଳକ କାର୍ଯ୍ୟକୁ ନେଇ ସମଗ୍ର ଭାରତର ସହରାଂଚଳରେ ସଂଗଠନମାନ ଗଢି ଉଠିଥିଲା । ୧୯୦୫ ମସିହା ବେଳକୁ ନେତ୍ରୀମାନଙ୍କୁ ଜାତୀୟ ଆନ୍ଦୋଳନକାରୀମାନେ ସ୍ୱଦେଶୀ ଆନ୍ଦୋଳନରେ ଭାଗ ନେବା ସହିତ ବ୍ରିଟିଶ ନିର୍ମିତ ସଂସ୍ଥା ଓ ବ୍ରିଟିଶ ତିଆରି ଜିନିଷକୁ ଗ୍ରହଣ ନ କରିବା ପାଇଁ ଡାକରା ଦେଇଥିଲେ । ୧୯୩୦ ଦଶନ୍ଧି ସୁଦ୍ଧା ମହାତ୍ମାଗାନ୍ଧୀଙ୍କ ଡାକରାରେ ନାରୀମାନେ ଅସହଯୋଗ ଓ ଆଇନ୍ ଅମାନ୍ୟ ଆନ୍ଦୋଳନରେ ବହୁତ ସଂଖ୍ୟାରେ ଭାଗ ନେଇଥିଲେ ।

ସ୍ୱାଧୀନତା ପରେ ୧୯୫୫ ମସିହାରେ ସ୍ୱାଧୀନ ଭାରତର ସମ୍ବିଧାନରେ ମହିଳାମାନଙ୍କ ପାଇଁ ଉନ୍ନତ ମାନର ନିୟମ ପ୍ରଣୟନ କରାଯାଇଥିଲା। ଯାହା ବିଶ୍ୱର ଅନ୍ୟ କୌଣସି ଦେଶରେ ହୋଇ ନଥିଲା । ସ୍ୱାଧୀନତା ପରେ ମହିଳା ଆନ୍ଦୋଳନକାରୀମାନେ ମହିଳା ସଂଗଠନ ତିଆରି କରିବା ସହିତ ବିକାଶମୂଳକ କାର୍ଯ୍ୟ ମଧ୍ୟ ହାତକୁ ନେଇଥିଲେ ଓ ଏଥିପାଇଁ ସରକାର ମଧ୍ୟ ସହଯୋଗ କରିଥିଲେ । ୧୯୫୪ ମସିହାରେ ଭାରତୀୟ ମହିଳାମାନଙ୍କର ଜାତୀୟ ସଂଗଠନ ଓ ୧୯୫୯ ମସିହାରେ ସମାଜବାଦୀ ମହିଳା ସଭା ଗଠିତ ହୋଇଥିଲା । ୬୦/୭୦ ଦଶକ ମଧ୍ୟରେ ଦେଶରେ ଅନେକ ବିକ୍ଷୋଭ ଦେଖା ଦେଇଥିଲା । ଗାନ୍ଧିଜୀଙ୍କର ସ୍ୱରାଜ ନମୂନା ଏବଂ ନେହେରୁଙ୍କର ନକ୍ସଲ୍‌ବାଦୀ ଆନ୍ଦୋଳନ, ଜୟ ପ୍ରକାଶ ନାରାୟଣଙ୍କର ସର୍ବୋଦୟ ଆନ୍ଦୋଳନରେ ମହିଳାମାନେ ବହୁଳ ସଂଖ୍ୟାରେ ଭାଗ ନେଇଥିଲେ।

୧୯୭୦ ଦଶନ୍ଧିରେ ମହିଳାମାନଙ୍କର ସମସ୍ୟାର ସମାଧାନ ପାଇଁ ଭାରତରେ ସ୍ୱୟଂଚାଳିତ ମହିଳା ସଂସ୍ଥା ଗଠନ କରାଯାଇଥିଲା, ସେମାନେ କୌଣସି ଜାତୀୟ ସ୍ତରରେ ବା ଦଳ ସହିତ ସଂଯୁକ୍ତ ନ ହୋଇ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ଚାହିଁଥିଲେ ।

୧୯୭୩-୭୫ ମସିହାରେ ଗୁଜୁରାଟରେ ମଧ୍ୟବିତ୍ତ ଶ୍ରେଣୀୟ ମହିଳାମାନେ ଏକତ୍ରିତ ହୋଇ ଦରବୃଦ୍ଧି, ଓ ବେକାରି ସମସ୍ୟା ଉପରେ ଆନ୍ଦୋଳନ କରିଥିଲେ । ଇଲା ଭଟ୍ଟ ଗାନ୍ଧିବାଦୀ ଦର୍ଶନ ଅନୁସାରେ ଏକ ମହିଳା ସଂଗଠନ ଆରମ୍ଭ କରିଥିଲେ । ଏହି ସଂସ୍ଥାର ମହିଳାମାନେ ସେମାନଙ୍କର ଅଧିକାର ଏବଂ ସ୍ୱାଧୀନତା ପାଇଁ ନିଜକୁ ପଞ୍ଜିକରଣ କରିଥିଲେ ।

ଆନ୍ଧ୍ରପ୍ରଦେଶର ମହିଳାମାନେ ତେଲେଙ୍ଗାନା ଆନ୍ଦୋଳନରେ ଅଂଶଗ୍ରହଣ ଓ ମହାରାଷ୍ଟ୍ରର ମହିଳାମାନେ ହିଂସାତ୍ମକ କାର୍ଯ୍ୟ ବିରୁଦ୍ଧରେ ଏକ ମଂଚ ଗଠନ କରିଥିଲେ । ୧୯୭୩ ମସିହା ସି.ପି.ଆଇର ନିର୍ମଳ ଗୋରେ ମହାରାଷ୍ଟ୍ରରେ ଦରଦାମ ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ କରିଥିଲେ ।

୧୯୭୫ ମସିହାକୁ ଆର୍ନ୍ତଜାତିକ ମହିଳା ବର୍ଷ ରୂପେ ଜାତିସଂଘ ଘୋଷଣା କଲାପରେ ସାରା ବିଶ୍ୱ ଅନେକ ମହିଳା ସ୍ୱୟଂଚାଳିତ ସଂଗଠନମାନ ମୁଣ୍ଡ ଟେକିଥିଲା । ଭାରତରେ ଜରୁରିକାଳୀନ ପରିସ୍ଥିତି ପରେ ହିଁ ନାରୀବାଦ ଚିନ୍ତାଧାରା ନେଇ ମହିଳା ସମସ୍ୟା ପାଇଁ କାମ କରିବାକୁ ଅନେକ ମହିଳା ଆରମ୍ଭ କରିଥିଲେ ।

୧୯୭୮ ମସିହାରେ ରମି ଜାବି ନାମକ ଏକ ମହିଳାର ବଳାତ୍କାରକୁ ମହିଳା ଆନ୍ଦୋଳନକାରୀ ରାଜନୈତିକ ରୂପରେଖ ଦେଇଥିଲେ । ରମି ଜାବି ଏବଂ ମଥୁରା ବଳାତ୍କାର ଘଟଣାକୁ ନେଇ ସବୁ ପ୍ରକାର ମହିଳା ସଂଗଠନମାନ ଏକାଠି ହୋଇ ସ୍ୱର ଉତ୍ତୋଳନ କଲେ ଏବଂ ସାରା ଭାରତରେ ବଳାତ୍କାରକୁ ନେଇ ଅନେକ ଶୋଭାଯାତ୍ରାକାରୀ ଦାବିପତ୍ର ଦେଇଥିଲେ । ତା'ପରେ ହିଁ ବଳାତ୍କାର ଆଇନ୍‌ର ସଂଶୋଧନ କରାଗଲା । ଏହା ପରେ ମଧ୍ୟ ସ୍ୱୟଂଚାଳିତ ମହିଳା ସଂଗଠନମାନ ଯୌତୁକ, ଘରୋଇ ହିଂସା ବିରୋଧରେ ଆନ୍ଦୋଳନ କଲେ ।

୧୯୮୦ ମସିହା ପର୍ଯ୍ୟନ୍ତ ମହିଳାମାନଙ୍କ ଉନ୍ନତି ପାଇଁ ଯାହାକିଛି ପଦକ୍ଷେପ ନିଆଗଲା ସେଗୁଡିକ ସମାଜର

ତଥାକଥିତ ବ୍ୟବସ୍ଥା ଭିତରେ ହିଁ କରାଗଲା ଏବଂ ସମାଜ ବ୍ୟବସ୍ଥାକୁ କେହି ପ୍ରଶ୍ନ କରୁନଥିଲେ । ୧୯୮୦ ଦଶନ୍ଧିର ଶେଷବେଳକୁ ମହିଳାମାନେ ସମାଜ ବ୍ୟବସ୍ଥାକୁ ପ୍ରଶ୍ନ କରିବାକୁ ଲାଗିଲେ ଏବଂ ସେହି ସମୟରେ ସମାଜ ବ୍ୟବସ୍ଥା ଏବଂ ମହିଳା ପରାଧୀନତା ମଧ୍ୟରେ ଥିବା ଯୋଗସୂତ୍ରକୁ କାର୍ଯ୍ୟକାରୀ କରିଥିଲେ । ୧୯୮୫ ମସିହାରେ ବମ୍ବେଠାରେ ହୋଇଥିଲା ସର୍ବଭାରତୀୟ ମହିଳା ଆନ୍ଦୋଳନକାରୀ ସମାବେଶ । ଏହା ପରେ ମହିଳା ସଂଗଠନମାନ ଧର୍ମ ଏବଂ ଧର୍ମନିରପେକ୍ଷତା ବିଷୟମାନ ଉପରେ କାର୍ଯ୍ୟକ୍ରମ ଆରମ୍ଭ କଲେ । ଏହି ଦଶନ୍ଧିବେଳେ ମଧ୍ୟ ଗ୍ରାମ୍ୟସ୍ତରର ମହିଳାଙ୍କୁ ସଂଗଠିତ କରାଗଲାଏବଂ ଅନେକ ଗଣସ୍ତରୀୟ ସଂଗଠନମାନ ଯଥା ଚିପକୋ ଆନ୍ଦୋଳନ, ସ୍ୱାସ୍ଥ୍ୟ, ଶିକ୍ଷା ଏବଂ ସମ୍ପତ୍ତି ଏବଂ ସମ୍ପତ୍ତିଗତ ଅଧିକାରକୁ ନେଇ କାମ କରିଥିଲେ । ସରକାରଙ୍କ ଦ୍ୱାରା ସମଗ୍ର ଭାରତରେ ଅନେକ ବିଶ୍ୱବିଦ୍ୟାଳୟ ଖୋଲାଗଲା । ଆଜି ମହିଳା ଆନ୍ଦୋଳନ ତା'ର ପରିସରକୁ ଆହୁରି ବଢେଇ ଧର୍ମ ନିରପେକ୍ଷତା, ପରିବେଶ, ସ୍ୱତନ୍ତ୍ର ପରିଚୟ, ରାଜନୀତି, ପଞ୍ଚାୟତିରାଜକୁ ନେଇ ବିଭିନ୍ନ ସ୍ତରରେ ସଂଗ୍ରାମ ଜାରି ରଖିଛନ୍ତି ।

ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଆ ନାରୀମାନଙ୍କ ଭୂମିକା ଭାରତବର୍ଷର ଇତିହାସରେ ୧୮୫୭ ମସିହାର । ସିପାହୀ ବିଦ୍ରୋହକୁ ଅନେକ ଭାରତରେ ସ୍ୱାଧିନତା ସଂଗ୍ରାମର ଅୟମାରମ୍ଭ ବୋଲି କହିଥାନ୍ତି । ଝାନ୍ସୀରାଣୀ ବା ଅଯୋଧ୍ୟାର ବେଗମ୍ ସାହେବାଙ୍କ ପରି ଓଡିଶାର କୌଣସି ମହିଳା ସିପାହି ବିଦ୍ରୋହରେ ସାମିଲ ହେବା କଥା ଏ ଯାଏ ଜଣାପଡିନି । ୧୯୦୬ ମସିହାରେ ଭାରତର କୁଳବୃଦ୍ଧ ଦାଦା ଭାଇ ନାରୋଜୀ ପୂର୍ଣ୍ଣ ସ୍ୱାଧୀନତା ବା ସ୍ୱରାଜ୍ୟ ହିଁ ଭାରତୀୟଙ୍କ ଧ୍ୟେୟ ବୋଲି ପ୍ରଥମେ ଘୋଷଣା କଲେ । ଏହି ରୂପେ ଭାରତରେ ସ୍ୱାଧୀନତା ଆନ୍ଦୋଳନ ଚାଲି ଥିବାବେଳେ ଓଡିଶାରେ ଅଳ୍ପ କେତେକ ମହିଳାଙ୍କ ଉପରେ ଏହାର ପ୍ରଭାବ ପଡିଥିଲା ବୋଲି ଶ୍ରୀମତୀ ରମାଦେବୀ ତାଙ୍କର ଆତ୍ମକଥାରେ ଲେଖିଛନ୍ତି । ଅନେକଙ୍କ ମତରେ ୧୯୨୦ ମସିହା ଅଗଷ୍ଟ ପହିଲା ଦିନ ''ସ୍ୱରାଜ ମୋର ଜନ୍ମଗତ ଅଧିକାର ଏବଂ ମୁଁ ତାହା ନିଶ୍ଚୟ ହାସଲ କରିବି'' ଏହି ମହାମନ୍ତ୍ର ଦ୍ୱାରା ଲୋକମାନ୍ୟତିଳକଙ୍କର ତିରୋଧାନ ଦିବସରେ ''ଜାଲିଆନାୱାଲାବାଗ, ଖିଲାଫତ, ସ୍ୱରାଜ୍ୟ ସତ୍ୟାଗ୍ରହ'' ନାମକ ଅସହଯୋଗ ଆନ୍ଦୋଳନ କଥା ମାହାତ୍ମାଗାନ୍ଧୀ ଘୋଷଣା କଲେ ଏବଂ ସେହି ବର୍ଷ ସେପ୍ଟେମ୍ବର ମାସରେ କଲିକତା କଂଗ୍ରେସ ଅଧିବେଶନରେ ଏହି ପ୍ରସ୍ତାବ ଆଗତ ହେଲା । ମହାତ୍ମାଜୀଙ୍କର ମାର୍ଗ ଦର୍ଶନରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ସମୁଦ୍ର ହିମାଚଳ ସମଗ୍ର ଭାରତକୁ ଦୋହଲାଇ ଦେଲା ଏବଂ ସମଗ୍ର ଭାରତର ନାରୀ ସମାଜ ସେମାନେ ମୁଷ୍ଟିମେୟ ହୁଅନ୍ତୁ ପଛକେ – ଏହି ଆନ୍ଦୋଳନରେ ଝାସ ଦେଲେ । ଓଡିଶାର ନାରୀ ସମାଜ ମଧ୍ୟ ସେଥିରୁ ଆଡେଇ ହୋଇପାରିଲେ ନାହିଁ । ସ୍ୱରାଜ୍ୟ ଯଜ୍ଞ ବେଦୀରେ ସେମାନଙ୍କର ଯୋଗଦାନ ସ୍ୱୀକୃତି ଲାଭକଲା ।

୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ମହାତ୍ମାଗାନ୍ଧି ତାଙ୍କର ସହଧର୍ମୀଣୀ କସ୍ତୁରୀବାଇ ଗାନ୍ଧୀଙ୍କ ସହ କଟକ ଆସିଲେ । ମାର୍ଚ୍ଚ ୨୪ ତାରିଖ ଅପରାହ୍ନ ୨ଟା ବେଳେ ସେ ବାଲୁବଜାରସ୍ଥିତ ବିନୋଦ ବିହାରୀ ପରିସର ମଧ୍ୟରେ ଗୋଟିଏ ମହିଳା ସଭାରେ ଯୋଗ ଦେଇଥିଲେ ଯେଉଁଠି ୪୦ ଜଣ ମହିଳା ଉପସ୍ଥିତ ଥିଲେ । ଶ୍ରୀମତୀ ସରୋଜିନୀ ଚୌଧୁରୀ, ଶ୍ରୀମତୀ ହିରଣ୍ମୟୀ ସେନାପତି, ଶ୍ରୀମତୀ ହୈମବତୀ ଦେବୀ, ଶ୍ରୀମତୀ ସରଳା ଦେବୀ, ରମାଦେବୀ ପ୍ରମୁଖ ଏହି ସଭାରେ ଉପସ୍ଥିତ ଥିଲେ । ଏହା ହିଁ ଓଡିଶାରେ ଭାରତର ସ୍ୱାଧୀନତା ପ୍ରାପ୍ତି ଉଦ୍ଦେଶ୍ୟରେ ପ୍ରଥମ ମହିଳା ସଭା । ଶ୍ରୀମତୀ ସରଳା ଦେବୀ ଓଡିଶାର ପରଦା ପ୍ରଥାକୁ ଅମାନ୍ୟ କରି କଂଗ୍ରେସର ୪ ଜଣିଆ ସଦସ୍ୟା ହୋଇ ସଭାସମିତିରେ ଯୋଗଦେଲେ । ସେ ମହାତ୍ମାଗାନ୍ଧିଙ୍କୁ ଓଡିଶାର ମହିଳାମାନଙ୍କର ସମସ୍ୟା ବିଷୟରେ ପତ୍ର ଦ୍ୱାରା ଅଭିହିତ କରାଇଲେ ଯେ ମହିଳାମାନେ ରାଜନୀତିରେ ଯେପରି ନକ୍ଷେକ୍ଷିତ ଓ ଅସମାନ ହୋଇ ରହିଛନ୍ତି ସେଥିରେ ସ୍ୱାଧୀନତା ଆସିବା ସମ୍ଭବ କି ? ସେ କରାଚୀ କଂଗେସ୍ର

ଅଧିବେଶନରେ ଯୋଗଦେଇ, ଜାତୀୟ ଆନ୍ଦୋଳନରେ ମହିଳାମାନେ ବହୁତ ସଂଖ୍ୟାରେ ଭାଗ ନେବା ବିଷୟରେ ନିଜର ବଳିଷ୍ଠ ମତ ରଖିଥିଲେ । ପ୍ରଥମ ଓଡିଆ ମହିଳା ସେ ଯାହାଙ୍କୁ ଭେଲୋର ଜେଲକୁ ନିଆଯାଉଥିବାବେଳେ ରାସ୍ତାସାରା ତାଙ୍କୁ ଉଚ୍ଛସିତ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ୧୯୨୨ ମସିହାରେ ଗୟାଠାରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା । ଶ୍ରୀମତୀ ହିରାମଣି ଦେବୀ (ଆସ୍କା) ଓ ଶ୍ରୀମତୀ ରମାଦେବୀ ପ୍ରତିନିଧି ଭାବରେଏହି ଅଧିବେଶନରେ ଯୋଗଦେଲେ । ଏମାନେ ଓଡିଶାର ପ୍ରଥମ ମହିଳା ପ୍ରତିନିଧି ।

ଖଦୀର ପ୍ରସାର ଅସହଯୋଗ ଆନ୍ଦୋଳନର ଅନ୍ୟତମ ମୁଖ୍ୟ କାର୍ଯ୍ୟକ୍ରମ ହୋଇଥିବାରୁ ଗାନ୍ଧିଜୀଙ୍କ ଏହି ଆହ୍ୱାନକୁ ଶିରୋଧାର୍ଯ୍ୟ କରିଥିବା ମହୀୟସୀ ମହିଳାମାନଙ୍କ ମଧ୍ୟରେ ରମାଦେବୀ ଅଗ୍ରଗଣ୍ୟା । ଏକାଧାରରେ ବିପ୍ଳବ, ସେବା, କରୁଣା, ଦୃଢମନା, ସମ୍ବେଦନଶୀଳତା ଓ ନାରୀବାଦୀ ସେମାନଙ୍କ ମଧ୍ୟରେ ଏଭଳି ସମନ୍ୱୟ ସୃଷ୍ଟି କରିଥିଲା, ଯାହା ତାଙ୍କୁ ଅପୂର୍ବ ତେଜସ୍ୱିନୀ ସେହ୍ନମୟୀ ମା' ଭାବରେ ପରିଚିତି କରାଇଥିଲା । ବାନର ସେନାମାନେ ଯେତେବେଳେ ହାତରେ ବେତ ମାଡଖାଇ ହାତ ଲାଲ୍‌କରି ଆଶ୍ରମକୁ ଫେରୁଥିଲେ ରମାଦେବୀ ସେମାନଙ୍କୁ ନିଜ ହାତରେ ଖୁଆଇ ଦେଉଥିଲେ ।

୧୯୨୫ ମସିହାରେ ପୁରୀ ଜିଲ୍ଲାର ବୋଲଗଡଠାରେ ଦ୍ୱିତୀୟ ପ୍ରାଦେଶିକ ସମ୍ମିଳନୀ ଅନୁଷ୍ଠିତ ହେଲା । ୧୯୨୬ରେ ଉତ୍କଳମଣିଙ୍କ ଉଦ୍ୟମରେ ଗୋଟିଏ ବିଧବାଶ୍ରମ ସ୍ଥାପିତ ହେଲା । ସର୍ବଶ୍ରୀ ସୁନାମଣି ଦେବୀ, ଅନ୍ନପୂର୍ଣ୍ଣା ସାହୁ, ଶ୍ରୀମତୀ ଦିବ୍ୟା ପ୍ରମୁଖ ଏହି ଆଶ୍ରମରେ ଯୋଗଦେଲେ । ୧୯୨୮ରେ କୁମାରୀ ଶୈଳବାଳା ଦାସଙ୍କ ପ୍ରଚେଷ୍ଟାରେ ଓଡିଶାରେ ମହିଳା ସଂଗଠନର ଶାଖା ସ୍ଥାପିତ ହେଲା । ଶ୍ରୀମତୀ ନିର୍ମଳା ନାୟକ, ସୁଖଲତା ରାଓ, ରୁକ୍ମିଣୀ ଦେବୀ, ସୁନ୍ଦରମଣି ପରିଜା, ବୀଣା ଦେଇ, ଜ୍ୟୋସ୍ନା ଦେଇ, ମାଳତୀ ଚୌଧୁରୀ, ବିନୋଦିନୀ ଷଡଙ୍ଗୀ, ରମାଦେବୀ ପ୍ରଭୃତି ଏହାର ସଦସ୍ୟା ହେଲେ । ମାତ୍ର ସ୍ୱାଧୀନତା ଆନ୍ଦୋଳନ ସହ ଏହି ସଂଗଠନର କୌଣସି ଯୋଗାଯୋଗ ନଥିଲା । ଶୈଳବାଳା ଦାସ ଥିଲେ ଓଡିଶାର ସର୍ବପ୍ରଥମ ମହିଳା ଯିଏ ବିଲାତ ପଢିବା ପାଇଁ ଯାଇଥିଲେ । ତାଙ୍କ ଭଉଣୀ ସୁଧାଂଶୁବାଳା ଥିଲେ ଭାରତର ପ୍ରଥମ ମହିଳା ଓକିଲ । ମହିଳା ଶିକ୍ଷାର ପ୍ରସାର, ଶ୍ରମଜୀବୀଙ୍କ ମୌଳିକ ଅଧିକାର ଓ ବ୍ରିଟିଶ୍ ସରକାରଙ୍କ ଦମନମୂଳକ ଶାସନର ବିରୁଦ୍ଧାଚରଣ ଥିଲା ଶୈଳବାଳାଙ୍କ ରକ୍ତ ମଜ୍ଜାଗତ ପ୍ରବୃତ୍ତି । ଆଜି ନାରୀଶିକ୍ଷାର ପ୍ରସାର, ସବୁକ୍ଷେତ୍ରରେ ମର୍ଯ୍ୟାଦାବନ୍ତ ପ୍ରତିଷ୍ଠା ସ୍ୱାଭିମାନ, ଆତ୍ମବିଶ୍ୱାସର ସ୍ୱୀକୃତି ସବୁ ଶୈଳବାଳାଙ୍କ ନିଷ୍ଠାର ଫଳ

୧୯୨୮ରେ କଲିକତାରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଶ୍ରୀମତୀ ଜାହ୍ନବୀ ଦେବୀ, କୋକିଳ ଦେବୀ, ସରୋଜିନୀ ଚୌଧୁରୀ, ସରଳା ଦେବୀ, ରସାମଣି ଦେବୀ ଓ ରମାଦେବୀ ଓଡିଶାର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ ।

୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଦିନ ସମଗ୍ର ଦେଶରେ ପୂର୍ଣ୍ଣ ସ୍ୱାଧୀନତାର ସଂକଳ୍ପ ପାଠ କରାଯାଇଥିଲା । କଟକରେ ହେଉଥିବା ଏହି ସମାରୋହରେ ୫ ଜଣ ମହିଳା କିରଣବାଳା ସେନ୍, ମାଳତୀ ଚୌଧୁରୀ, ମଙ୍ଗଳା ସେନ୍, କମଳା ସେନ୍ ଓ ଅନ୍ନପୂର୍ଣ୍ଣା ଚୌଧୁରୀ ଉପସ୍ଥିତ ଥିଲେ ।

୧୯୩୦ ମସିହା ଏପ୍ରିଲ ୬ ତାରିଖ ଦିନ ୨୦ ଜଣ ସତ୍ୟାଗ୍ରହୀ ଇଞ୍ଚୁଡିରେ ଲବଣ ସତ୍ୟାଗ୍ରହ କରିବା ପାଇଁ କଟକରୁ ପଦ ଯାତ୍ରାକଲେ । କିରଣବାଳା ସେନ୍, ମାଳତୀ ଚୌଧୁରୀ, ରମାଦେବୀ ସେହି ସମୟରେ ଇଞ୍ଚୁଡି ଯାଇ ଉପକୂଳବର୍ତ୍ତୀ ଗାଁ ଶ୍ରୀଜଙ୍ଗସାରଥୀ, ରସାଳପୁର ଆଦି ଗାଁ'କୁ ଯାଇ ଗାଁ'ର ଝିଅବୋହୂମାନଙ୍କୁ ଲୁଣମାରିବା ପାଇଁ ପ୍ରବର୍ତ୍ତାଇଲେ । ଫଳରେ ଶହଶହ ମହିଳା ଶଙ୍ଖ ବଜାଇ ସେମାନଙ୍କ ସଙ୍ଗେ ମିଶି ଲୁଣ ମାରିଲେ । ସତ୍ୟାଗ୍ରହ ଗଣ ଆନ୍ଦୋଳନରେ ପରିଣତ ହେଲା ।

୧୯୩୧ ମସିହା ମାର୍ଚ୍ଚ ମାସ ପ୍ରାରମ୍ଭରେ ଗାନ୍ଧି ଇରଉଇନ୍ ସନ୍ଧି ହେବା ପରେ ରାଜବନ୍ଦୀମାନେ କାରାମୁକ୍ତ ହେଲେ । ସେତେବେଳେ ଜନସାଧାରଣଙ୍କ ମଧ୍ୟରେ ଅଭୂତପୂର୍ବ ଉତ୍ସାହ ଓ ଉଦ୍ଦୀପନା ଦେଖାଦେଲା । ଏହି ସମୟରେ ଉତ୍କଳ ଭାରତୀ କୁନ୍ତଳାକୁମାରୀଙ୍କ ଅଧ୍ୟକ୍ଷତାରେ ବାଲେଶ୍ୱରର ବାଗ୍ ବୃନ୍ଦାବନ ପଡିଆରେ ଏକ ବିରାଟ ମହିଳା ସମ୍ମିଳନୀ ଅନୁଷ୍ଠିତ ହେଲା । ସର୍ବଶ୍ରୀ ଜାହ୍ନବୀ ଦେବୀ ଓ କୋକିଳା ଦେବୀ ଏହାର ମୁଖ୍ୟ ଉଦ୍ୟୋକ୍ତା ଥିଲେ । ୧୯୩୧ ମସିହା ମାର୍ଚ୍ଚ ମାସରେ କରାଚୀଠାରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା । ଓଡିଶାର ଜେଲ୍ ଫେରନ୍ତା ମହିଳା ସତ୍ୟାଗ୍ରହୀମାନେ ଏହି ଅଧିବେଶନରେ ପ୍ରତିନିଧି ଭାବେ ଯୋଗ ଦେଇଥିଲେ।

ଏହି ଅଧିବେଶନର ପୂର୍ବ ପ୍ରସ୍ତୁତି ସ୍ୱରୂପ ଓଡିଶାର ୮୮ ଜଣ ମହିଳାଙ୍କୁ ଡ୍ରିଲ୍, ଛୁରା, ଖେଳ, ଆସନ, ନମସ୍କାର, ପତାକା ଉତ୍ତୋଳନ, ପ୍ରଥମୋପଚାର, ଭିଡ ସମ୍ଭାଳିବା, ରାତିରେ ପହରା ଦେବା, ଜାତୀୟ ସଂଗୀତ, ରାଷ୍ଟ୍ରଭାଷା, ଓଡିଶାର ଇତିହାସ, କଂଗ୍ରେସ ଇତିହାସ, ସତ୍ୟାଗ୍ରହର ଇତିହାସ ଆଦି ଏହି ଶିବିରରେ ଶିକ୍ଷା ଦିଆଗଲା । ଏହି ଶିକ୍ଷାର୍ଥୀନୀମାନେ ଯେଉଁଦିନ ହଜାର ହଜାର ଦର୍ଶକଙ୍କ ଆଗରେ ଡ୍ରିଲ, ଛୁରା ଖେଳ ଆଦି ପ୍ରଦର୍ଶନ କଲେ ସେଦିନ ଓଡିଶାରେ ନାରୀ ଜାଗରଣର ଏକ ନୂତନ ପର୍ବ ଆରମ୍ଭ ହେଲା ।

୪ ଜାନୁଆରୀ ୧୯୩୨ରେ ମହାତ୍ମାଗାନ୍ଧୀ ଗିରଫ ହେଲେ ଏବଂ କଂଗ୍ରେସକୁ ସରକାର ବେଆଇନ୍ ଘୋଷଣା କଲେ । ଓଡିଶାରେ ବିଭିନ୍ନ ଜିଲ୍ଲାରୁ ବହୁ ସଂଖ୍ୟକ ମହିଳା ଯୋଗଦେଇ କାରାବରଣ କଲେ । ଏହି ମହିଳା ରାଜବନ୍ଦୀମାନେ ମଦ, ଗଞ୍ଜେଇ, ଅଫିମ ଓ ବିଲାତି ଲୁଗା ଦୋକାନରେ ପିକେଟିଂ, ବେଆଇନ୍ ବୁଲେଟିନ୍ ବାଣ୍ଟିବା, ବେଆଇନ ଲୁଣ ବିକିବା, ସଭାର ଶୋଭାଯାତ୍ରା, ପତାକା ଉତ୍ତୋଳନ ଆଦିରେ ଯୋଗଦେଇ ଗିରଫ ହେଉଥିଲେ ।

୧୯୩୪ ମସିହା ମଇମାସରେ ମହାତ୍ମାଗାନ୍ଧୀ ଅସ୍ପୃଶ୍ୟତା ନିବାରଣର ବାର୍ତ୍ତା ପ୍ରଚାର କରିବା ପାଇଁ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରାରେ ଗାନ୍ଧିଜୀ ସତ୍ୟାଗ୍ରହ ଆଶ୍ରମକୁ ଆସି ସୋରରେ ଆଶ୍ରମ ସ୍ଥାପନ କରିଥିବା ଶ୍ରୀମତୀ ପୁରବାଇ, ସୁନାମଣି ଦେବୀ, ଶୋଭାବତୀ ଦେବୀ, ଅନ୍ନପୂର୍ଣ୍ଣା ଦେବୀ, ଅଂଶୁମାଳୀ ରାୟ ପ୍ରଭୃତି ଯୋଗ ଦେଇ ସନ୍ତୋଷ ଜନକ ଭାବରେ ନିଜ ନିଜର କର୍ତ୍ତବ୍ୟ ରମାଦେବୀ ତତ୍ତ୍ୱାବଧାନରେ ସଂପନ୍ନ କରିଥିବାରୁ ଗାନ୍ଧିଜୀଙ୍କର ପ୍ରଶଂସା ଭାଜନ ହୋଇଥିଲେ ।

ଏହାଛଡା ଶରଣାର୍ଥୀଙ୍କୁ ଥଇଥାନ କରିବା, ବନ୍ୟା ପୀଡିତମାନଙ୍କ ମଧ୍ୟରେ ସଂକଟ ତ୍ରାଣ କାର୍ଯ୍ୟ କରିବା, ରାଷ୍ଟ୍ରଭାଷା ଅଧ୍ୟୟନ ଓ ପ୍ରଚାର, ରୋଗୀ ସେବା, ଖଦି ବିକ୍ରୟ ଆଦି କାର୍ଯ୍ୟ ମଧ୍ୟ ସ୍ୱାଧୀନତା ଆନ୍ଦୋଳନର ଅଂଶବିଶେଷ । ୧୯୪୦ରେ ବିଶ୍ୱଯୁଦ୍ଧ ଲାଗିଥିବାବେଳେ ବ୍ରିଟିଶ ସରକାର ଯେଉଁ ଯୁଦ୍ଧ ସମ୍ବାଦ ନିୟନ୍ତ୍ରଣ ଅର୍ଡିନାନ୍ସ ଜାରିକଲେ ଗାନ୍ଧିଜୀ ତାହାର ବିରୋଧ କରି ସ୍ୱତନ୍ତ୍ର ସତ୍ୟାଗ୍ରହ ଆରମ୍ଭ କରିଥିଲେ । ସର୍ବଶ୍ରୀ ପ୍ରିୟମ୍ବଦା ଦେବୀ ଓ ଲକ୍ଷ୍ମୀବାଇଏହି ସତ୍ୟାଗ୍ରହ କରି କାରାଦଣ୍ଡ ଭୋଗିଥିଲେ ।

୧୯୪୨ରେ ଭାରତ ଛାଡ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ସରକାର ବଡବଡ ନେତାଙ୍କୁ କାରାରୁଦ୍ଧ କଲେ । ଶ୍ରୀମତୀ ମାଳତୀ ଚୌଧୁରୀ ନିଖିଳ ଭାରତ କଗ୍ରେସ କମିଟିର ବମ୍ବେ ବୈଠକରେ ଯୋଗଦେଇ ଧରା ନପଡି ଓଡିଶାରେ ପହଂଚି ଭାରତ ଛାଡ ଆନ୍ଦୋଳନର କାର୍ଯ୍ୟସୂଚୀ ଓ ଗାନ୍ଧିଜୀଙ୍କର କର ବା ମର ନିର୍ଦ୍ଦେଶ ଶୁଣାଇଲେ । ତଦନୁସାରେ ସରକାରୀ କର୍ମଚାରୀଙ୍କୁ ଚାକିରିରୁ ଇସ୍ତଫା ଦେବାପାଇଁ ପ୍ରବର୍ତ୍ତାଇବା, ସମାନ୍ତରାଳ ସରକାର ଗଠନ କରିବା, ସରକାରୀ ଦଳକୁ ଅଚଳ କରିଦେବା, ମରଣ ସେନା ସଂଗଠନ କରିବା କାର୍ଯ୍ୟକ୍ରମ ହାତକୁ ନିଆଗଲା ।

କସ୍ତୁରବା ଗାନ୍ଧି ଦେହତ୍ୟାଗ ପରେ ତାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ କସ୍ତୁରବା ଗାନ୍ଧୀ ସ୍ମାରକ ଟ୍ରଷ୍ଟ ଗଠନ କରି ସର୍ବଶ୍ରୀ ଅନ୍ନପୂର୍ଣ୍ଣା ଦାସ, ରମ୍ଭାଦେବୀ ଦୁତିଆ, ସୁମିତ୍ରା ଚୌଧୁରୀ, ଡଃ ତୁଙ୍ଗବିଦ୍ୟା ଦେବୀ ଶକୁନ୍ତଳା ଦେବୀ ପ୍ରମୁଖ ମହିଳା ଓ ଶିଶୁବିକାଶ କାର୍ଯ୍ୟକ୍ରମକୁ କାର୍ଯ୍ୟନ୍ୱିତ କଲେ । ଏହାଛଡା ଓଡିଶାର ବିଧାନସଭାର ସଦସ୍ୟାଭାବରେ

ଶ୍ରୀମତୀ ସରଳାଦେବୀ, ପ୍ରିୟମ୍ବଦା ଦେବୀ ଓ ଲକ୍ଷ୍ମୀବାଇଙ୍କ ନାମ ଉଲ୍ଲେଖଯୋଗ୍ୟ ଅଟେ । ଶ୍ରୀମତୀ ମାଳତୀ ଚୌଧୁରୀ ମଧ୍ୟ ୧୯୪୭ ଶାସନ ବିଧାୟକ ସଭାର ସଦସ୍ୟା ନିର୍ବାଚିତ ହୋଇଥିଲେ । ଶ୍ରୀମାତୀ ଅନ୍ନପୂର୍ଣା ମହାରଣା ୪ବର୍ଷ ବେଳୁ ବାପା ଗୋପବଂଧୁ ଚୌଧୁରୀ ଓ ମାତା ରମାଦେବୀଙ୍କ ସହ ଗାନ୍ଧୀ ନୀତି ଗ୍ରହଣକଲେ ଓ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ ।

ସ୍ୱାଧୀନତା ଆନ୍ଦୋଳନରେ ପଶ୍ଚିମ ଓଡିଶାର ମହିଳା-କୃଷ୍ଣାଦେବୀ, ପାର୍ବତୀଗିରି, ପ୍ରଭାବତୀ ଦେବୀ, ଗୁରୁବାରି ମେହେର, ରୁକ୍ମିଣୀ ଦେବୀ ଜମ୍ବୁବତୀ ପଟ୍ଟନାୟକ ଆଦି ସ୍ୱାଧୀନତା ଆନ୍ଦୋଳନ ସହ ବିଭିନ୍ନ ରଚନାତ୍ମକ କାର୍ଯ୍ୟରେ ନିଜକୁ ସାମିଲ କରିଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ଦକ୍ଷିଣ ଓଡିଶାର ମହିଳା-ଗଞ୍ଜାମ ଜିଲ୍ଲାର କୃଷ୍ଣପ୍ରିୟା ଦେବୀ, କୁନ୍ତଳା କୁମାରୀ ସାବତ୍, ଫି ତାରାମା, ଲକ୍ଷ୍ମିବାଇ, ଭିଭି ଗିରିଙ୍କ ମା ଶୁଭଦ୍ରା ଆମ୍ମ. ପିତାରାମ୍ମା ଏୁରମୟୟ, ଲକ୍ଷ୍ମୀବାଇ, ଟି ଅନୁରାଧା, କୁନ୍ଦଲତା ଦେବୀ, କିଶୋରୀମଣି ଦେବୀ, ଶୋଭାବତୀ ପଣ୍ଡା ଆଦି ବିଭିନ୍ନ ଭାବରେ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ।

### ସେହି ସମୟରେ ନାରୀବାଦୀ ଚିନ୍ତା ଓ ପଦକ୍ଷେପ-

ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ସହିତ ଏହି ମହିଳାମାନେ ନିଜର ସ୍ଥିତି, ନିଜର ଅଧିକାର ପାଇଁ ତଥା ସାମାଜିକ କୁସଂସ୍କାର ବିରୁଦ୍ଧରେ ମଧ ବିଭିନ୍ନ ଅନୁଷ୍ଠାନ ଗଠନ କରି ସ୍ୱର ଉତ୍ତୋଳନ କରୁଥିଲେ । ୧୯୨୦-୨୧ ମସିହା ବେଳକୁ ପୁରୀର ଓକିଲ ଲୋକନାଥ ବାହାଦୁରଙ୍କ ପତ୍ନୀ ଲାବଣ୍ୟ ଦେବୀ ପ୍ରଥମ କରି ପୁରୀଠାରେ 'ମହିଳା ବନ୍ଧୁସମିତି' ନାମରେ ଏକ ମହିଳା ଅନୁଷ୍ଠାନ ପ୍ରତିଷ୍ଠା କଲେ। ୧୯୨୦ ମସିହାରେ କଂଗ୍ରେସ ଅଧିବେଶନରୁ ଫେରିବା ପରେ ସରଳା ଦେବୀ ଓଡିଶାର ମହିଳାମାନଙ୍କୁ ଏକାଠି କରି ଉତ୍କଳ ମହିଳା ସମ୍ମିଳନୀ ଗଠନ କରିଥିଲେ । ୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ପରେ ସରଳା ଦେବୀ ନିର୍ବାଚନ ଲଢି ବିଧାନସଭାର ପ୍ରଥମ ମହିଳା ବିଧାୟିକା ଭାବରେ ନିର୍ବାଚିତ ହୋଇଥିଲେ। ବିଧାୟିକା ଭାବରେ ସେ ନାରୀମାନଙ୍କ ସୁରକ୍ଷା, ମୌଳିକ ଅଧିକାର, ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ତଥା ସାରଦା ଆଇନର କାର୍ଯ୍ୟକାରିତା ପାଇଁ ଦାବି କରିଥିଲେ । ଯେଉଁ କେତେଜଣ ନିଜର ନାରୀବାଦୀ ଲେଖାଦ୍ୱାରା ନାରୀ ସମାନତାର ବାର୍ତ୍ତା ବୁଣିଥିଲେ ସେ ମଧ୍ୟରେ ଡାକ୍ତର କୁନ୍ତଳା କୁମାରୀ ସାବର ଓ ସରଳା ଦେବୀ ଅନ୍ୟତମ ।

### ରଚନାତ୍ମକ କାର୍ଯ୍ୟରେ ମହିଳାଙ୍କ ନେତୃତ୍ୱ

୧୯୩୪ ମସିହାରେ ପଦଯାତ୍ରା ଶେଷ କରି ଗାନ୍ଧିଜୀ ଓଡିଶା ଛାଡିଲା ବେଳକୁ ସତ୍ୟାଗ୍ରହୀମାନଙ୍କୁ ଗ୍ରାମାଞ୍ଚଳରେ ରହି ଖଦି ଗ୍ରାମୋଦ୍ୟୋଗ, ନିଶା ନିବାରଣ, ମୌଳିକଶିକ୍ଷା ଆଦି ଗଠନମୂଳକ କାର୍ଯ୍ୟ ମାଧ୍ୟମରେ ଲୋକଙ୍କ ମଧ୍ୟରେ ସ୍ୱାବଲମ୍ବନଶୀଳତା, ନିର୍ଭୟତା ଆଦି ଗୁଣର ବିକାଶ କରିବା ପାଇଁ ନିର୍ଦ୍ଦେଶ ଦେଇଗଲେ । ତଦନୁସାରେ ଓଡିଶାରେ ସର୍ବଶ୍ରୀ ସୁନାମଣି ଦେବୀ, ବେରବୋଇରେ ସୁଭଦ୍ରା ମହତାବ- ଅଗରପଡାରେ ମାଳତୀ ଚୌଧୁରୀ - ଅନୁଗୁଳରେ ରମାଦେବୀ -ବରୀ ଅଞ୍ଚଳରେ ପୂରବାଇ ସୋରରେ ବିମଳାବିଦ୍ୟା, କାକଟପୁରରେ ମଙ୍ଗଳାସେନ୍, କାଇପଡା ଓ ବ୍ରହ୍ମଗିରିରେ ଲକ୍ଷ୍ମୀ ଦେବୀ, ସୋରଙ୍ଗଯୋଡିରେ ଅମୃତ ପୁରୀ, ସମଲାଇପଦରରେ କନକ ଲତା ଦେବୀ, କୁମ୍ଭାରିଆରେ କ୍ଷେତ୍ରମଣି ଦେବୀ, ବାଗଲପୁରରେ ବେଲ ଦେଇ, ଗଣେଶ୍ୱରପୁରରେ ସୁଶୀଳା ଦେବୀ, ରାମପୁର ଓ ନୀଳାପଦାରେ ଶୋଭାବତୀ ଦେବୀ, ସୁବର୍ଣ୍ଣପୁର ଓ ଗୁହାଳୀରେ ଗୋଦାବରି ଦେବୀ, ବାଗ୍ମା ରନ୍‌ଗିରିରେ ଅନ୍ନପୂର୍ଣ୍ଣା ଦେବୀ, ରମ୍ଭା ଓ ବୀର ନରସିଂହପୁରରେ ଶରତକୁମାର ଦେବୀ, ଅରୁଆଳରେ ହାରାମଣି ଦେଇ ଧାରପୁରରେ ରହି ଗଠନ ମୂଳକକାର୍ଯ୍ୟ ୧୯୩୪ ରୁ ୧୯୪୨ ପର୍ଯ୍ୟନ୍ତ କଲେ।

ରମାଦେବୀ ଗାନ୍ଧୀ ବିଚାରକୁ ଜୀବନର ପୁଞ୍ଜି ଭୂଦାନ, ଗ୍ରାମଦାନ ଓ ସର୍ବୋଦୟ ଆନ୍ଦୋଳନର କର୍ଣ୍ଣଧାର ସାଜିଥିଲେ । ସେତେବେଳର ରକ୍ଷଣଶୀଳ ପରଦା ପ୍ରଥା ଭିତରୁ ନାରୀମାନଙ୍କୁ ସ୍ୱାଧୀନତା ଆନ୍ଦୋଳନ ଓ ସମାଜସେବା

ଭିତରକୁ ଆଣିବା ପାଇଁ ବହୁ ପରିଶ୍ରମ କରିଛନ୍ତି । ପାଇଖାନା ସଫା, ଅସ୍ପୃଶ୍ୟତା ନିବାରଣ, ହରିଜନ ସେବା, ନିଶା ନିବାରଣ, ଆଦିବାସୀ ଅଂଚଳରେ ଶିକ୍ଷାର ପ୍ରସାର, ବାଳିକାମାନଙ୍କୁ ଶିକ୍ଷା ଆଦି ବହୁ ସଂସ୍କାରମୂଳକ କାମ କରିବା ପାଇଁ କର୍ମୀମାନଙ୍କୁ ତିଆରି କରି ଗ୍ରାମାଂଚଳରେ ରଚନାତ୍ମକ କାମ ଜାରଜ୍ଜ ରଖିଥିଲେ ।

ମହିଳା ଆନ୍ଦୋଳନ, ସେ ବିଶ୍ୱ ମହିଳା ଆନ୍ଦୋଳନ ହେଉ ବା ଭାରତର ମହିଳା ଆନ୍ଦୋଳନ ହେଉ, ତାହା ବିଭିନ୍ନ ଅଞ୍ଚଳରେ ଗଢ଼ି ଉଠିଥିବା ମହିଳା ଆନ୍ଦୋଳନର ସମଷ୍ଟି । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ଓଡିଶା ମହିଳା ଆନ୍ଦୋଳନର ଅଙ୍କୁରୋଦ୍‌ଗମ୍ ବିଂଶ ଶତାବ୍ଦୀ ପ୍ରାରମ୍ଭରୁ ଦେଖିପାରିବା । ଅନ୍ତତଃ ସେବେଠାରୁ ଇତିହାସ ପୃଷ୍ଠାରେ ତା'ର ଅବତାରଣାକୁ ପଢିପାରିବା, ଖୋଜିପାରିବା ଏବଂ ସେହି ସମୟରୁ ଆଜି ପର୍ଯ୍ୟନ୍ତ ମହିଳା ଆନ୍ଦୋଳନକୁ ଆମେ ବିଭିନ୍ନ ପର୍ଯ୍ୟାୟରେ ବିଭକ୍ତ କରିପାରିବା ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡିଶାର ମହିଳା ଆନ୍ଦୋଳନ ତତ୍‌କାଳୀନ ଭାରତର ମହିଳା ଆନ୍ଦୋଳନର ରଣନୀତିଠାରୁ ଭିନ୍ନ ନଥିଲା । ସେସମୟରୁ ହିଁ ଭାରତର ମହିଳାମାନେ ନିଜେ ନିଜର ସମସ୍ୟାକୁ ଚିହ୍ନଟ କରି ଉତ୍‌ଥାପନ କରିବାକୁ ଆରମ୍ଭ କରିଥିଲେ ଏବଂ ନିଜର ଅଧିକାର ତଥା ସମାନତା ପାଇଁ ପ୍ରଧାନତଃ ଦୁଇଟି ମାର୍ଗକୁ ବାଛି ନେଇଥିଲେ । ପ୍ରଥମଟି ହେଲା ପୁରୁଷଙ୍କ ସହିତ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ଏବଂ ଦ୍ୱିତୀୟଟି ହେଲା ବିଭିନ୍ନ ମହିଳା ଅନୁଷ୍ଠାନମାନ ଗଢି ତୋଳିବା' ମାଧ୍ୟମରେ ନିଜର ସମସ୍ୟାକୁ ଉତ୍‌ଥାପନ କରିବା । ମାଳତୀ ଚୌଧୁରୀ ରଚନାତ୍ମକ କାମ ସହ ସମାଜର ଢାଞ୍ଚା ପରିବର୍ତ୍ତନ କରିବାର ସଂକଳ୍ପ ନେଇ ସେ ବିଭିନ୍ନ ଆନ୍ଦୋଳନାତ୍ମକ କାର୍ଯ୍ୟରେ ସାମିଲ ହେଲେ । ଓଡିଶାର ଗଡଜାତ ଆନ୍ଦୋଳନ, କୃଷକ ଆନ୍ଦୋଳନ ଜରିଆରେ ଜମିଦାରମାନଙ୍କର ଶୋଷଣରୁ ସାଧାରଣ ଖଟିଖିଆ ମଣିଷଙ୍କୁ ମୁକ୍ତ କରିବାର ଉଦ୍ୟମ କଲେ ।

ତେବେ ସେ ଓଡିଶାର ଆଦିବାସୀ ଓ ଦଳିତ ବର୍ଗର ପିଲାଙ୍କୁ ଆଗକୁ ଆଣିବା ପାଇଁ ୧୯୪୬ ମସିହାରେ ଆଦିବାସୀ ପିଲାଙ୍କ ଶିକ୍ଷା ନିମନ୍ତେ ଅନୁଗୁଳଠାରେ ଆରମ୍ଭ କଲେ 'ବାଜିରାଉତ ଛାତ୍ରାବାସ' । ସେ ପୁଣି ୧୯୪୮ ମସିହାରେ ଗଢିଲେ 'ଉତ୍କଳ ନବଜୀବନ ମଣ୍ଡଳ' । ମହିଳା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନେଇ ଗଂଜାମ, କୋରାପୁଟର ଅଗମ୍ୟ ଅଞ୍ଚଳରେ ଆଦିବାସୀ, ଗରିବମାନଙ୍କ ପାଇଁ କାମ ଆରମ୍ଭ କଲେ । ତୁଳସୀମୁଣ୍ଡା, ଶ୍ରୀମତୀ ଧୋବେନ୍ଦ୍ରୀ ମହାପାତ୍ର. ମାଳତୀ ଦେବୀଙ୍କ ଭଳି ବହୁ ମହିଳା ଏହି କାମପାଇଁ ଆଗଭର ହୋଇ ଜୀବନର ଶେଷ ସମୟ ପର୍ଯ୍ୟନ୍ତ କାମ କରି ଚାଲିଲେ ।

୭୦ ଦଶକ ବିଶ୍ୱ ମହିଳା ଆନ୍ଦୋଳନ ଇତିହାସ ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୭୪ ମସିହାରେ ମହିଳାମାନଙ୍କର ସ୍ଥିତିକୁ ଅନୁଧ୍ୟାନ କରିବା ନିମନ୍ତେ ଭାରତରେ ମହିଳାଙ୍କ ସ୍ଥିତି ଉପରେ ଏକ ଅଧ୍ୟୟନ କରାଯାଇ ଏକ ରିପୋର୍ଟ ସରକାରଙ୍କ ତରଫରୁ ଉପସ୍ଥାପନା କରାଯାଇଥିଲା । ଏହି ରିପୋର୍ଟ ଭାରତରେ ମହିଳାଙ୍କର ଦୟନୀୟ ସ୍ଥିତିକୁ ପ୍ରଥମଥର ପାଇଁ ସରକାରୀ ଭାବରେ ଉପସ୍ଥାପନ କଲା । ଏଥିରେ ବର୍ଦ୍ଧିତ ମାତୃ ମୃତ୍ୟୁହାର, ଆର୍ଥିକ କ୍ଷେତ୍ରରେ ଅସମାନତା, ସମାଜର ଥିବା ଲିଙ୍ଗଗତ ବିଭେଦ ବିଷୟରେ ଚର୍ଚ୍ଚା କରିଥିଲା । କିନ୍ତୁ ଏ ରିପୋର୍ଟ ମହିଳାଙ୍କ ଉପରେ ହେଉଥିବା ହିଂସା ବିଷୟରେ ନୀରବ ଥିଲା, କିନ୍ତୁ ସରକାର ଆଇନ ସ୍ତରରେ ପରିବର୍ତ୍ତନ ଆଣିଲେ । ୧୯୭୬ ମସିହାରେ ମହିଳାମାନଙ୍କୁ ପୁରୁଷମାନଙ୍କ ସହିତ (ସମାନ କାମ ପାଇଁ )ସମାନ ମଜୁରି ଦେବା ପାଇଁ ଏକ ବିଧେୟକ ପ୍ରଣୟନ କରାଗଲା । ମହିଳାମାନଙ୍କର ଆର୍ଥିକ ଭାଗୀଦାରୀ ବଢାଇବା ପାଇଁ ବିଶେଷ ସୁବିଧା ସୁଯୋଗମାନ ଯୋଗାଇ ଦିଆଗଲା ।

୧୯୭୫କୁ ଜାତିସଂଘ ଆନ୍ତର୍ଜାତିକ ମହିଳା ବର୍ଷ ବୋଲି ଘୋଷଣା କଲା ଏବଂ ଏହି ବର୍ଷ ପ୍ରଥମ ଥର ପାଇଁ ବିଶ୍ୱମହିଳା ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ସମୟରେ ଓଡିଶାରେ ଦୁଇଟି ପ୍ରମୁଖ ଅନୁଷ୍ଠାନ ମହିଳା ଆନ୍ଦୋଳନକୁ ଆଗେଇ ନେବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ୧୯୭୦ ଦଶକରେ ନ୍ୟାସ୍‌ନାଲ୍ ଫେଡେରେସନ୍ ଅଫ

୍ଇଣ୍ଡିଆନ ୱିମେନ୍‌ର ଓଡିଶା ଶାଖା ହିସାବରେ 'ଉତ୍କଳ ମହିଳା ସମିତି' ଡକ୍ଟର ନିରୁପମା ରଥ, ନିରଦପ୍ରଭା ପଟ୍ଟନାୟକ, ସାବିତ୍ରୀ ମିଶ୍ର, ପ୍ରଭାରାଣୀ ଆଚାର୍ଯ୍ୟ ପ୍ରମୁଖଙ୍କ ନେତୃତ୍ୱରେ ଗଢିଉଠିଲା । ଏହି ସମୟରେ ମଧ୍ୟ କିଛି ଉଚ୍ଚଶିକ୍ଷିତା ମହିଳାଙ୍କ ପ୍ରଚେଷ୍ଟାରେ 'ନାରୀ ସେବାସଂଘ' ଗଠନ କରାଗଲା । 'ନାରୀ ସେବାସଂଘ'ର ଶାଖାମାନ ବିଭିନ୍ନ ସହରରେ ଗଢାହେଲା । ନାରୀ ସେବା ସଂଘ ଜରିଆରେ ସହରର ମହିଳାମାନଙ୍କୁ ବିଭିନ୍ନ ଅର୍ଥନୈତିକ ତାଲିମ ଶିକ୍ଷାତାଲିମ ପ୍ରଭୃତି ଦିଆଗଲା ।

୧୯୭୦ ଦଶକ ଓଡିଶା ମହିଳା ଆନ୍ଦୋଳନ କ୍ଷେତ୍ରରେ ଆଉ ଏକ ବିଶେଷ କାରଣ ପାଇଁ ଉଲ୍ଲେଖନୀୟ । କିନ୍ତୁ ଏହି ସମୟରେ ଆଗକୁ ଆସିଲେ ତୁଳସୀମୁଣ୍ଡା, ଶୈଳ ବେହେରା, ବିଜୟଲକ୍ଷ୍ମୀ ସାହୁ, ଚନ୍ଦ୍ରିକା ମହାପାତ୍ର, ପ୍ରମିଳା ସ୍ୱାଇଁ, ଲତିକା ସିଂ, କାଦମ୍ବିନୀ ଭୂୟାଁ ପ୍ରଭୃତି ମହିଳା ଅନ୍ଦୋଳନକୁ ଆଗକୁ ବଢାଇବରେ ସାହାଯ୍ୟ କଲେ ।

### ଆଦିବାସୀ ମହିଳା ସମ୍ମିଳନୀ

ଓଡିଶାରେ ପ୍ରଥମ କରି ୧୯୯୩ ମସିହା ମାର୍ଚ୍ଚ ମାସରେ କଳାହାଣ୍ଡିର ବିଶ୍ୱନାଥପୁରଠାରେ ହୋଇଥିବା ଏହି ସମାବେଶରେ ଓଡିଶାର ୧୧ଟି ଜିଲ୍ଲାର କାମ କରୁଥିବା ୨୪ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମୀ ଭଉଣୀ ତଥା ସେମାନେ କାମ କରୁଥିବା ବିଭିନ୍ନ ଅଚଂଳର ଆଦିବାସୀ ମା' ଭଉଣୀ ଯୋଗ ଦେଇଥିଲେ । ଫାର କାର୍ଯ୍ୟାଳୟ ବିଶ୍ୱନାଥପୁର ପରି ଛୋଟ ସ୍ଥାନଟି ୪୧୫ ଜଣ ପ୍ରତିନିଧିଙ୍କ ଆଗ୍ରହ, ଉଦ୍ଦୀପନା ଓ ସହଯୋଗରେ ଉତ୍ସବ ମୁଖରିତ ହୋଇଉଠିଥିଲା । ପ୍ରଥମ ଥର ପାଇଁ ଓଡିଶାର ବିଭିନ୍ନ ପ୍ରାନ୍ତରୁ ନିଜ ଅଧିକାର ପାଇଁ ସଂଗ୍ରାମରତ ଥିବା ଆଦିବାସୀ ମହିଳା ତଥା ସେମାନଙ୍କୁ ସହଯୋଗ କରୁଥିବା ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନର ମହିଳା ସଂଗଠିକାମାନଙ୍କ ପାଇଁ ଏହି ସମ୍ମିଳନୀ ଅତ୍ୟନ୍ତ ପ୍ରେରଣାଦାୟକ ହୋଇଥିବା ଲକ୍ଷ୍ୟ କରାଯାଇଥିଲା ।

ସମ୍ମିଳନୀର ଉଦ୍ଦେଶ୍ୟ ଥିଲା-ବିଭିନ୍ନ ଅଂଚଳରେ ଭିନ୍ନ ଭିନ୍ନ ସମସ୍ୟାକୁ ନେଇ କାମ କରୁଥିବା ଆଦିବାସୀ ମହିଳାମାନଙ୍କ ଏକତ୍ରିକରଣ ଓ ଭାବ ବିନିମୟ ଜରିଆରେ ମହିଳାମାନଙ୍କ ମଧ୍ୟରେ ପ୍ରେରଣା ଓ ଆତ୍ମ ବିଶ୍ୱାସ ଜାଗ୍ରତ କରିବା । ସାମୂହିକ ସମସ୍ୟା ଚିହ୍ନଟ ଓ ଆତ୍ମ ବିଶ୍ୱାସ ଜାଗ୍ରତ କରିବ । ସରକାରୀ ସ୍ତରରେ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଚାପଗୋଷ୍ଠି ସୃଷ୍ଟି କରିବା ।

ବିଶ୍ୱନାଥପୁରର ବିଭିନ୍ନ ସ୍ଥାନରେ ୩ ଦିନ ଧରିଏହି କାର୍ଯ୍ୟକ୍ରମରେ ଆଦିବାସୀ ମହିଳାମାନେ ତାଙ୍କର ବିଭିନ୍ନ ସମସ୍ୟା ଆଲେଚନା କରିଥିଲେ । ମଦଦ୍ୱାରା ମହିଳାମାନେ କିପରି ଶୋଷିତ ହେଉଛନ୍ତି ଓ ତା ପାଇଁ ପ୍ରତିକାର କଣ ?, ଜଂଗଲ ଓ ପରିବେଶ ନଷ୍ଟ ଦ୍ୱାରା ମହିଳାମାନଙ୍କ ଦୁରାବସ୍ଥା ଓ ପ୍ରତିକାର କଣ ? ସର୍ବନିମ୍ନ ମଜୁର ସମସ୍ୟା ଓ ମହିଳାଙ୍କ ପାଇଁ ଥିବା ତାରତମ୍ୟ ମହିଳାମାନଙ୍କ ଉପରେ ହେଉଥିବା ଶୋଷଣ । ଭୁମି, ଜଳ ଓ ଜଂଗଲର ସମସ୍ୟାା, ବିଭିନ୍ନ ସରକାରୀ କାମ ଓ ମହିଳାଙ୍କ ଶୋଷଣ, ଦାରିଦ୍ର୍ୟତା, ଜଂଗଲଜାତ ଦ୍ରବ୍ୟ ଓ ତା' ଦ୍ୱାରା ମହିଳାମାନେ କିପରି ଲାଭ ପାଇବେ ।

ଶ୍ରୀମତୀ ସୁମନି ଝୋଡିଆ ବିଭିନ୍ନ ସ୍ତରରେ ମହିଳାମାନେ କିପରି ଶୋଷିତ ହେଉଛନ୍ତି, ମହିଳାମାନଙ୍କ ସ୍ଥିତି ଓ କର୍ତ୍ତବ୍ୟ ଉପରେ ସୁଚନା ଦେଇ ଅନ୍ୟାୟ ଓ ଶୋଷଣ ବିରୁଦ୍ଧରେ ଲଢିବା ପାଇଁ ସମସ୍ତ ମା' ଭଉଣୀମାନଙ୍କୁ ଆହ୍ୱାନ ଜଣାଇଥିଲେ । ସମ୍ମିଳନୀକୁ ଗନ୍ଧମାର୍ଦ୍ଦନ ସୁରକ୍ଷା ପରିଷଦର ଶ୍ରୀମତୀ ଲାଲ ବିଭାର ଆନୁଷ୍ଠାନିକ ଭାବରେ ଉଦ୍‌ଘାଟନ କରି କହିଲେ ପରିବେଶ ହିଁ ଜୀବନ । ପରିବେଶ ସୁରକ୍ଷା ପାଇଁ ମା' ଭଉଣୀମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଭୁଲିଯିବା ଉଚିତ୍ ନୁହେଁ । ଆନ୍ତଜାତିକ ମହିଳା ଦିବସ ମାର୍ଚ୍ଚ ୮ ତାରିଖରେ ଆରମ୍ଭ ହୋଇଁ ୩ ଦିନ ଚାଲିଲା ପରେ ମହିଳାମାନେ ମୁଖ୍ୟମନ୍ତ୍ରୀଙ୍କୁ ୧୦ଦଫା ସମ୍ବଳିତ ଦାବି ପତ୍ର ପ୍ରଦାନ କରିଥିଲେ । ୧-ଡଂଗର ପଟ୍ଟାରେ ମହିଳାମାନଙ୍କର ଅଧିକାର, ୨-ସମ୍ପତ୍ତିରେ ମହିଳାମାନଙ୍କର ଅଧିକାର, ୩ ନିମ୍ନତମ ମଜୁରି ଆଇନ୍ କାର୍ଯ୍ୟକାରୀତା, ୪-ମଦ ଲାଇସେନ୍‌ସ ରଦ୍ଦ ଓ ବେଆଇନ୍ ମଦ ରନ୍ଧା ବନ୍ଦ, ୫-ଜଂଗଲଜାତ ଦ୍ରବ୍ୟ କିଣାବିକାରେ ଏକଚାଟିଆ

ଲାଇସେନ୍‌ସ ରଦ୍ଦ ଓ ଉପଯୁକ୍ତ ବଜାର ବ୍ୟବସ୍ଥା, ୬-ଆଦିବାସୀମାନଙ୍କ ଉନ୍ନତି ଓ ପରିବେଶ ସୁରକ୍ଷାରେ ସ୍ଥାନୀୟ ଆଦିବାସୀମାନଙ୍କ ଭାଗୀଦାର, ୭-ଆବାଦ ଯୋଗ୍ୟ ଅନାବାଦୀ ଜମିର ସୁଷମ ବଂଟନ, ୮-ମହିଳାମାନଙ୍କୁ ଆତ୍ମ ନିଯୁକ୍ତିର ସୁଯୋଗ, ୯-ସ୍କୁଲ ପ୍ରବେଶିକା ଖାତାରେ ପିତାମାତାଙ୍କ ନାମ ରହିବା, ୧୦- ଆଦିବାସୀ ମହିଳା ବିକାଶ ଯୋଜନାରେ ୧୦ ଦଫା କାର୍ଯ୍ୟକ୍ରମ ଭାବରେ ନିଆଯାଉ । ଏହି ଦାବୀପତ୍ର ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଂଚିବାର ୧ ମାସ ମଧ୍ୟରେ ଏକ ୨୬ ଜଣିଆ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀଙ୍କ ଆହ୍ୱାନ କ୍ରମେ ତାଙ୍କୁ ଭେଟି ଦୀର୍ଘ ସମୟ ଧରି ଆଲୋଚନା ପରେ ଅଧୀକାଂଶ ଦାବୀ ସରକାର ବିଚାର କରିବାର ପ୍ରତି ଶୃତି ଦେଇଥିଲେ କେବଳ ମଦ ବନ୍ଦକୁ ଛାଡି । ଏ କାମ ମହିଳାମାନେ କରିପାରିବେ ବୋଲି ସେ କହିଥିଲେ ଏବଂ ୧୦ ଜଣ ମହିଳାଙ୍କୁ ଆଦିବାସୀ ପରାମର୍ଶଦାତା କମିଟିରେ ସଦସ୍ୟା ଭାବରେ ରଖାଗଲା । ମହିଳାଙ୍କୁ ମଦ ବନ୍ଦ କରିବାକୁ ପୋଲିସ କ୍ଷମତା, ଜମିବଣ୍ଟନ ସମୟରେ ପୁରୁଷ ମହିଳାଙ୍କ ନା ମହିବା, ୯ଟି ଜିଲ୍ଲାରୁ ଦେଶିମଦ ବନ୍ଦ କରିବା ସବୁ ଦାବି ପୂରଣ ହୋଇଥିଲା । ଓଡିଶାର ୫ଟି ସ୍ଥାନରେ ଆଦିବାସୀ ମହିଳା ସମ୍ମିଳନୀ କରାଯାଇଛି ।

**ସାଧାରଣ ମହିଳାଙ୍କର ଜୀବନ ଜୀବିକା ପାଇଁ ଅନ୍ଦୋଳନ-**

ଓଡିଶା ଏକ କୃଷି ପ୍ରଧାନ ରାଜ୍ୟ ଏବଂ ଶତକଡା ୭୦ ଭାଗରୁ ଅଧିକ ଲୋକ ଚାଷ ଉପରେ ନିର୍ଭର କରି ଚଳନ୍ତି ଏବଂ ସେମାନେ କ୍ଷୁଦ୍ର ଓ ନାମମାତ୍ର ଚାଷୀ । ୮୦ ରୁ୮୫ ଶତକଡା ଆଦିବାସୀମାନେ ଜଙ୍ଗଲ ଉପରେ ନିର୍ଭର କରି ଚଳନ୍ତି । କିନ୍ତୁ ଆମେ ଯଦି ଦେଖିବା ସବୁପ୍ରକାର ଖଣିପ୍ରକଳ୍ପ ଓ ବଡ଼ବଡ଼ ଯୋଜନା ସେହି ଅଂଚଳରେ ହୋଇଛି । ଯେଉଁଠିକି ଆଦିବାସୀମାନେ ତାଙ୍କର ଭିଟାମାଟି ଓ ଜୀବନ ଜିବିକା ହରାଇ ବସୁଛନ୍ତି । ତାଛଡା ବହୁ ଅଂଚଳରେ, ଅନ୍ୟାନ୍ୟ ବଡବଡ ଯୋଜନା ସରକାର ବିକାଶ ନାମରେ କରିବାକୁ ଯାଇ ଲୋକଙ୍କର ଜମି ଅଧିଗ୍ରହଣ କରିବା ଫଳରେ ସାଧାରଣ ଲୋକେ ତାଙ୍କର ଜୀବନ ଜିବୀକା ହରାଇ ବସୁଛନ୍ତି ଏବଂ ଆରମ୍ଭ ହେଉଛି ଜୀବନ ମରଣ ସଂଗ୍ରାମ ଏବଂ ଏହି ସବୁ ସଂଗ୍ରାମର ଆଗଧାଡିରେ ରହିଛନ୍ତି ମହିଳାମାନେ । ଯେତେ ସବୁ ବିକାଶ ଯୋଜନା କାର୍ଯ୍ୟକାରୀ କରାଯାଇଛି ସେଥିରେ ଲୋକଙ୍କର ବିସ୍ଥାପନ ନହେବା ପାଇଁ ସ୍ଥାନାନ୍ତରଣ ନ ହେବା ପାଇଁ ଏବଂ ନିଜ ଗାଁଗଣ୍ଡାରେ ରହି ଜୀବନ ଜୀବିକା ସୁରକ୍ଷା ପାଇବା ପାଇଁ ବ୍ୟବସ୍ଥା ନାହିଁ ।

ଗାଁ ଗହଳର ସାଧାରଣ ମହିଳାମାନେ ଅଭିନବ ଉପାୟରେ ଆନ୍ଦୋଳନ ଜାରି ରଖିଛନ୍ତି ସେଥିପାଇଁ । ଆମେ ଏଭଳି ମହିଳାମାନଙ୍କୁ ବାଲିଆପାଳର କ୍ଷେପଣାସ୍ତ୍ର ଘାଟି ବିରୁଦ୍ଧରେ ଲଢିବାର, ଗନ୍ଧମାର୍ଦ୍ଦନ ବଂଚାଓ ଆନ୍ଦୋଳନ ସମୟରେ, ଚିଲିକାରେ ପାଣି ପାଇଁ ସଂଗ୍ରାମ କରିବା, କାସିପୁରରେ ବକ୍ସାଇଟ୍ ପାଇଁ, ଲାଂଜିଗଡରେ ବକ୍ସାଇଟ ପାଇଁ, ରାଇଘର ଓ ନାରାୟଣ ପାଟଣାରେ ଜମି ପାଇଁ ଓ ପୋସ୍କୋ ପ୍ରତିରୋଧ ପାଇଁ ସବୁଠି ମହିଳାମାନେ ନିଜର ହକ୍ ତଥା ସାମୂହିକ ସ୍ୱାର୍ଥ ପାଇଁ ବା ନିଜର ଜୀବନ ଜିବିକା ବଂଚାଇବା ପାଇଁ ଲଢିଛନ୍ତି । ପ୍ରାକୃତିକ ସମ୍ପଦକୁ ବଂଚାଇବା ପାଇଁ ବହୁ ମହିଳା ବିଭିନ୍ନ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି । ଶ୍ରୀମତୀ ଶାନ୍ତି ଦାସ ଓ ମନୋରମା ଖଟୁଆ ପୋସ୍କୋ ପ୍ରକଳ୍ପ ବିରୋଧରେ ଜନମତ ସଂଗ୍ରହ କରିବାକୁ ଦିନରାତି ଏକ କରିଦେଲେ । ତାଙ୍କରି ଉଦ୍ୟମରେ କମ୍ପାନିକୁ ବିରୋଧ କରି ଗଢିଉଠିଥିଲା ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତି । ୧୯୮୪ରୁ ୧୯୯୧ ପର୍ଯ୍ୟନ୍ତ ବାଲିଆପାଳଠାରେ ହେବାକୁଥିବା କ୍ଷେପଣାସ୍ତ୍ରଘାଟୀ ବିରୋଧୀ ଆନ୍ଦୋଳନର କର୍ଣ୍ଣଧାର ସାଜିଥିଲେ । ଘାଟିଗଲେ ମାଟି ଯିବ । ୧୩୨ ଖଣ୍ଡଗ୍ରାମର ହଜାର ହଜାର ପରିବାର ଜୀବନ ଜୀବିକାହରାଇ ବୋବିସ୍ତୁର୍ଣ୍ଣ ଶସ୍ୟକ୍ଷେତ୍ର ଓ ଜନବସତି ଉଜୁଡି ଯିବ । ସେଥିପାଇଁ ଗଣ ଆନ୍ଦୋଳନର ନାରୀ ସାମ୍ମୁଖ୍ୟର ନେତୃତ୍ୱ ନେଲେ ଶାରଦା ଦେବୀ । ତାଙ୍କ ସହ ସର୍ବ ଶ୍ରୀମତୀ ସୁମତିପଣ୍ଡିତ, ବାସନ୍ତି ନନ୍ଦ, ଗୋରୀ ବହେରା, ଭବାନୀ ଭୂୟାଁ, ବାସନ୍ତି ବିଶ୍ୱାଳ ଓ ଜୟନ୍ତି ପଣ୍ଡା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । କଳିଙ୍ଗ

ନଗର – ସୀନିସଏ ଯାଜପରୁ ଗୋପାଳଘାଟି ଗା'ର ସରପଂଚ ରୂପେ ନିର୍ବାଚିତ ହୋଇଥିଲେ । କଳିଙ୍ଗ ନଗର ଅଂଚଳରେ ଟାଟା କମ୍ପାନୀକୁ ବିରୋଧ କରି ଆଦିବାସୀଙ୍କ ଦ୍ୱାରା ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେଥିରେ ପ୍ରମୂଖ ଭୂମିକା ନିଭାଇଥିଲେ ସିନିସଏ।ଲାଂଜିଗଡରେ ସୁଶ୍ରୀ ରାଜକୁମାରି ମାଝୀ ଲାଂଜିଗଡର କେନ୍ଦୁବରଡି ଗ୍ରାମରେ ଜନ୍ମ ହୋଇଥିଲେ । କେନ୍ଦୁବରଡି ଗ୍ରାମର କୁମୁଟି ମାଝି ୨୫ ବର୍ଷର୍ର ଝିଅ ରାଜକୁମାରୀଙ୍କ ଛୋଟବେଳୁ ଆନ୍ଦୋଳନ କାମରେ ପ୍ରେରଣା ଯୋଗାଇ ଆସୁଛନ୍ତି । କଳାହାଣ୍ଡି ଜିଲ୍ଲାର ଲାଂଜିଗଡଠାରେ ବେଦାନ୍ତ କମ୍ପାନୀ କାରଖାନା ପ୍ରତିଷ୍ଠା ହେଲେ ଲୋକେ ଜୀବନ ଜୀବୀକା ହରାଇବା ଭୟରେ କମ୍ପାନୀ ବିରୋଧରେ ଆନ୍ଦୋଳନ ଚଳାଇ ଆସୁଛନ୍ତି ।

**ଚିଲିକା ବଂଚାଓ –ପ୍ରମିଳା । ବେହେରା ଚିଲିକା ବଂଚାଅ ଆନ୍ଦୋଳନ –** ନବେ ଦଶକରେ ଆଦ୍ୟଭାଗର ସମନ୍ୱୀତ ଚିଙ୍ଗୁଡିଚାଷ ପ୍ରକଳ୍ପ ଟାଟାଷ୍ଟିଲ୍ କମ୍ପାନି ସହିତ ମିଳିତହୋଇ ପ୍ରଚୁର ଚିଙ୍ଗୁଡିଚାଷ କରି ବିଦେଶକୁ ରପ୍ତାନି କରିବା ପାଇଁ ସରକାରଙ୍କ ଦୃଢ ନିଷ୍ପତ୍ତିକୁ ସେଠାକାର ମତ୍ସ୍ୟଜୀବୀମାନେ ତୀବ୍ର ବିରୋଧ କରିଥିଲେ ।

**ଗୋପାଳପୁରୁ –ଏନ. ଭାନୁମତୀ ରେଡିଙ୍କ ୧୯୯୫–**୯୬ ମସିହାରେ ଟାଟା ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ହେଉଥିବା ଚାଷୀଙ୍କ ସମସ୍ୟାକୁ ନେଇ ଟାଟା ବିରୋଧି ଆନ୍ଦୋଳନରେ ଯୋଗ ଦେଇଥିଲେ ।

**ମହିଳା ଅଧିକାର ପାଇଁ ବିଭିନ୍ନ ପଦକ୍ଷେପ**

(୧–) ୧୯୮୪ ମସିହାରେ ପ୍ରଥମକରି ଓଡିଶାରେ ଅକ୍ସଫାମ ତରଫରୁ ସତ୍ୟଭାମାପୁର କସ୍ତୁରବା ଗାନ୍ଧି ସ୍ମାରକ ନିଧିଠାରେ ଏକ ମହିଳା ଶିବିରର ଆୟୋଜନ କରାଯାଇଥିଲା । ଏହି ଶିବିରରେ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମୀ,ପରିଚାଳନା ସମିତିର ସଦସ୍ୟାମାନେ ଯୋଗଦେଇଥିଲେ । ଅନୁଗୁଳ ନବଜୀବନ ମଣ୍ଡଳର କର୍ମୀ, କସ୍ତୁରବା ଅନୁଷ୍ଠାନର କର୍ମୀ ଓ ସର୍ବୋଦୟ କର୍ମୀ ମଧ୍ୟ ଯୋଗଦେଇଥିଲେ । ମହିଳାମାନେ ନିଜ ନିଜର ସମସ୍ୟା ଏଭଳି ଖୋଲାଖୋଲି ଭାବରେ ଆଲେଚନା କରିବାର ବୋଧହୁଏ ପ୍ରଥମ ସୁଯୋଗ ପାଇଲେ ।

(୨–)ଓଡିଶାରେ ପ୍ରଥମ କରି ପ୍ରଫେସର ଆଶାହଂସଙ୍କ ଉଦ୍ୟମରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ମହିଳାମାନଙ୍କ ବିଷୟରେ ସ୍ୱତନ୍ତ୍ର ଭାବରେ ଅଧୟନ ପାଇଁ ମହିଳା ଅନୁଧ୍ୟାନ କେନ୍ଦ୍ର ଉନ୍ମୋଚନ କରାଗଲା । ମହିଳାମାନଙ୍କ ସ୍ଥିତି ଉପରେ ଆଲୋଚନା, ଅଧ୍ୟୟନ, ତଥ୍ୟ ସଂଗ୍ରହ ଆଦି କାର୍ଯ୍ୟ ଆରମ୍ଭ କରାଗଲା । ମହିଳା ବିକାଶ ଉପରେ ପାଠ୍ୟକ୍ରମ ଆରମ୍ଭ ହେଲା ଓ ବହୁ ଝିଅ ଓ ପୁଅ ବର୍ତମାନ ପି ଏଚ ଡି କରୁଛନ୍ତି ଓ ମହିଳା ବିକାଶ କ୍ଷେତ୍ରରେ ଗବେଷଣା କରୁଛନ୍ତି ।

(୩–) ୭୦ ଦଶକ ପରଠାରୁ ଓଡିଶାର ବହୁ ନାରୀନେତ୍ରୀ ଯଥା ସର୍ବ ଶ୍ରୀମତୀ ଶୈଳ ବେହେରା, ଚନ୍ଦ୍ରିକା ମହାପାତ୍ର ମହିଳାଙ୍କ ଉପରେ ହେଉଥିବା ହିଂସା ବିରୁଦ୍ଧରେ ବରାବର ଅଣ୍ଟା ଭିଡିଆସିଛନ୍ତି ।

(୪–) ଆଉ ଏକ ଉଦ୍ୟମ ୧୯୮୯ ମସିହାରେ ଆରମ୍ଭ ହେଲା କଳାହଣ୍ଡିର ବିଶ୍ୱନାଥପୁରଠାରେ ମହିଳା ବିକାଶ ପାଇଁ ମହିଳାକର୍ମୀଙ୍କୁ ଏକଜୁଟ କରିବାପାଇଁ । ଅବିଭକ୍ତ ୧୩ଟି ଜିଲ୍ଲାର ବିଭିନ୍ନ ୩୦ଟି ଅନୁଷ୍ଠାନର ୬୫ ଜଣ ପ୍ରତିନିଧି ଏହି ୩ ଦିନିଆ କର୍ମଶାଳାରେ ଯୋଗଦେଲେ । ଜୁଲାଇ ୯ରୁ ୧୧ ପର୍ଯ୍ୟନ୍ତ ଚାଲିଥିବା ଏହି ଶିବିର ପରିଚାଳନା ମୁଖ୍ୟତଃ ସେତେବେଳେ ସହେଲିରେ କାମ କରୁଥିବା ଶ୍ରୀମତୀ ରୁକ୍ମିଣୀ ରାଓ ନୋରାଡ ତରଫରୁ ଆସି ସହଯୋଗ କରୁଥିଲେ । (୫) ୭୦ରୁ ୯୦ ଦଶକ ମଧ୍ୟରେ ସର୍ବଭାରତୀୟ ସ୍ଥରରେ ଗାନ୍ଧିବାଦୀ ଅନୁଷ୍ଠାନମାନଙ୍କ ଦ୍ୱାରା ଶକ୍ତିଜାଗରଣ ସପ୍ତାହ ଦେଶ ବ୍ୟାପୀ ଆୟୋଜନ କରାଯାଇଥିଲା । ଏଥିରେ ଓଡିଶାର ଗାନ୍ଧିବାଦୀ ଅନୁଷ୍ଠାନମାନେ ନେତୃତ୍ୱ ନେଉଥିଲେ । ଦେଶବ୍ୟାପୀ ଏହି ଆନ୍ଦେଳନ ଯାତ୍ରା ୭ ଦିନଧରି ଏକ ସମୟରେ ଅନୁଷ୍ଠିତ ହେଉଥିଲା ସାରା ଦେଶରେ ଓ ଓଡ଼ିଶାରେ ମଧ୍ୟ । ସ୍କୁଲ କଲେଜରେ ବିଭିନ୍ନ କାର୍ଯ୍ୟକ୍ରମ. ପଦଯାତ୍ରା, ସାଧାରଣ ସଭା ଆଦି କରାଯାଇ ମହିଳାମାନଙ୍କ ଅଧିକାର, ମହିଳାଙ୍କ

ସମସ୍ୟା, ମହିଳା ଜାଗରଣର ଆବଶ୍ୟକତା ଉପରେ ଆଲୋଚନା କରାଯାଇଥିଲା ।

(୬)ପଶ୍ଚିମ ଓଡିଶା ମହିଳା ମହାସଭା

ପଶ୍ଚିମ ଓଡିଶା, ଓଡ଼ିଶାର ସମସ୍ତ ଅବହେଳିତ ଅଞ୍ଚଳକୁ ବୁଝାଇଥାଏ ଯଥା କଳାହାଣ୍ଡି, ନୁଆଁପଡା, ବଲାଙ୍ଗୀର, ସୋନପୁର, ବୌଦ୍ଧ, ବରଗଡ, ସମ୍ବଲପୁର, ଝାରସୁଗୁଡା, ଦେଓଗଡ ଓ ସୁନ୍ଦରଗଡ ଜିଲ୍ଲାକୁ ପଶ୍ଚିମ ଓଡିଶା କୁହାଯାଇଛି । ଓଡିଶାର ରାଜନୀତିକ- ଅର୍ଥନୀତିକ ଦୃଷ୍ଟିରୁ ପଶ୍ଚିମ ଓଡିଶା ଯେ ଅବହେଳିତ ଏଥିରେ ସନ୍ଦେହ ନାହିଁ ଏହା ପଶ୍ଚିମ ଓଡିଶାର ଆଦିବାସୀ ତଥା ପଛୁଆବର୍ଗର ମହିଳାମାନଙ୍କର ଆଉ ଏକ ଆନ୍ଦୋଳନ ଯାହା ୨୦୦୪ ମସିହାରୁ ଏକ ତିନିଦିନିଆ ସମାବେଶରୁ ଆରମ୍ଭ ହୋଇ ପଶ୍ଚିମ ଓଡିଶାର ନାରୀ ଆନ୍ଦୋଳନରେ ପରିଣତ ହୋଇଥିଲା । ୨୦୧୩ ମସିହା ପର୍ଯ୍ୟନ୍ତ ଓଡିଶାର ବିଭିନ୍ନ ଜିଲ୍ଲାରେ ଆୟୋଜିତ ହେଉଥିଲା । ୫୦୦ରୁ ୨୦୦୦ ପର୍ଯ୍ୟନ୍ତ ମହିଳା ପ୍ରତିବର୍ଷ ଏହି ମହାସଭାରେ ଯୋଗ ଦେଇ ନିଜ ଅଂଚଳର ମହିଳା ସମସ୍ୟାମାନେ ଚିହ୍ନଟକରି ସମାଧାନର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲେ । ଏହି ସମାବେଶରେ ମୁଖ୍ୟତଃ ପଶ୍ଚିମ ଓଡିଶାର ମହିଳାମାନେ ସମବେତ ହୋଇଥାନ୍ତି । ।

(୭) ମହିଳାଙ୍କ ପାଇଁ ଟାସ୍କଫୋର୍ସ- ମହିଳାମାନଙ୍କ ସମସ୍ୟାକୁ ନେଇ କାମକରିବା, ସାମାଜିକ ସଚେତନତା ଆଣିବା ଓ ମହିଳା ହିଂସା କେଶ୍‌ଗୁଡିକର ସମାଧାନ ପାଇଁ ଗଠିତ ଟାସ୍କଫୋର୍ସ ବହୁଦିନ ଧରି କାମ କରୁଥିଲା ।

(୮) ମହିଳାକର୍ମୀମାନଙ୍କ ସମାଧାନ କ୍ଷେତ୍ରରେ ନାରୀଶକ୍ତି ନାମକ ଏକ କର୍ମୀମାନଙ୍କର ସଂଗଠନ ଦୀର୍ଘ ୨୫ ବର୍ଷ ଧରି ବୀଭିନ୍ନ ସଚେତନତା କାର୍ଯ୍ୟ, ତାଲିମ ଶିବିର ତଥା ସମାବେଶର ଆୟୋଜନ କରି ମହିଳା ସମାସ୍ୟାକୁ ଲୋକଲୋଚନକୁ ଆଣି ସମସ୍ୟାଗୁଡ଼ିକୁ ସମାଧାନ କରୁଥିଲା ।

(୯)ଚାଲାଣ ରୋକିବାରେ ଯାଜ୍ଞସେନୀ ନାମକ ଏକ ୧୫ ବର୍ଷ ଧରି ଗୋଷ୍ଠୀ ସକ୍ରିୟ ଥାଇ ସରକାରଙ୍କ ସହ ମିଳିତ ଭାବରେ ବହୁ କାର୍ଯ୍ୟକ୍ରମ ମାଧ୍ୟମରେ ମହିଳାମାନଙ୍କୁ ସୁରକ୍ଷିତ ଓ ସମ୍ମାନଜନକ କର୍ମସ୍ଥଳ ପାଇଁ ଅଭିଯାନ ଚଳାଇ ଥିଲା ।

ବେଜିଂ ଚତୁର୍ଥ ବିଶ୍ୱମହିଳା ସମ୍ମିଳନୀ ଓ ମହିଳାମାନଙ୍କ ଭୂମିକା-

୭୦ ଦଶନ୍ଧିରୁ ୯୦ ପରେ  ପରେ ଏପରି ଏକ ପର୍ଯ୍ୟାୟ ଆରମ୍ଭ ହେଲା ଯେତେବେଳେ କି ବିଶ୍ୱର ପ୍ରତ୍ୟେକ ଅଂଚଳରେ ମହିଳାମାନଙ୍କ ଅଧିକାର ସୁରକ୍ଷା ଲାଗି ସମାବେଶ, ଆଲୋଚନାଚକ୍ର ଓ ସଚେତନ ମୂଳକ ଶିବିରମାନ ଆୟୋଜନ କରାଗଲା । ମହିଳାମାନଙ୍କ ଶିକ୍ଷା, ସଚେତନତା, କର୍ମନିଯୁକ୍ତି, ସାମାଜିକ ଓ ରାଜନୈତିକ ଅଧିକାର କ୍ଷେତ୍ରରେ ରହିଥିବା ସମସ୍ୟାକୁ ଖୋଜି ବାହାର କରିବାକୁ ଜାତିସଙ୍ଘଦ୍ୱାରା ୪ଟି ବିଶ୍ୱ ସମ୍ମିଳନୀ ଆୟୋଜନ କରାଯାଇଛି । ୧୯୭୫ ଜୁନ୍ ୧୯ରୁ ଜୁଲାଇ ୨ ପର୍ଯ୍ୟନ୍ତ ମେକ୍ସିକୋଠାରେ ପ୍ରଥମ ବିଶ୍ୱମହିଳା ସମ୍ମିଳନୀ ଆୟୋଜିତ ହୋଇଥିଲା । ୧୯୮୦ ମସିହା ଜୁଲାଇ ୧୪ରୁ ୩୧ପର୍ଯ୍ୟନ୍ତ କୋପେନ୍ ହେଗେନଠାରେ ଦ୍ୱିତୀୟ ବିଶ୍ୱ ମହିଳା ସମ୍ମିଳନୀ ଏବଂ ତୃତୀୟ ବିଶ୍ୱ ମହିଳା ସମିଳନୀ ନାଇରବିଠାରେ ୧୯୮୫ ମସିହା ଜୁଲାଇ ୧୫ରୁ ୨୬ ପର୍ଯ୍ୟନ୍ତ ଆୟୋଜନ କରାଯାଇଥିଲା ।

'ଚତୁର୍ଥ ବିଶ୍ୱମହିଳା ସମ୍ମିଳନୀ' ୧୮୯ଟି ରାଷ୍ଟ୍ରର ପ୍ରତିନିଧିମାନଙ୍କୁ ନେଇ ୧୯୯୫ ମସିହା ସେପ୍ଟେମ୍ବର ୪ ରୁ ୧୫ ତାରିଖ ପର୍ଯ୍ୟନ୍ତ ବେଇଜିଙ୍ଗ୍‌ଠାରେ ଅନୁଷ୍ଠିତ ହୋଇଥିଲା । ଅନ୍ୟାନ୍ୟ ବିଷୟ ସହ ବୈଜ୍ଞାନିକ, ବୈଷୟିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଆଗାମୀ ଶତାବ୍ଦୀର ଚାହିଦା ପୂରଣ କରିବା ପାଇଁ ମହିଳାମାନଙ୍କୁ ଉପଯୁକ୍ତ ଜ୍ଞାନ କୌଶଳ ଯୋଗାଇ ଦିଆଯିବାର ବ୍ୟବସ୍ଥା ଗ୍ରହଣ, ମହିଳାମାନଙ୍କୁ ଅଧିକ କ୍ଷମତା ପ୍ରଦାନ, ଲିଙ୍ଗଭିତ୍ତିକ ସମାନତା ସ୍ଥାପନ ତଥା ବିକାଶ ଓ ଶାନ୍ତି ପ୍ରତିଷ୍ଠା ଲାଗି ବିଶ୍ୱସ୍ତରରେ ଏକ ନୀତି ପ୍ରଣୟନ ବ୍ୟବସ୍ଥା କରିବାକୁ ଏହି ବିଶ୍ୱ ସମ୍ମିଳନୀରେ ସର୍ବସମ୍ମତି କ୍ରମେ ଗୃହୀତ 'ବେଇଜିଙ୍ଗ୍ ଘୋଷଣାନାମା ଓ କାର୍ଯ୍ୟପନ୍ଥାର ମଞ୍ଚ'ରେ ପ୍ରତ୍ୟେକ ସ୍ଥାନର

ସମସ୍ତ ମହିଳାଙ୍କ ପାଇଁ ସମାନତା, ବିକାଶ ଓ ଶାନ୍ତି ପ୍ରତିଷ୍ଠାର ଲକ୍ଷ୍ୟ ହାସଲ ପାଇଁ ଏକ ନୂତନ ଆନ୍ତର୍ଜାତିକ ସଂକଳ୍ପନାମା ପ୍ରକାଶ ପାଇଥିଲା ସାଧାରଣ ଗାଁ ଗହଳିର ମହିଳାମାନେ କିପରି ଭାବରେ ଭାଗନେଇ ପାରିବେ ତା'ପାଇଁ ବିଭିନ୍ନ ପ୍ରସ୍ତୁତି ଚାଲିଲା ସାରା ବିଶ୍ୱରେ । ଭାରତ ସହ ଓଡିଶାରେ ମଧ୍ୟ ବିଭିନ୍ନ ଅଂଚଳରେ ସଭା, ସମାବେଶ ଆଲେଚନାଚକ୍ର ୧୯୯୩ରୁ ବେଜିଂ ସମ୍ମିଳନୀ ପର୍ଯ୍ୟନ୍ତ ଚାଲିଲା । ଏହି ସଭା ସମ୍ମିଳନୀଗୁଡିକରେ ମହିଳାମାନଙ୍କ ସ୍ୱାକ୍ଷରତା ଓ ଶିକ୍ଷାର ବିକାଶ, ସାମାଜିକ ସୁବିଧା ସୁଯୋଗ ହାସଲ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ସମାନ ପ୍ରବେଶାଧିକାର, ମହିଳାମାନଙ୍କ ପାଇଁ କର୍ମନିଯୁକ୍ତିର ଅଧିକ ଅବସର ସୃଷ୍ଟି, ସମସ୍ତ ପ୍ରକାର ପାତର ଅନ୍ତର ନୀତିର ଦୂରୀକରଣ, ନୀତି ନିର୍ଦ୍ଧାରଣ ଓ ନିଷ୍ପତ୍ତି ଗ୍ରହଣ କ୍ଷେତ୍ରରେ ମହିଳାମାନଙ୍କୁ ସମାନୁପାତିକ ଅବସର ପ୍ରଦାନ, ପାରିବାରିକ, ସାମାଜିକ ଓ ରାଜନୈତିକ ଅଧିକାର କ୍ଷେତ୍ରରେ ମହିଳାମାନଙ୍କୁ ପୁରୁଷମାନଙ୍କ ସହ ସମାନତା ପ୍ରଦାନ, ଗଣମାଧ୍ୟମ ଗୁଡିକର ମହିଳା ବିରୋଧୀ ପ୍ରସାରଣ, ମହିଳାଙ୍କ ଉପରେ ବଢୁଥିବାର ହିଂସା ତା'ର ପ୍ରତିକାର, ଆଦିବାସୀ ଓ ମହିଳାମାନଙ୍କ ଜମି ଅଧିକାର ଉପରେ ଆଲୋଚନା କରାଯାଇ ବିଭିନ୍ନ ଦାବିଗୁଡିକ ଜାତୀୟ ଆନ୍ତର୍ଜାତୀୟ ସ୍ଥରରେ ପହଂଚିବା ପାଇଁ ବ୍ୟବସ୍ଥା ଗ୍ରହଣ କରାଗଲା । ଓଡିଶାରୁ ୫୦୦ରୁ ଅଧିକ ପ୍ରତିନିଧି ବେଜିଂରେ ଉପସ୍ଥିତ ରହି ଆଲୋଚନାମାନଙ୍କରେ ଭାଗ ନେଇଥିଲେ ।

**ଦୁଇ ହଜାର ମସିହାରେ ମହିଳାମାନଙ୍କର ବିଶ୍ୱବ୍ୟାପୀ ଯାତ୍ରା–**

ସାରା ବିଶ୍ୱରେ ମହିଳାମାନେ, ବଢୁଥିବା ହିଂସା ଓ ଦାରିଦ୍ର୍ୟ ବିରୋଧରେ ଐତିହାସିକ ବିଶ୍ୱବ୍ୟାପୀ ଯାତ୍ରା ଆରମ୍ଭ କଲେ । ଶାନ୍ତି ଓ ସମତା ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା ପାଇଁ ଏହି ଯାତ୍ରାରେ ୧୪୦ଟି ରାଷ୍ଟ୍ରର ଉର୍ଦ୍ଧ୍ୱ ମହିଳା ସଂଗଠନମାନଙ୍କର ମିଳିତ ଉଦ୍ୟମରେ ଆନ୍ତର୍ଜାତିକ ମହିଳା ଦିବସ ୮ ମାର୍ଚ୍ଚ, ୨୦୦୦ ଠାରୁ ଆରମ୍ଭ ହୋଇ ଆର୍ନ୍ତଜାତିକ ଦାରିଦ୍ର୍ୟ ବିଲୋପ ଦିବସ ୧୭ ଅକ୍ଟୋବର, ୨୦୦୦ ପର୍ଯ୍ୟନ୍ତ ବିଭିନ୍ନ ଜନଜାଗରଣ ମାଧ୍ୟମରେ ସାରା ବିଶ୍ୱରେ ବ୍ୟାପକ କରାଯାଇଥିଲା ।

ଦୀର୍ଘବର୍ଷ ଧରି ବିଭିନ୍ନ ସମୟରେ ସଂଘବଦ୍ଧ ଭାବରେ ମହିଳାମାନେ ସଂଗ୍ରାମ ଜାରି ରଖିବା ପରେ,୧୯୭୫ ମସିହାରେ ପ୍ରଥମ ଆନ୍ତଃରାଷ୍ଟ୍ରୀୟ ମହିଳା ସମ୍ମିଳନୀ ଅନୁଷ୍ଠିତ ହେବା ଦିନଠାରୁ ୧୯୯୫ ବେଜିଂ ସମ୍ମିଳନୀ ପର୍ଯ୍ୟନ୍ତ ମହିଳାମାନଙ୍କର ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ବୈଷମକୁ ବିଲୋପ କରିବା ପାଇଁ ଗ୍ରାମାଞ୍ଚଳଠାରୁ ଆରମ୍ଭ କରି ଆନ୍ତର୍ଜାତିକ ସ୍ତର ପର୍ଯ୍ୟନ୍ତ ସ୍ୱର-ଉତ୍ତୋଳନ କରି ଆସିଛନ୍ତି । ଏହାର ଫଳସ୍ୱରୂପ ମିଳିତ ଜାତିସଂଘର ପ୍ରଚେଷ୍ଟାରେ ମହିଳାମାନଙ୍କର ସ୍ୱାର୍ଥ ଓ ଅଧିକାର ସୁରକ୍ଷା ପାଇଁ ବିଭିନ୍ନ ଘୋଷଣାନାମା, କମିଶନ ଓ ସମ୍ମିଳନୀ କରାଯାଇଛି । ୧-ମହିଳାମାନଙ୍କର ଦାରିଦ୍ର୍ୟ ବିଲୋପ । ଧନୀ ଦରିଦ୍ର ଏବଂ ମହିଳା ପୁରୁଷ ମଧ୍ୟରେ ବିଶ୍ୱସମ୍ପତ୍ତିର ନ୍ୟାଯ୍ୟବଂଟନ । ଏହି ଯାତ୍ରାରେ ଅୟମାରମ୍ଭରେ ରାଜଧାନୀ ଭୁବନେଶ୍ୱରଠାରେ ମହିଳା ହିଂସା ଓ ଦାରିଦ୍ର୍ୟ ବିରୋଧରେ ବିଶାଳ ରାଲି ଓ ମହିଳା ସମାବେଶ କରାଯିବା ସହ ଏବଂ ଓଡିଶାର ମୁଖ୍ୟମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ସ୍ମାରକପତ୍ର ପ୍ରଦାନ କାରାଗଲା । ଓଡିଶାର ବହୁ ବୁଦ୍ଧିଜୀବୀ, ମହିଳା ଓ ମହିଳା ସଂଗଠନ, ଗଣ ସଂଗଠନ, ରାଜନୈତିକ ନେତୃବୃନ୍ଦ ଓ ସାଧାରଣ ନାଗରିକ ଉକ୍ତ କାର୍ଯ୍ୟକ୍ରମରେ ସହଯୋଗ ଦାନ କରିଥିଲେ ।

**ମଦମୁକ୍ତି ଅଭିଯାନ ଓ ନିଶା ନିବାରଣ**

ସ୍ୱାଧୀନତା ସଂଗ୍ରାମର ଘୋଷିତ ପ୍ରତିଶ୍ରୁତି ଥିଲା ନିଶାନିବାରଣ କରିବା । ନିଶା ମହିଳାଙ୍କ ଉପରେ ହେଉଥିବା ହିଂସାର ମୁଖ୍ୟକାରଣ ତଥା ଦାରିଦ୍ର୍ୟତା ବଢାଇବାର ସହାୟକ । ଏଥିପାଇଁ ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ ବିଭିନ୍ନ ସ୍ଥାନରେ ମଦ ଦୋକାନ ଆଗରେ ପିକେଟିଂ କରିବା, ମଦ ଓ ନିଶା ବନ୍ଦ କରିବା କାର୍ଯ୍ୟ କରାଯାଉ ଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ପରେ ରଚନାତ୍ମକ କାର୍ଯ୍ୟ ଆରମ୍ଭ ହେଲା ସେଗୁଡିକ ମଧ୍ୟରେ ନିଶାନିବାରଣ ଏକ ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ଓଡିଶାର ବିଭିନ୍ନ ଅଂଚଳରେ

ରମାଦେବୀ ତଥା ମାଳତୀ ଦେବୀଙ୍କ ନେତୃତ୍ୱରେ ଓଡିଶାର ବିଭିନ୍ନ ଦୁର୍ଗମ ଅଂଚଳରେ କସ୍ତୁରବା ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ ଓ ନବଜୀବନ ମଣ୍ଡଳର କେନ୍ଦ୍ରମାନ ଖୋଲାଗଲା । ସେମାନେ ମଦଜନିତ ହିଂସା, ଶୋଷଣ ଅନ୍ୟାୟ ଅତ୍ୟାଚାର ଦେଖିଲେ । କର୍ମୀମାନେ ରଚନାତ୍ମକ କାର୍ଯ୍ୟରେ ଲାଗିପଡିଲେ । ସେ ଭିତରେ ନିଶାନିବାରଣ ଥିଲା ଏକ ମୁଖ୍ୟକାର୍ଯ୍ୟ । ମହିଳାମାନଙ୍କୁ ଏକଜୁଟ କରି ଗାଁ ଗାଁରେ ମଦ ବନ୍ଦ କରିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା, ମଦ କୋଠି ଓ ଭାଟି ଭାଙ୍ଗିବା, ମଦ ଦୋକାନ ଆଗରେ ପିକେଟିଂ କରିବା ଆଦି କରାଯାଇ ମଦ ଓ ନିଶା କାରବାରକୁ ବନ୍ଦ କରାଯାଉଥିଲା । ଶ୍ରୀଯୁକ୍ତ ନବ ବାବୁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ୧୯୫୬ରେ ନିଶାନିବାରଣ ଆଇନ ତିଆରି ହେଲା କିନ୍ତୁ ଏ ଯାଏଁ ଏହାର କାର୍ଯ୍ୟକାରିତାର କୋଣସି ପଦକ୍ଷେପ ନିଆ ଯାଇନାହିଁ ।

୧୯୯୨ରେ କଟକ ମଦମୃତ୍ୟୁ ଘଟଣା ସାରା ଓଡିଶାକୁ ଦୋହଳାଇ ଦେଇଥିଲା । ୧୯୯୩ର ଅଦିବାସୀ ମହିଳା ସମ୍ମିଳନୀ ପରେପରେ ୧୦ ଜଣ ମହିଳା ଆଦିବାସୀ ପରାମର୍ଶଦାତ୍ରୀ ଭାବରେ ବିଭିନ୍ନ ବୈଠକରେ ମଦ ବନ୍ଦ ପାଇଁ ଚାପ ସୃଷ୍ଟି କଲେ । ଏଣୁ ସବୁ ସ୍ତରରୁ ମଦ ବିରୋଧରେ ହେଉଥିବା ଆନ୍ଦୋଳନ ପାଇଁ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ୯ଟି ଆଦିବାସୀ ଜିଲ୍ଲାରୁ ୧୯୯୪ ମସିହାରେ ଦେଶୀ ମଦ ଉଚ୍ଛେଦ କଲେ । ୧୯୯୬ ମସିହାରେ ଅଧିକ ରାଜସ୍ୱ ଆଦାୟର ଆଳ ଦେଖାଇ ରାଜ୍ୟ ସରକାର ଆଦିବାସୀ ଅଧ୍ୟୁଷିତ, ଗ୍ରାମବହୁଳ ୯ଟି ଜିଲ୍ଲାରେ ପୁଣି ଦେଶୀ ମହୁଲି ମଦର ପୁନଃ ପ୍ରଚଳନ ପାଇଁ ନିଷ୍ପତ୍ତି ନେଲେ । ଅର୍ଥନୀତି ତଥା ସାମାଜିକ ଦୃଷ୍ଟିକୋଣରୁ ହିସାବ କଲେ ଓଡିଶାର ସ୍ଥାନ ସବୁଠାରୁ ନିମ୍ନ ସ୍ଥାନରେ । ଏହି ନିଷ୍ପତ୍ତି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଉଦ୍‌ବେଗ ଓ ଉତ୍ତେଜନା ଭରି ଦେଇଥିଲା ଏବଂ ୧୯୯୬ ଜୁନ୍ ମାସରେ ଏହି ଘଟଣାକୁ ବିଚାର କରି ଓଡ଼ିଶାରେ 'ଓଡ଼ିଶା ମଦ-ମୁକ୍ତି ଅଭିଯାନ' କାର୍ଯ୍ୟକ୍ରମ ଆରମ୍ଭ ହେଲା ଏବଂ ଏପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ କୋଣରୁ ମହିଳାମାନେ ଏକଜୁଟ୍ ହୋଇ ମଦମୁକ୍ତି ଅଭିଯାନ ନାମରେ ମଦ ବିରୋଧୀ ଆନ୍ଦୋଳନ ଜାରି ରଖିଛନ୍ତି । ବିଭିନ୍ନ ସମୟରେ ବିଧାନସଭା ସମ୍ମୁଖରେ ଧାରଣା ଦିଆଯାଇଛି । ମଦମୁକ୍ତି ଅଭିଯାନରେ ବିଭିନ୍ନ ଅଞ୍ଚଳରୁ ଭାଗ ନେବାପାଇଁ ବହୁ ପ୍ରତିନିଧି ସାରା ଓଡିଶାରୁ ଆସି ଯୋଗ ଦେଇଛନ୍ତି । ଅକ୍ଟୋବର ୨ ତାରିଖ ପବିତ୍ର ଗାନ୍ଧୀ ଜୟନ୍ତୀ ଅବସରରେ ମଧ୍ୟ ବିଭିନ୍ନ ଜିଲ୍ଲାରେ ତଥା ରାଜ୍ୟସ୍ତରରେ ଏ ସମ୍ପର୍କରେ ପିକେଟିଂ, ଧରଣା, ଶୋଭାଯାତ୍ରା କରାଯାଇ ଜନସଚେତନାତା ଜାଗ୍ରତ କରାଯାଇଛି।

### ଶତକୋଟି ଉତ୍‌ଥାନ ଅଭିଯାନ

ଜାତିସଂଘ ତରଫରୁ କରାଯାଇଥିବା ଅନୁଧ୍ୟାନର ତଥ୍ୟ ଅନୁଯାୟୀ ପ୍ରତି ତିନି ଜଣରେ ଜଣେ ମହିଳା କୌଣସି ନା କୌଣସି ହିଂସାର ଶିକାର ହୋଇଥାନ୍ତି । ସାରା ପୃଥିବୀରେ ମହିଳାଙ୍କ ସଂଖ୍ୟା ପ୍ରାୟତଃ ୩୦୦ କୋଟି, ୧୦୦ କୋଟି ମହିଳା ହିଂସାର ଶିକାର ହେଉଛନ୍ତି । ଏହି ତଥ୍ୟ ଅତ୍ୟନ୍ତ ହୃଦୟ ବିଦାରକ । ତେଣୁ ୧୦୦ କୋଟି ଲୋକ ହିଂସାବିରୋଧୀ ଅଭିଯାନରେ ସାମିଲ ହୋଇ ଏହାକୁ ଶେଷ କରିବା ପାଇଁ ପଣନେବା ଆରମ୍ଭ ହେଲା ୨୦୧୨ ମସିହାରେ । ପ୍ରଖ୍ୟାତ ନାରୀବାଦୀ ସମାଜ କର୍ମୀ, ନାଟ୍ୟରଚୟିତା ତଥା ଅଭିନେତ୍ରୀ ଇଭଏନଜେଲ ଡାକରା ଦେଲେ ଶତକୋଟି ଉତ୍‌ଥାନ ଅଭିଯାନ ପାଇଁ । ଏହା ହେଉଛି ମହିଳାଙ୍କ ବିରୋଧରେ ହେଉଥିବା ହିଂସାର ସମାପ୍ତି ପାଇଁ ବିଶ୍ୱସ୍ତରୀୟ ଆହ୍ୱାନ । ମହିଳା ବିରୋଧୀ ହିଂସା ବିଲୋପ ପାଇଁ ହେଉଥିବା ପ୍ରଚେଷ୍ଟାଗୁଡିକୁ ଏକତ୍ରିକରଣ କରି ସାମୂହିକ ପଦକ୍ଷେପ ପାାଇଁ ଏହାଥିଲା ଏକ ପ୍ରସ୍ତୁତି । ଏହା ସାରା ପୃଥିବୀର ୧୭୫ଟି ଦେଶରୁ ଆରମ୍ଭ ହେଲା । ଦକ୍ଷିଣ ଏସିଆରେ ନଭେମ୍ବର ୨୫ ମହିଳା ହିଂସା ସମାପ୍ତି ଦିବସରୁ ଆରମ୍ଭ ହୋଇ ସାରା ବିଶ୍ୱରେ ୧୪ ଫେବୃଆରୀରେ ଶେଷ ହେବାର ନିଷ୍ପତ୍ତି ହେଲା ଏବଂ ଏଯାବତ୍ ଏହି ଅଭିଯାନ ଚାଲୁ ରହିଛି । ୨୦୦ରୁ ଅଧିକ ଦେଶ ଏଥିରେ ସାମିଲ

ହୋଇଛନ୍ତି । ମହିଳାଙ୍କ ବିରୋଧରେ ହେଉଥିବା ଏହି ହିଂସା ବର୍ତ୍ତମାନ ପୃଥିବୀର ସବୁଠୁ ବଡ ଗୃହ ଯୁଦ୍ଧ କହିଲେ ଭୁଲ ହେବନି । ତେଣୁ ଏହା ବିରୁଦ୍ଧରେ ଓଡିଶାର ମହିଳାମାନେ ଅଣ୍ଟା ଭିଡିଛନ୍ତି ଓବଂ ପ୍ରତିବର୍ଷ ସମାଜର ବିଭିନ୍ନ ବର୍ଗର ମହିଳା ଓ ପୁରୁଷ ଯଥା ସମାଜକର୍ମୀ, ଅଭିନେତା, ରାଜ ନିତିଜ୍ଞ, କବି, ଲେଖକ, ଗଣମାଧ୍ୟମର କର୍ମୀ, ପୋଲିସ ଅଧିକାରୀ, ଉଚ୍ଚପଦସ୍ଥ ସରକାରୀ ଅଧିକାରୀଙ୍କୁ ଏଥିରେ ସାମିଲ କରାଯାଉଛି ।

ଜାତିସଂଘ ଦ୍ୱାରା ଆୟୋଜିତ ୪ଟି ବିଶ୍ୱ ମହିଳା ସମ୍ମିଳନୀ ଆୟୋଜନ ତଥା ସି.ଏସ.ଡବ୍ଲ୍ୟୁର ବିଭିନ୍ନ ସମ୍ମିଳନୀ , କାର୍ଯ୍ୟକ୍ରମ ପରଠାରୁ ମହିଳା ଓ ପୁରୁଷମାନଙ୍କ ମଧ୍ୟରେ ସମାନତା ସୃଷ୍ଟି ଦିଗରେ ଗୁରୁତ୍ୱପୂର୍ଣ୍ଣ ପ୍ରଗତି ଘଟିଛି । ଶିକ୍ଷା ଓ ଉପଯୁକ୍ତ ସ୍ୱାସ୍ଥ୍ୟସେବା ପାଇବାରେ ମହିଳାମାନଙ୍କର ପ୍ରବେଶାଧିକାର ବୃଦ୍ଧି ପାଇଛି, ମଜୁରି ମିଳୁଥିବା ଶ୍ରମ ଶକ୍ତି କ୍ଷେତ୍ରରେ ସେମାନଙ୍କର ଯୋଗଦାନ ବୃଦ୍ଧି ପାଇଛି ଏବଂ ଆହୁରି ଅଧିକ ରାଷ୍ଟ୍ରରେ ମହିଳାମାନଙ୍କୁ ସମାନ ସୁବିଧା ସୁଯୋଗ ଦେବା ସହ ସେମାନଙ୍କର ମାନବିକ ଅଧିକାର ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ପ୍ରତିଶ୍ରୁତି ଦେଇ, ଆଇନ୍ ପ୍ରଣୟନ କରାଯାଇଛି । ଫଳସ୍ୱରୂପ ମହିଳା ଓ ପୁରୁଷମାନଙ୍କ ମଧ୍ୟରେ ରହିଥିବା ସଂପର୍କରେ ଉଲେଖନୀୟ ଭାବେ ପରିବର୍ତ୍ତନ ଘଟିଛି । ମହିଳାଙ୍କ ବିକାଶ ପାଇଁ ବହୁ ଆଇନକାନୁନ ତିଆରି ହୋଇଛି । ବହୁ ଆନ୍ତର୍ଜାତିକ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଛି । ବିଭିନ୍ନ ନୂଆ ନୂଆ ଯୋଜନା କାର୍ଯ୍ୟକାରୀ ହୋଇଛି ।

ତଥାପି ଅନେକ କ୍ଷେତ୍ରରେ ମହିଳାମାନଙ୍କ ପ୍ରତି ପାତର ଅନ୍ତର ମନୋଭାବ ପ୍ରଦର୍ଶିତ ହେଉଛି । ସାରା ପୃଥିବୀରେ ମହିଳାମାନଙ୍କ ବିରୁଦ୍ଧରେ ହିଂସାକାଣ୍ଡଗୁଡିକ ଘଟୁଥିବାର ଦେଖାଯାଇଛି । ସମ୍ବଳ କ୍ଷେତ୍ରରେ ମହିଳାମାନଙ୍କ ସମାନ ପ୍ରବେଶାଧିକାର ଏବେ ମଧ୍ୟ ସୀମିତ ଅବସ୍ଥାରେ ରହିଛି ଏବଂ ଉଚ୍ଚ ଶିକ୍ଷା ଓ ତାଲିମ ସୁବିଧା ସୁଯୋଗ ମଧ୍ୟ ସେମାନଙ୍କ ପାଇଁ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସୀମିତ ରହିଛି । ରାଜନୈତିକ କ୍ଷେତ୍ରରେ ମଧ୍ୟ ସମାନ ସୁଯୋଗ ମିଳିନି । ବ୍ୟବସାୟ, ସରକାର ଓ ରାଜନୀତି କ୍ଷେତ୍ରରେ ମହିଳାମାନଙ୍କ ପ୍ରଗତିରେ ଏକ 'ପତଳା ପରସ୍ତ' ଏବେ ମଧ୍ୟ ପ୍ରତିବନ୍ଧକ ସୃଷ୍ଟି କରୁଛି । ଦାରିଦ୍ର୍ୟର ଅପମାନ ଜନକ ପରିସ୍ଥିତି ଓ ନିରକ୍ଷରତା ଭିତରେ ଜୀବନଯାପନ କରୁଥିବା ଲୋକଙ୍କ ଭିତରେ ଅଧିକାଂଶ ମହିଳା ଅଛନ୍ତି । ମହିଳାମାନଙ୍କ ସଂପର୍କରେ ନିଆଯାଉଥିବା ଅଧିକାଂଶ ନିଷ୍ପତ୍ତି, ଏବେ ମଧ୍ୟ ପୁରୁଷମାନଙ୍କ ଦ୍ୱାରା ନିଆଯାଉଛି । ଏ ସବୁ ପରିସ୍ଥିତି ବଦଳିବା ଦରକାର ।

---

ସାମାଜିକ କର୍ମୀ
ଏନ୍-୬/୪୭୪, ଆଇଆରସି ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୧୫



# ଭକ୍ତକବି ମଧୁସୂଦନ ରାଓ

ଜୟ ଶଙ୍କର ନାୟକ

ଓଡିଶାର ଇତିହାସକୁ ମହିମାନ୍ୱିତ ଓ ଗୌରବାନ୍ୱିତ କରିଥିବା ଅସାଧାରଣ ପ୍ରତିଭା ସମ୍ପନ୍ନ ଓ ମହନୀୟ କୃତିତ୍ୱ ଦ୍ୱାରା ବରେଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଭକ୍ତକବି ମଧୁସୂଦନ ରାଓ ଥିଲେ ଅନ୍ୟତମ । ସେ ଥିଲେ ଜଣେ ଯୋଗଜନ୍ମା ପୁରୁଷ । ଊନବିଂଶ ଶତାବ୍ଦୀରେ ଓଡିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଥିବା ମହାମନୀଷୀଙ୍କ ମଧ୍ୟରୁ ଭକ୍ତକବି ମଧୁସୂଦନ ରାଓ ଅନ୍ୟତମ ତଥା ଉତ୍କଳର ସାରସ୍ୱତ ଆକାଶରେ ଭକ୍ତକବି ମଧୁସୂଦନ ରାଓ ଜଣେ ଉଜ୍ଜ୍ୱଳ ନକ୍ଷତ୍ର । ଶିଶୁ ସାହିତ୍ୟ, ଭକ୍ତିଗୀତ, କବିତା ଓ ପ୍ରବନ୍ଧ ରଚନା ମାଧ୍ୟମରେ ସେ ଓଡିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ବର୍ଣ୍ଣବୋଧ, ଶିଶୁବୋଧ, ସାହିତ୍ୟ କୁସୁମ, ହେମମାଳା ଆଦି ତାଙ୍କର ପ୍ରମୁଖ ଗଦ୍ୟ ରଚନା । ତାଙ୍କ ସାହିତ୍ୟରେ ମୁଖ୍ୟତଃ ଭକ୍ତିଭାବ, ସଂସ୍କାର ଓ ନୀତିବାଦି ଓ ମନୋବୃତ୍ତି ପ୍ରତିଫଳିତ ହୋଇଛି । ନିଜ ଜୀବନର ସମସ୍ତ ଝଡଝଞ୍ଜାକୁ ଖାତିର ନ କରି ସେ ଦେଶମାତୃକାର ସେବା ପାଇଁ ଜୀବନକୁ ଉତ୍ସର୍ଗ କରିଛନ୍ତି ।

ଏହି ଚିରସ୍ମରଣୀୟ ମହାନ ବ୍ୟକ୍ତିତ୍ୱ ୧୮୫୩ ମସିହା ଜାନୁଆରୀ ୧୯ ତାରିଖ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ପୁରୀ ଜିଲ୍ଲାରେ ଏହି ପୁଣ୍ୟାତ୍ମା ଜନ୍ମଲାଭ କରିଥିଲେ । ପ୍ରଥମ ସନ୍ତାନଙ୍କ ଜନ୍ମରେ ସମଗ୍ର ପରିବାର ଓ ଗ୍ରାମରେ ଖେଳି ଯାଇଥିଲା ଖୁସିର ଲହରୀ । ସମସ୍ତଙ୍କ ମୁହଁରେ ଗୋଟିଏ କଥା ପିଲାଟି ବଡ ହେଲେ ଦେଶର ନାଁ ରଖିବ । କାଳ କାଳକୁ ଯଶ ରଖିବ । ତାହା ହିଁ ସାହିତ୍ୟରେ ସତ୍ୟରେ ପରିଣତ ହୋଇଥିଲା ।

ମଧୁସୂଦନଙ୍କ ବାଲ୍ୟଜୀବନ ଖୁବ୍ ଦୁଃଖମୟ ଥିଲା । ଅତି ଛୋଟ ଅବସ୍ଥାରୁ ନିଜ ମାଆକୁ ସେ ହରାଇ ଥିଲେ । ତାଙ୍କର ଏକ ଅଢେଇ ବର୍ଷର ସାନ ଭାଇ ଥିଲେ । ତାଙ୍କର ନାମ ଥିଲା ଜଗନ୍ନାଥ ରାଓ । ଉଭୟ ପିଲାଙ୍କ ଦାୟିତ୍ୱ ନେବା ପିତା ଭାଗିରଥିଙ୍କ ପକ୍ଷରେ ଖୁବ୍ କଷ୍ଟସାଧ୍ୟ ହେଉଥିଲା । ମଧୁସୂଦନ ରାଓଙ୍କ ପିତା ମହରଟ୍ଟା ଶାସନ କାଳରେ ପୋଲିସ୍ ବିଭାଗରେ କନେଷ୍ଟବଳ ଚାକିରିଟିଏ କରିଥିଲେ । କନେଷ୍ଟବଳ ପୋଲିସ ଚାକିରିଟିଏ କରି ତହିଁରୁ ମାସ ଶେଷରେ ଯାହା ବେତନ ପାଉଥିଲେ, ସେତିକିରେ ପରିବାର ଚଳାଇ ନେଉଥିଲେ । ଏଣେ ସରକାରୀ ଚାକିରି । ପାଖରେ ଦୁଇଟି ମାଆ ଛେଉଣ୍ଡ ପିଲା । କିଛି ଦିନ ପାଇଁ ସେମାନଙ୍କୁ ତାଙ୍କ ମାମୁ ଘରେ ଛାଡି ଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେ ପୁନରାୟ ସେମାନଙ୍କୁ ନିଜ ପାଖକୁ ଆଣି ଦେଖାଶୁଣା କଲେ । ସଠିକ୍ ସମୟରେ ମଧୁସୂଦନ ଚାଟଶାଳୀ ପାଠ ଆରମ୍ଭ କଲେ । ମାଟିବଂଶ ଅବଧାନଙ୍କ ତତ୍ତ୍ୱାବଧାନରେ ପଣକିଆ, କଡାଗଣ୍ଡା, ଓଡାଙ୍କ, ଫେଡାଣ ଆଦି ଶିଖିଥିଲେ । ପରବର୍ତ୍ତୀ ସମୟରେ ସରକାରୀ ଭର୍ଣ୍ଣାକୁଲାର ବିଦ୍ୟାଳୟରେ ନାମ ଲେଖାଇ ପାଠପଢା ଜାରି ରଖିଥିଲେ । ସେ ଥିଲେ ଏକ ପ୍ରତିଭାବାନ ଛାତ୍ର । ତାଙ୍କର ମେଧାଶକ୍ତି ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀ ତଥା ଶିକ୍ଷା ପରିଦର୍ଶକମାନଙ୍କୁ ବେଶ୍ ଅଭିଭୂତ କରି ଦେଉଥିଲା । ସେ ସମସ୍ତଙ୍କ ଅତି ପ୍ରିୟ ଓ ଆଦରର ପାତ୍ର ଥିଲେ ।

ସେତେବେଳେ ସେ ନିଜର ପ୍ରତିଭା ବଳରେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟଙ୍କଠାରୁ ପ୍ରତିବର୍ଷ ଶହେ ଟଙ୍କା ପୁରସ୍କାର

ପାଉଥିଲେ । ତାଙ୍କ ଆଦର୍ଶ ଅନୁକରଣ କରିବା ପାଇଁ ସେତେବେଳର ମାଜିଷ୍ଟ୍ରେଟ ଜନ୍ ବକ୍‌ୱେଲ ସାହେବ ଅନ୍ୟ ପିଲାମାନଙ୍କୁ ପରାମର୍ଶ ଦେଉଥିଲେ । ତାଙ୍କ ପରି ଛାତ୍ର ପାଇ ରାଧାନାଥ ନିଜକୁ ଭାଗ୍ୟବାନ ମନେ କରୁଥିଲେ । ମଧୁସୂଦନ ଉଚ୍ଚଶିକ୍ଷା ଲାଭ କରିବାରେ ଗୁରୁ ରାଧାନାଥଙ୍କ ପ୍ରଚ୍ଛନ୍ନ ହାତ ଥିଲା । ସେ ତାଙ୍କୁ ଭଲ ପାଇବା ପାଇଁ ପ୍ରୋତ୍ସାହିତ କରୁଥିଲେ । ଜଣେ ସଚ୍ଚା ଗୁରୁ ଭାବରେ ଶିଷ୍ୟ ସମସ୍ତ ଦୁଃଖକୁ ନିଜର ଦୁଃଖ ବୋଲି ଧରି ନେଇ ଉତ୍ତମ ମାର୍ଗ ଦର୍ଶକ ସାଜିଥିଲେ । ମଧୁସୂଦନ ପ୍ରଥମ ଶ୍ରେଣୀରେ ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । କିନ୍ତୁ ଆର୍ଥିକ ପରିସ୍ଥିତି ଯୋଗୁଁ ସେ ଉଚ୍ଚଶିକ୍ଷା କରି ପାରିଲେ ନାହିଁ । ଶେଷରେ ଶିକ୍ଷକତାକୁ ନିଜ ଜୀବନର ପରମ ବ୍ରତ ଭାବରେ ସେ ଗ୍ରହଣ କରିନେଲେ । ଦେଶର ଭବିଷ୍ୟତ ନାଗରିକଙ୍କୁ ଗଢିବାରେ ଦାୟିତ୍ୱ ନେଇ ସେ ଖୁବ୍ ଖୁସି ହେଲେ, ତାଙ୍କ ପରି ଜଣେ ଶିକ୍ଷକଙ୍କୁ ପାଇ ସମସ୍ତେ ଗର୍ବ ଅନୁଭବ କରୁଥିଲେ । ସେ ଥିଲେ ଜଣେ ସମୟାନୁବର୍ତ୍ତୀ, କର୍ତ୍ତବ୍ୟନିଷ୍ଠ ଓ ଛାତ୍ରବତ୍ସଳ ଶିକ୍ଷକ । ତାଙ୍କର କାର୍ଯ୍ୟଦକ୍ଷତା ସେତେବେଳର ଓଡିଶା କମିଶନର ରେଭେନସା ସାହେବଙ୍କୁ ଖୁବ୍ ଆକର୍ଷିତ କରିଥିଲା । ସେ ମଧୁସୂଦନଙ୍କୁ ଭୁରି ଭୁରି ପ୍ରଶଂସା କରିବାକୁ ଲାଗିଲେ । ଫଳରେ ୧୮୮୦ ମସିହାରେ ସେ ହେଲେ ସ୍କୁଲ ସମୁହର ଡେପୁଟି ଇନିସ୍‌ପେକ୍ଟର । ଏହି ପଦବୀରେ ଥିବାବେଳେ ସେ ଶିକ୍ଷାର ଉନ୍ନତି ପାଇଁ ଅନେକ କିଛି କରିଯାଇଛନ୍ତି । ଇଂରେଜ ଶାସନାଧୀନ ସେତେବେଳର ଓଡିଶା ଅନ୍ଧବିଶ୍ୱାସ କୁସଂସ୍କାରରେ ପରିପୂର୍ଣ୍ଣ ଥିଲା । ଅଜ୍ଞାନରୂପକ ଅନ୍ଧକାର ସେମାନଙ୍କ ଉପରେ କଳାବାଦଲ ପରି ଛାଇ ହୋଇ ରହିଥିଲା । ସ୍ୱାଧୀନତାର ମୂଲ୍ୟ ସେମାନଙ୍କ ପାଇଁ ନିରର୍ଥକ ଥିଲା । ସେମାନଙ୍କୁ ସ୍ୱାଧୀନ ଚେତା ଓ ସୁନାଗରିକ କରି ଗଢିତୋଳିବା ପାଇଁ ମଧୁସୂଦନ ନିଜ ଜୀବନର ପରମ କର୍ତ୍ତବ୍ୟ ବୋଲି ଭାବି ନେଇଥିଲେ । ଏ କ୍ଷେତ୍ରରେ ତାଙ୍କୁ ସହାୟତା କରିଥିଲେ କବିବର ରାଧାନାଥ ରାୟ ଓ ବ୍ୟାସକବି ଫକିର ମୋହନ ସେନାପତି ଶିକ୍ଷାର ଉନ୍ନତି ପାଇଁ ଅନେକ ପ୍ରାଥମିକ ବିଦ୍ୟାଳୟ ଖୋଲିଥିଲେ । ମହାନ ସମାଜସେବୀ ଭାବରେ ଦୁଃଖ ଓ ଦୁର୍ଦ୍ଦିନ ସମୟରେ ଜନତାର ସେବା କରିବା ପାଇଁ ସେ ଆଗେଇ ଯାଇଛନ୍ତି । ଭୋକରେ ଆଉଟି ପାଉଟି ହେଉଥିବା ଦରିଦ୍ର ଜନତାର ପାଖରେ ପହଞ୍ଚି ସେମାନଙ୍କ ଦୁଃଖ ବୁଝିଛନ୍ତି ଓ ଖାଇବାକୁ ଦାନା ଦେଇଛନ୍ତି । ଏପରି ଏକ ନିଃସ୍ୱାର୍ଥପର ସେବକ କୋଟିକରେ ଗୋଟିଏ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେତେବେଳେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାଦାନ ପାଇଁ ଓଡିଆ ଭାଷାର ଛାପା ପୁସ୍ତକ ନ ଥିଲା । ବଙ୍ଗଳା ବହିର ଓଡିଆ ଅନୁବାଦ ଆମ ରାଜ୍ୟରେ ପଢା ଯାଉଥିଲା । ଏହା ତାଙ୍କୁ ଖୁବ୍ ବାଧିଲା । ଫଳରେ ତାଙ୍କ ଲେଖନୀମୁନ ଚଳଚଞ୍ଚଳ ହୋଇ ଉଠିଥିଲା । ସେଥିରୁ ଜନ୍ମ ନେଲା 'ବର୍ଣ୍ଣବୋଧ' ପୁସ୍ତକ । ୧୮୯୫ ମସିହାରେ ପ୍ରକାଶିତ ଯାହା ଆଜି ପର୍ଯ୍ୟନ୍ତ ଓଡିଶାର ଘରେ ଘରେ ସୁପରିଚିତ । ସେ କହିଥିଲେ ଶିକ୍ଷକମାନେ ହେଉଛନ୍ତି ଦେଶର ନିର୍ମାତା । ଭବିଷ୍ୟତ ନାଗରିକମାନଙ୍କୁ ଗଢି ତୋଳିବା ଦାୟିତ୍ୱ ସେମାନଙ୍କର । ସେମାନଙ୍କ ଗଣିତ ଓ ରୁଚି ସମ୍ପନ ଶିକ୍ଷାଦାନ ପଦ୍ଧତି ପିଲାମାନେ ସଠିକ ଢଙ୍ଗରେ ପଢିପାରିବେ । ଶିକ୍ଷାଦାନର ଉଚିତ୍ ମାର୍ଗଦର୍ଶନ କରିବା ଉଦ୍ଦେଶ୍ୟରେ ଶିକ୍ଷା ବନ୍ଧୁ, ଅବଧାନ ବନ୍ଧୁ, ଶିକ୍ଷକ ସହଚର ନାମରେ ତିନୋଟି ଉପାଦେୟ ପୁସ୍ତକ ରଚନା କରିଯାଇଛନ୍ତି । ସାଂପ୍ରତିକ ଶିକ୍ଷାବ୍ୟବସ୍ଥା ପିଲାମାନଙ୍କୁ ଦଣ୍ଡ ନ ଦେବା ପାଇଁ ସରକାର ନୀତିନିୟମ ପ୍ରଚଳନ କରିଛନ୍ତି । ବିଦ୍ୟାଳୟ ବାହାର କାନ୍ଥରେ ଲେଖାଅଛି ଦଣ୍ଡମୁକ୍ତ ଅଞ୍ଚଳ । ମଧୁସୂଦନ ମଧ ଦଣ୍ଡର ସପକ୍ଷରେ ନ ଥିଲେ । ପିଲାମାନଙ୍କୁ ଦଣ୍ଡ ଦେଲେ ସେମାନେ ପାଠ ପ୍ରତି ବୀତସ୍ପୃହ ହେବେ ଏବଂ ପାଠତ୍ୟାଗୀ ହୋଇଯିବେ ବୋଲି ସେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ପରାମର୍ଶ ଦେଉଥିଲେ ।

ଜଣେ ସାରସ୍ୱତ ସାଧକ ଭାବରେ ଅନେକ କାବ୍ୟ, କବିତା, ପ୍ରବନ୍ଧ ଓ ଗଳ୍ପ ରଚନା କରି ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଏସବୁ ଆମ ଜାତିର ଏକ ଅମୂଲ୍ୟ ସମ୍ପଦ । ତାଙ୍କର ଲେଖାଗୁଡିକ ସରଳ ଓ ଭକ୍ତିଭାବନାରେ

ସିକ୍ତ । ଛୋଟରୁ ବଡ଼ ପର୍ଯ୍ୟନ୍ତ ପ୍ରତ୍ୟେକ ଏହାକୁ ପଢିବା ସଙ୍ଗେ ସଙ୍ଗେ ଈଶ୍ୱର ଭକ୍ତିରେ ବୁଡି ଯାଆନ୍ତି । ସେ ମଧ ଉତ୍କଳ ସାହିତ୍ୟ ସମାଜ ଗଠନ କରି ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ପ୍ରୟାସ କରିଯାଇଛନ୍ତି । ତାଙ୍କରି କବିତାରେ ସେ ନିଜକୁ ଈଶ୍ୱରଙ୍କ ନିକଟରେ ସମର୍ପଣ କରିଛନ୍ତି । ପ୍ରଭୁଙ୍କୁ ପାଖରେ ପାଇଲେ ସେ ଆଉ ଛାଡିବେ ନାହିଁ । ତାଙ୍କର ଅପୂର୍ବ ଦୃଶ୍ୟକୁ ଆନନ୍ଦଭରା ଚାହାଣିରେ ଦେଖି ଉପଭୋଗ କରିବେ । ଭକ୍ତି ରୂପକ ଅଶ୍ରୁରେ ତାଙ୍କ ପାଦକୁ ଧୋଇ ଦେବା କଥା ତାଙ୍କ କବିତାର ଭାବ ଅନ୍ତରାତ୍ମାକୁ ସ୍ପର୍ଶ କରେ । ତାଙ୍କର ସରଳ ଓ ସାହିତ୍ୟପୂର୍ଣ୍ଣ ଶବ୍ଦ ସଂଯୋଜନା ପ୍ରତ୍ୟେକ ପାଠକଙ୍କୁ ବିମୋହିତ କରିଦିଏ । କବିଙ୍କର ଜନ୍ମଭୂମି, ପଦ୍ମ, ବର୍ଷା, ପ୍ରଭାତ ଏକ ଏକ ଅନନ୍ୟ ସୃଷ୍ଟି । ଜନ୍ମଭୂମି କବିତାରେ ଭାରତର ମହନୀୟ ସଂସ୍କୃତିକୁ ସେ ଅତି ନିଖୁଣ ଭାବରେ ସ୍ଥାନ ଦେଇଛନ୍ତି । ଭାରତୀୟ ନାରୀମାନଙ୍କୁ ସେ ଉଚ୍ଚସ୍ଥାନ ଦେଇଛନ୍ତି । ତାଙ୍କ କବିତା କବିଙ୍କ ପଦ୍ମ କବିତା, ସୌନ୍ଦର୍ଯ୍ୟ ବୋଧ ଓ ଈଶ୍ୱର ପ୍ରୀତିର ଏକ ନମୁନା ବହନ କରେ । ଏହିପରି କବିତା ଆମ ଭାଷାରେ କମ୍ ଦେଖିବାକୁ ମିଳେ । ତାଙ୍କ ଅନନ୍ୟ ସୃଷ୍ଟି ମଧ୍ୟରେ ଉନ୍ନତି ସ୍ତବ, ସନ୍ଧ୍ୟା, ଗ୍ରୀଷ୍ମ, ଶରତ, ପୃଥିବୀ ପ୍ରତି ମୋ ଜନନୀ, ଦୟା, ସତ୍ୟବ୍ରତ, ଶ୍ରୀରାମ ବନବାସ ଇତ୍ୟାଦି ।

ଆକାଶ ଦିଶେ କି ସୁନ୍ଦର, ତାହାକୁ ରଚିଲେ ଈଶ୍ୱର, ଈଶ୍ୱର ଦୟାର ସାଗର, ତାଙ୍କର ମହିମା ସୁମର, ବିଦ୍ୟା ଅଟଇ ମହାଧନ, ବାଳକେ କର ଉପାର୍ଜନ, ବିଦ୍ୟା ଅଟଇ ମହାରତ୍ନ, ହୃଦୟେ ଘେନ କରି ଯତ୍ନ, କି ସୁନ୍ଦର ଆହା, କି ଆନନ୍ଦମୟ ଏହି ବିଶାଳ ସଂସାର, ଧନ୍ୟ ମହାପ୍ରଭୁ, ମହିମା ତୁମର, ଅଟେ ଅନନ୍ତ ଅପାର, ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର । ଆଦି ମଧୁସୂଦନଙ୍କ ଅଭୁଲା ସୃଷ୍ଟି । କର୍ମମୟ ଜୀବନରେ ମଧୁସୂଦନ ଜଣେ ଶିକ୍ଷକ ଥିଲେ । କିନ୍ତୁ ସାହିତ୍ୟ ସାଧନା ଓ ସାମାଜିକ ସଂସ୍କାର ପାଇଁ ସେ ଥିଲେ ପୂର୍ଣ୍ଣ ସମର୍ପିତ । ମଧୁସୂଦନ ବାଲେଶ୍ୱର ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ଭାବେ କାର୍ଯ୍ୟ କରୁଥିବାବେଳେ ରାଧାନାଥ ରାୟ ଥିଲେ ଡେପୁଟି ଇନ୍ସପେକ୍ଟର । ଫକୀରମୋହନ ସେନାପତି ମଧ୍ୟ ସେହି ସମୟରେ 'ସମ୍ବାଦ ବାହିକା' ପ୍ରକାଶ କରୁଥିଲେ । ଆଧୁନିକ ଓଡିଆ ସାହିତ୍ୟର ଏହି ତିନି ପୁରୋଧା 'ଫକୀର-ରାଧା-ମଧୁ'ଙ୍କ ତ୍ରିବେଣୀ ସଙ୍ଗମ ହୋଇଥିଲା ବାଲେଶ୍ୱରରେ । ପାଠପଢା ଶେଷ ହେବା ପରେ ଶିକ୍ଷକ ଭାବେ ନିଜର ପେସାଦାର ଜୀବନ ଆରମ୍ଭ କରିଥିଲେ । ତାଙ୍କ ଶିକ୍ଷାଦାନ ପ୍ରଣାଳୀ, ଗମ୍ଭୀରତା, ନିର୍ମଳ ଚରିତ୍ର ଓ ଅକୁଣ୍ଠ ସ୍ନେହ ପାଇଁ ସେ ଛାତ୍ରମାନଙ୍କର ଅତ୍ୟନ୍ତ ପ୍ରିୟ ହୋଇପାରିଥିଲେ । ଫକୀରମୋହନ ସେନାପତି, ରାଧାନାଥ ରାୟଙ୍କ ସହିତ ମିଶି ମଧୁସୂଦନ ଓଡିଆ ସାହିତ୍ୟ ଜଗତରେ ଆଧୁନିକ ଯୁଗର ପ୍ରବର୍ତ୍ତନ କରିଥିଲେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ । ଅଧ୍ୟୟନ ଅଧ୍ୟାପନା ଓ ରଚନା କାର୍ଯ୍ୟରେ ସେ ତାଙ୍କର ଜୀବନ କାଟିଥିଲେ । ଅନ୍ୟ କୌଣସି ଆକର୍ଷଣ ତାଙ୍କୁ ଏଥରୁ ବିରତ କରି ପାରି ନ ଥିଲା । ଶିଶୁଙ୍କୁ ଓଡ଼ିଆ ବର୍ଣ୍ଣମାଳା ସହିତ କରିବା ପାଇଁ ପ୍ରକାଶ କରିଥିଲେ 'ବର୍ଣ୍ଣବୋଧ' ପୁସ୍ତକ । ଶିଶୁଗୀତ, ଛାନ୍ଦମାଳା, ବସନ୍ତଗାଥା, ଉତ୍କଳଗାଥା, ଶିଶୁବୋଧ, ସାହିତ୍ୟ କୁସୁମ, ହେମମାଳା ପ୍ରମୁଖ ମଧୁସୂଦନଙ୍କର ସମୃଦ୍ଧ ସାହିତ୍ୟ ଭଣ୍ଡାରର କେତେକ ଲୋକପ୍ରିୟ କୃତି । ଏଭଳି ଅନେକ ସ୍ମରଣୀୟ ତଥା ଲୋକପ୍ରିୟ ଉକ୍ତି ସେ ରଚନା କରିଥିଲେ । ଶିକ୍ଷାର ପ୍ରସାର ପାଇଁ କଟକରେ ଏକ ମଧ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ, ଯାହା ବର୍ତ୍ତମାନ 'ଭକ୍ତ ମଧୁ ବିଦ୍ୟାପୀଠ' ଭାବେ ଜଣାଶୁଣା । ସେହିପରି ସାହିତ୍ୟର ପ୍ରସାର ପାଇଁ ସେ 'ଉତ୍କଳ ସାହିତ୍ୟ ସମାଜ' ପ୍ରତିଷ୍ଠା କରିଥିଲେ । ଓଡିଶା ଶିକ୍ଷିତ ସମାଜ ଓ ସରକାର ତାଙ୍କୁ ସମ୍ମାନିତ କରି 'ଭକ୍ତ କବି' ଓ ରାୟ ବାହାଦୁର ଉପାଧି ପ୍ରଦାନ କରିଥିଲେ ।

ପରିଶେଷରେ ୧୯୧୨ ମସିହା ଡିସେମ୍ବର ୨୮ ତାରିଖରେ ଭକ୍ତକବି ମଧୁସୂଦନଙ୍କ ମହାପ୍ରୟାଣ ଘଟିଥିଲା ।

---

ଗ୍ରାମ/ପୋ.ଅ- ଖିଚିଂ, ଭାୟା- ଶୁକୁଳି
ଜିଲ୍ଲା- ମୟୂରଭଞ୍ଜ, ପିନ୍- ୭୫୭୦୩୯

# ଆହ୍ୱାନଠାରୁ ଲକ୍ଷ୍ୟ ପର୍ଯ୍ୟନ୍ତ

**ଶୁଭନାରାୟଣ ଶତପଥୀ**

ନାରୀ ହିଁ ଧୈର୍ଯ୍ୟ, ପରାକାଷ୍ଠାର ମୂର୍ତ୍ତିମନ୍ତ ପ୍ରତୀକ । ଇତିହାସରୁ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରମାଣ ରହିଛି ଉଜ୍ଜୀବିତ । ସେ ଧୈର୍ଯ୍ୟର ସହ ଦୈନନ୍ଦିନ ସବୁ କାର୍ଯ୍ୟ କରିଚାଲିଥାଏ । ପ୍ରତ୍ୟେକ କାର୍ଯ୍ୟକୁ ସଫଳତାର ରୂପ ଦିଏ । ଏଣୁ ପ୍ରତିଟି ସଫଳତା ଭିତରେ ଅର୍ନ୍ତର୍ନିହିତ ଥାଏ ନାରୀର ନିଷ୍ଠା, ତ୍ୟାଗ, ସ୍ନେହ, ପ୍ରେମ, ଧୈର୍ଯ୍ୟ, ବିନମ୍ରତା, ସାଧୁତା ପରି ମହନୀୟ ଗୁଣ ସବୁ । ଏ ସଦ୍‌ଗୁଣ ସବୁକୁ ଧାରଣ କରି ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଅନ୍ୟ ପାଇଁ ଜଳୁଥିବା ବ୍ୟକ୍ତିଜଣକୁ ନାରୀ ବା ମହିଳା ବୋଲି ଆଜିବି ଆଖ୍ୟାୟିତ କରାଯାଏ । ନାରୀଟିଏ ତା'ର ଜୀବନରେ ନିଜର ସୁବିଧାକୁ ବଳି ପକାଇ ଅନ୍ୟର ଅସୁବିଧା ଦୂର କରେ । ଅର୍ଥାତ୍ ଅନ୍ୟମାନଙ୍କର ସୁବିଧା ଓ ଅସୁବିଧା ସଦା ନାରୀଟିଏ ପାଇଁ ଆହ୍ୱାନ । ଏ ଆହ୍ୱାନକୁ କେବଳ ସ୍ୱୀକାର କରନ୍ତି ସେହିମାନେ ଯେଉଁମାନଙ୍କୁ ନାରୀ ବୋଲି କୁହାଯାଏ । କାରଣ ଏହା ସେମାନଙ୍କର ପସନ୍ଦ, ପରୋପକାରର ମହତ୍ୱ ଓ ଅପରକୁ ସମ୍ମାନ । ଆଉ ଆମେ ସମସ୍ତେ ଜାଣୁ ଯେ ସେମାନେ ଶୀଘ୍ର ଗ୍ରହଣ କରନ୍ତି ବୋଲି ଆହ୍ୱାନଗୁଡିକ ଅତି ସହଜରେ ସମାଧାନ ହୁଏ । କାର୍ଯ୍ୟଟି ପ୍ରତିକୂଳ ପରିସ୍ଥିତିର ହେଉ ବା ଅନୁକୂଳ, ସବୁ ସ୍ଥିତି ସହ ସେମାନେ ଖାପଖୁଆଇ ମନପ୍ରାଣ ଦେଇ କାମ କରୁଥିବାରୁ କାର୍ଯ୍ୟ ସଫଳ ହୁଏ । ସେହି ନ୍ୟାୟରେ ମହିଳାମାନେ ଆହ୍ୱାନ ସବୁକୁ ନିଜର କରନ୍ତି ଓ ତାହାକୁ ଦୂର କରି କେବଳ ନିଜର ସ୍ୱାମୀ, ଶାଶୁ, ଶ୍ୱଶୁର, ଛୁଆ ପିଲାଙ୍କର କଥା ବୁଝନ୍ତି ତାହାନୁହେଁ ବରଂ ଯେଉଁ ମହିଳାମାନେ କର୍ମକ୍ଷେତ୍ରରେ ନିୟୋଜିତ ହୋଇଛନ୍ତି ସେମାନେ ଘରକାମ ବ୍ୟତିରେକ ସ୍ୱାସ୍ଥ୍ୟ, ଶିକ୍ଷା, କୌଳିକ ବୃତ୍ତି, ଚାଷକାମ, ରୋଜଗାର ଆଦି ଆନୁଷଙ୍ଗିକ କାର୍ଯ୍ୟରେ ମଧ୍ୟ ସହଯୋଗ କରନ୍ତି ।

ବାସ୍ତବରେ ଝିଅଟିଏ ଜନ୍ମ ହେବା ପୂର୍ବରୁ କାହିଁକି କେଜାଣି ଭ୍ରୂଣ ହତ୍ୟାର ପ୍ରଚେଷ୍ଟା ହୁଏ ଓ ଜନ୍ମ ହେବାକ୍ଷଣି ତାକୁ ଅନେକ ସାମାଜିକ ପ୍ରତିବନ୍ଧକର ଶିକାର ହେବାକୁ ପଡେ । କାରଣ ଯେଉଁ ଧାରଣାକୁ ନେଇ ମଣିଷ ବଂଚେ ସେଥି ମଧ୍ୟରୁ ବଂଶ ବୃଦ୍ଧି ପାଇଁ ପୁଅଟିଏ ଜରୁରୀ, ଝିଅ ବଦଳରେ ପୁଅ ହୋଇଥିଲେ ଭଲ ହୋଇଥାନ୍ତା, ପୁଅଟିଏ ପାରିବାର ଇତ୍ୟାଦି ଅନ୍ୟତମ । ଏସବୁ ହେଉଛି ନାରୀ ବା ମହିଳାଙ୍କ ଜୀବନର ପ୍ରଥମ ଆହ୍ୱାନ । ଏଇଠାରୁ ଆରମ୍ଭ ହୁଏ ଆହ୍ୱାନର ଯାତ୍ରା । ଏମିତି ଭିନ୍ନ ଭିନ୍ନ ପରିସ୍ଥିତି ଦେଇ ଗୋଟିଏ ପରେ ଗୋଟିଏ ଆହ୍ୱାନକୁ ସାମ୍ନା କରିଚାଲେ ନାରୀ । ତା'ର ଜୀବନ ଆହ୍ୱାନରେ ପରିପୂର୍ଣ୍ଣ । ଏହି ଆହ୍ୱାନ ବା ପ୍ରତିବନ୍ଧକଗୁଡିକ ଜୀବନର ପ୍ରତିଟି ସ୍ତରରେ ଉଭା ହୁଏ । ଶିଶୁକନ୍ୟା, କିଶୋରୀ, ଯୁବତୀ, ମହିଳା, ବୃଦ୍ଧାବସ୍ଥାରେ ଭିନ୍ନ ଭିନ୍ନ ପ୍ରତିବନ୍ଧକର ସାମ୍ନା କରିଥାଏ ନାରୀ । ସ୍କୁଲରେ ପାଠପଢା, ବର୍ଣ୍ଣ, ଜାତିଗତ ବୈଷମ୍ୟ, ଯୌନ ନିର୍ଯ୍ୟାତନା, ଘରୋଇ ହିଂସା, କାର୍ଯ୍ୟର ଚାପ, କର୍ମକ୍ଷେତ୍ରରେ ଶୋଷଣ, ଅସମାନତା ଇତ୍ୟାଦି ଭଳି ବାଧା ଉପୁଜେ । ଏହାରି ଭିତରେ ସେ ସମାଜ ସହ

ନିଜକୁ ଯୋଡେ, ପରିବାର, ଗୋଷ୍ଠୀ, ଦେଶ ଗଠନରେ ସହାୟତା କରେ । ନିଜର ଉତ୍ତରଦାୟିତ୍ୱ ସଠିକ ନିର୍ବାହନ ପାଇଁ ଅଣ୍ଟା ଭିଡେ । ଆଉ ଏହି ପ୍ରତିବନ୍ଧକଗୁଡିକୁ କରେ ତା'ର ସହଜାତ ସାଥୀ । ଏସବୁ ଆହ୍ୱାନର ଗ୍ରହଣୀୟତା ହେଉଛି ପାରିବାପଣିଆର ପ୍ରମାଣ ଓ ପ୍ରତିଫଳନ ।

ଅଧିକାଂଶ କ୍ଷେତ୍ରରେ ନାରୀକୁ ସୁରକ୍ଷା, ସମ୍ମାନ ବଦଳରେ ତା' ପ୍ରତି ବିପଦ ସୃଷ୍ଟି କରୁଥିବା ବା କରାଉଥିବା କାର୍ଯ୍ୟକୁ ପ୍ରୋତ୍ସାହନ କରିଥାନ୍ତି ତା'ର ସଂପର୍କୀୟ । ସ୍ଥଳବିଶେଷରେ ପିତା, ମାତା, ସ୍ୱାମୀ, ଶାଶୁ, ଶ୍ୱଶୁର, ପୁଅ, ଝିଅ କେହି ଏଥିରୁ ବାଦ୍ ପଡନ୍ତି ନାହିଁ । ତେବେ ହସି ହସି ଏ ସବୁକୁ ସହି ଓ ପ୍ରତିକୂଳ ପରିସ୍ଥିତିରେ ରହି ତାର ଚାରିପାଖରେ ଥିବା ମଣିଷମାନଙ୍କ ସେବା କରିବା ଯେମିତି ତା'ର ଲକ୍ଷ୍ୟ ପାଲଟିଯାଇଛି । ଏସବୁ ନାରୀଟିଏ ପାଇଁ ଚିରାଚରିତ ହୋଇପାରେ । କିନ୍ତୁ ନାରୀଟିଏ ପ୍ରତି ହିଂସା, ଦ୍ୱେଷ, ହୀନ ମନୋଭାବ ତା'ର ପ୍ରଗତିର ପ୍ରତିରୋଧ କରେ । ତେବେ ବିଗତ ତିନିବର୍ଷ ମଧ୍ୟରେ କରୋନା ଭୂତାଣୁର ତାଡନା ମହିଳାମାନଙ୍କ ପ୍ରତି ବେଡି ଉପରେ କୋରଡା ମାଡ ପରି ହୋଇଛି । ୟୁନାଇଟେଡ ନେସନ୍ସ ୱିମେନର ତଥ୍ୟ ଅନୁଯାୟୀ କରୋନା କଟକଣା, ପୃଥକ ବାସ, ଅର୍ଥନୈତିକ ନିଅଂଟ ପରିସ୍ଥିତି ମହିଳାମାନଙ୍କ ଉପରେ ନିର୍ଯ୍ୟାତନା ତଥା ଘରୋଇ ହିଂସାକୁ ଅଧିକ ମାତ୍ରାରେ ପ୍ରୋତ୍ସାହିତ କରିଛି । ୨୦୩୦ ମସିହା ବେଳକୁ ୨୫ରୁ ୩୪ ବର୍ଷ ବୟସର ମହିଳା, ଯେଉଁମାନେ ଅତିଶୟ ଦାରିଦ୍ର୍ୟ ମଧ୍ୟକୁ ଯିବାର ସମ୍ଭାବନା ଅଛି ସେମାନଙ୍କ ସଂଖ୍ୟା ପ୍ରତି ୧୦୦ଜଣ ପୁରୁଷରେ ୧୨୧ ହେବ ବୋଲି ପରିକଳ୍ପନା କରାଯାଉଛି । ସେହିପରି ଆନ୍ତର୍ଜାତୀୟ ଶ୍ରମ ସଂସ୍ଥାର ଆକଳନ ଅନୁଯାୟୀ ପ୍ରାୟ ୧୪୦ ମିଲିୟନ ବ୍ୟକ୍ତି ସେମାନଙ୍କର ପୂର୍ଣ୍ଣ ଅବଧିକାଳୀନ ଚାକିରି ହରାଇବେ, ଯେଉଁଥିରେ ପୁରୁଷଙ୍କ ତୁଳନାରେ ମହିଳାଙ୍କ ପ୍ରତି ଅଧିକ ୧୯ ଶତକଡା ବିପଦ ରହିଛି । ତେବେ ଏ କ୍ଷେତ୍ରରେ ଓଡିଶା ସରକାରଙ୍କ ମିଶନ ଶକ୍ତି କାର୍ଯ୍ୟକ୍ରମ ରାମବାଣ ସଦୃଶ । ଜନସଂଖ୍ୟାର ଅର୍ଦ୍ଧେକ ମହିଳାଙ୍କୁ ସ୍ୱାବଲମ୍ବନଶୀଳ କରାଇବା ଲକ୍ଷ୍ୟ ନେଇ କାର୍ଯ୍ୟକରୁଥିବା ମିଶନ ଶକ୍ତି ମହିଳାମାନଙ୍କ ସଶକ୍ତିକରଣ ଓ ସର୍ବାଙ୍ଗୀନ ଉନ୍ନତିର ଏକ ନିରବ ବିପ୍ଳବ । ଅର୍ଥ ଉପାର୍ଜନ, ସହଭାଗିତା, ଅଧିକାରକୁ ସୁନିଶ୍ଚିତ କରିବା, ସାଂଗଠନିକ ଦୃଢତା, ଦକ୍ଷତାବୃଦ୍ଧି ଜୀବିକା ନିର୍ବାହ ଆଦି କ୍ଷେତ୍ରରେ ମହିଳାମାନଙ୍କ ପ୍ରୋତ୍ସାହନ କରିବା ହେଉଛି ବିକାଶର ଏକ ମାଇଲଖୁଣ୍ଟ । ବାସ୍ତବରେ ଏହି ପ୍ରୟାସ ଅନନ୍ୟ ଓ ପ୍ରତିଟି କ୍ଷେତ୍ରରେ ମହିଳାମାନଙ୍କ ନିମନ୍ତେ ସମୃଦ୍ଧି ଅଣିବାର ଉତ୍କର୍ଷ ସୁତ୍ର । ମିଶନ ଶକ୍ତି ବ୍ୟତୀତ ବିଜୁ କନ୍ୟାରନ୍ ଯୋଜନା, ଅଦ୍ୱିକା, ବେଟି ବଚାଓ ଓ ବେଟି ପଢାଓ, ଆଇନ ସହାୟତା, ମମତା, ସାମାଜିକ ଥଇଥାନ ଆବାସ କାର୍ଯ୍ୟକ୍ରମ, କିଶୋରୀଶକ୍ତି ଯୋଜନା, ପ୍ରଜନନ ଓ ଶିଶୁ ସ୍ୱାସ୍ଥ୍ୟ, ସୁକନ୍ୟା ସମୃଦ୍ଧି ଯୋଜନା ଇତ୍ୟାଦି ମହିଳାମାନଙ୍କ ସାମ୍ନାରେ ଉଭା ହେଉଥିବା ଦୁର୍ବଳତାଗୁଡିକୁ ପ୍ରତିହତ କରିବାର ସକ୍ଷମ ।

ସେହିପରି କାର୍ଯ୍ୟ କ୍ଷେତ୍ରରେ ମଧ୍ୟ ପୁରୁଷଙ୍କ ତୁଳନାରେ ମହିଳାଙ୍କ ଉପରେ ଚାପ ଅଧିକ ରହିଛି । ଘର ହେଉ ବା କର୍ମକ୍ଷେତ୍ର ମହିଳାମାନଙ୍କୁ ଅଧିକ କାମର ଚାପ ସହିତ କରୋନା ଭୂତାଣୁ ସଂକ୍ରମଣକୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ ମହିଳାଙ୍କ ଯୋଗଦାନ ବେଶ୍ ପ୍ରଶଂସନୀୟ ହୋଇଛି ଓ ସଫଳତା ପ୍ରଦାନ କରିଛି । ଏହା ଆମେ ଦେଖିଛେ ଓ ଅଙ୍ଗେ ନିଭେଇଛେ । ମହିଳା ପୋଲିସ ହୁଅନ୍ତୁ ବା ମହିଳା ସ୍ୱାସ୍ଥ୍ୟ କର୍ମୀ, ଶିକ୍ଷୟିତ୍ରୀ ହୁଅନ୍ତୁ ବା ପ୍ରଶାସନିକ ଅଧିକାରୀ, ମହିଳା ନେତୃବର୍ଗ ହୁଅନ୍ତୁ ବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, ଗାଁର ଆଶା ଦିଦି ହୁଅନ୍ତୁ ବା ଅଙ୍ଗନୱାଡି କର୍ମୀ, ଆଗଧାଡିର କରୋନା ଯୋଦ୍ଧା ଭାବରେ ଓ ବିକାଶର ପଥକୁ ପ୍ରଶସ୍ତ କରିବାରେ ଏହି ମହିଳାକର୍ମୀଙ୍କ କାମ ଅତୁଳନୀୟ ଓ ଅବର୍ଣ୍ଣନୀୟ । ମହିଳାଙ୍କ ଭାଗିଦାରୀରେ ରୋଗୀ ସେବାଠାରୁ ଆରମ୍ଭ କରି ଗାଁ' ରୁ ସହର ପର୍ଯ୍ୟନ୍ତ

ସଚେତନତା ସୃଷ୍ଟି କରିବା ହେତୁ କରୋନା ଭଳି ଭୟଙ୍କର ମହାମାରୀକୁ ନିୟନ୍ତ୍ରଣକୁ ଅଣାଯାଇପାରିଛି ।

ଏତେସବୁ ପ୍ରତିଦାନ ସତ୍ତ୍ୱେ ଏବେବି ସମାଜରେ ମହିଳା, ଝିଅମାନେ ଅବହେଳାର ଶିକାର ହେଉଥିବାର ଲକ୍ଷ୍ୟ କରାଯାଏ । ସେମାନଙ୍କର ଅଧିକାରକୁ ସୁରକ୍ଷିତ ରଖିବା ସମସ୍ତଙ୍କର ଦାୟିତ୍ୱ । ଝିଅଟିକୁ ଅତି କମ୍‌ରେ ୧୮ ବର୍ଷ ଯାଏଁ ପାଠ ପଢ଼ିବାର ସଂପୂର୍ଣ୍ଣ ସୁଯୋଗ ପ୍ରଦାନ କରିବା ପ୍ରତ୍ୟେକ ଅଭିଭାବକଙ୍କ କର୍ତ୍ତବ୍ୟ । ପ୍ରକାରାନ୍ତରେ ଏହା ବାଲ୍ୟବିବାହ, କନ୍ୟା ଚାଲାଣ, ଯୌନ ନିର୍ଯ୍ୟାତନା, ଶିଶୁ ଶ୍ରମକୁ ମଧ୍ୟ ପ୍ରତିହତ କରିବାରେ ସହାୟକ ହେବ । ସରକାରଙ୍କ ପ୍ରୟାସ ସହିତ ପରିବାର, ଗୋଷ୍ଠୀରେ ମହିଳା ନେତୃତ୍ୱକୁ ଗୁରୁତ୍ୱ ପ୍ରଦାନ କରି ଘରୋଇ ହିଂସାକୁ ରୋକିବା ନିମନ୍ତେ ସାମାଜରେ ପ୍ରତ୍ୟେକ ବ୍ୟକ୍ତି ସହଯୋଗ ଯୋଗାଇଦେବା ଆବଶ୍ୟକ । ଆୟବୃଦ୍ଧି, କର୍ମକ୍ଷେତ୍ରରେ ସୁବିଧା ଓ ସୁରକ୍ଷା, ସମାନ ମଜୁରି ପ୍ରଦାନ, ଶିକ୍ଷା ଓ ପୁଷ୍ଟି ନିମନ୍ତେ କିଶୋରୀମାନଙ୍କୁ ସହାୟତା, ହିଂସା ଓ ନିର୍ଯ୍ୟାତନା ରୋକିବା ଦିଗରେ ତୁରନ୍ତ ପଦକ୍ଷେପ ମହିଳାମାନଙ୍କୁ ଶାରୀରିକ ଓ ମାନସିକ ସ୍ତରରେ ଅଧିକ କ୍ରିୟାଶୀଳ କରାଇବ । ଫଳରେ ବିକାଶ କ୍ଷେତ୍ରରେ ସେମାନଙ୍କ ସହଭାଗିତାକୁ ମଜବୁତ କରିବ । ଆଗକୁ ଥିବା ପ୍ରତିବନ୍ଧକଗୁଡ଼ିକୁ ମିଳିତ ଭାବେ ଦୂର କରାଯାଇପାରିବ । ଆହ୍ୱାନକୁ ସାଦରେ ଗ୍ରହଣ କରି ସମାଧାନ କରିବା ସେମାନଙ୍କ ପାଇଁ ଅଧିକ ସହଜ ହେବ । ଏଥିପାଇଁ ଘର, କର୍ମକ୍ଷେତ୍ର, ଗୋଷ୍ଠୀ, ସମାଜ ପ୍ରତ୍ୟେକ ସ୍ଥାନରେ କେବଳ ସହଯୋଗିତା ଓ ସହାୟତା ଲୋଡ଼ା । ସମସ୍ତଙ୍କର ମିଳିତ ପ୍ରୟାସ ନାରୀମାନଙ୍କୁ ପ୍ରଦାନ କରିବ ଅସୀମ ସାହସ ଯାହା ସୁସ୍ଥ ସମାଜ ଗଠନରେ ସହାୟକ ହେବ । ମହିଳାମାନେ ଗୋଟିଏ ପରେ ଗୋଟିଏ ସଫଳତାର ପାହାଚ ଅତିକ୍ରମ କରି ସାମାଜିକ, ଅର୍ଥନୈତିକ ପୂର୍ଣ୍ଣତା ଲାଭ କରିବେ । ମହିଳାଙ୍କ ସୁରକ୍ଷା ଓ ଉନ୍ନତି ଏକ ଅତି ଉନ୍ନତ ଓ ଅତି ବିକଶିତ ପୃଥିବୀକୁ ଜନ୍ମ ଦେବ । ଯେଉଁଠି ଲିଙ୍ଗଗତ ବିଭେଦ ନ ଥିବ ଓ ମହିଳାଙ୍କ ଭାଗିଦାରୀକୁ ପୂର୍ଣ୍ଣ ପ୍ରୋତ୍ସାହନ ମିଳୁଥିବ । ତେବେ ଯାଇ ମହିଳା ସଶକ୍ତିକରଣର ଲକ୍ଷ୍ୟ ସାଧିତ ହେବ ।

ବିଜିପୁର, ବ୍ରହ୍ମଗିରି, ପୁରୀ



# ଯୋଗଜନ୍ମା ଯୁଗପୁରୁଷ ମଧୁସୂଦନ ଦାସ

**କମଳ କୁମାର ରାଉତ**

ଓଡ଼ିଶାର ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାପଡ଼େ ଯେ ଏହି ମାଟିରେ ବହୁ ଯୋଗଜନ୍ମା ଯୁଗପୁରୁଷମାନଙ୍କର ଆବିର୍ଭାବ ହୋଇ ସେମାନଙ୍କର ତ୍ୟାଗ, ତିତିକ୍ଷା ଓ ସେବାରେ ଏହି ଜାତି ହୋଇଛି ପବିତ୍ର, ମାର୍ଜିତ, ସଙ୍ଗଠିତ ଏବଂ ଋଦ୍ଧିମନ୍ତ । ସେମାନଙ୍କର କର୍ମ ପ୍ରେରଣା ଓଡ଼ିଆ ଜାତିକୁ ଦେଇଛି ନୂତନ ଦିଗ୍‌ଦର୍ଶନ । ସେହିଭଳି ଉତ୍କଳ ଭୂମିର ଜଣେ ବରପୁତ୍ର ହେଉଛନ୍ତି ମଧୁସୂଦନ ଦାସ ଯାହାଙ୍କର ଜନ୍ମ ଦିବସକୁ ଏ ଜାତି 'ସ୍ୱାଭିମାନ ଦିବସ' ହିସାବରେ ପାଳନ କରିଆସୁଅଛି ।



ମଧୁସୂଦନ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ୧୮୪୮ ମସିହା ଏପ୍ରିଲ୍ ମାସ ୨୮ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଏବଂ ମାତା- ପାର୍ବତୀ ଦେବୀ । ମଧୁସୂଦନଙ୍କ ପ୍ରାଥମିକ ଶିକ୍ଷା ଗାଁ ଚାଟଶାଳୀରେ ହିଁ ଆରମ୍ଭ ହୋଇଥିଲା । ପିଲାଦିନେ ସେ ବହୁତ ଦୁଷ୍ଟ ଥିବାରୁ ତାଙ୍କର ପିତା ଜଣେ ଅବଧାନଙ୍କୁ ଘରେ ରଖି ତାଙ୍କର ପାଠପଢ଼ା ବନ୍ଦୋବସ୍ତ କରିଥିଲେ । ଖୁବ୍‌ଶୀଘ୍ର ଓଡ଼ିଆ ଅକ୍ଷର ଶିଖିବା, ଲେଖିବା ଓ ପଢ଼ିବାରେ ସେ ପାରଙ୍ଗମ ହୋଇଯାଇଥିଲେ । ଗାଁ ଚାଟଶାଳୀ ପାଠପଢ଼ା ଶେଷ ହେବାପରେ ତାଙ୍କର ପାଠପଢ଼ା କଟକର ଗଭର୍ଣ୍ଣମେଣ୍ଟ ଜିଲ୍ଲା ସ୍କୁଲ୍‌ରେ ହୋଇଥିଲା । ୧୮୬୪ ମସିହାରେ ସେ ତତ୍କାଳୀନ କଲିକତା ବିଶ୍ୱଭାରତୀର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ଉଚ୍ଚଶିକ୍ଷା ପାଇଁ ଓଡ଼ିଶାରେ କୌଣସି କଲେଜ ନଥିଲା । ତେଣୁ କଲିକତାରେ ରହି ଉଚ୍ଚଶିକ୍ଷା ଲାଭ କରିବାକୁ ସ୍ଥିର କରିଥିଲେ । ୧୮୬୬ ମସିହାରେ ଏଫ୍.ଏ. ଶ୍ରେଣୀରେ ନାମ ଲେଖାଇଥିଲେ ଏବଂ ଏହି ଶ୍ରେଣୀରେ ଦୁଇବର୍ଷ ଅଧ୍ୟୟନ କରିଥିଲେ । ୧୮୬୮ ମସିହାରେ ଏଫ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ଖ୍ରୀଷ୍ଟଧର୍ମର ପ୍ରସାର ଓ ପ୍ରଚାରରେ ଜୋର୍‌ସୋର୍‌ରେ ଲାଗି ପଡ଼ିଥାଆନ୍ତି । ମଧୁସୂଦନ ୧୮୬୯ ମସିହାରେ ଖ୍ରୀଷ୍ଟୀୟ ଧର୍ମରେ ଦୀକ୍ଷିତ ହେଲେ । ତେବେ କାହିଁକି ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ତାହାର କୌଣସି ସଠିକ୍ କାରଣ ଜଣାନାହିଁ । ସେ ବିଶ୍ୱଭାରତୀରେ ଅଧ୍ୟୟନ

କରୁଥିବା ସମୟରେ ଏକ ଆନ୍ଦୋଳନ କରିଥିଲେ । ସେତେବେଳେ ସଂସ୍କୃତ ପ୍ରଶ୍ନର ଉତ୍ତର ନିଜ ନିଜ ମାତୃଭାଷାରେ ଲେଖିବାର ସ୍ୱାଧୀନତା ଛାତ୍ରମାନଙ୍କର ଥିଲେ ବି ଓଡ଼ିଆମାନଙ୍କୁ ଏଥିରୁ ବଞ୍ଚିତ କରାଯାଉଥିଲା । ସଂସ୍କୃତର ଉତ୍ତର ଓଡ଼ିଆରେ ଲେଖିବା ପାଇଁ ସେ ଆନ୍ଦୋଳନ କରି ପରିଶେଷରେ ବିଶ୍ୱଭାରତୀ କର୍ତ୍ତୃପକ୍ଷଙ୍କଠାରୁ ଅନୁମତି ପାଇଲେ । ୧୮୭୦ ମସିହାରେ ପ୍ରଥମ ଗ୍ରାଜୁଏଟ୍ ଭାବରେ କଲିକତାରୁ ବି.ଏ. ପାସ୍ କରିବା ପରେ ଗାର୍ଡନରିଚ୍ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି ପାଇଥିଲେ । ଗରିବ ନିରକ୍ଷର ଲୋକମାନଙ୍କୁ ଶିକ୍ଷିତ କରିବା ନିମିତ୍ତ ଏକ ନୈଶ୍ୟ ବିଦ୍ୟାଳୟ ସ୍ଥାପନ କରିଥିଲେ । ଦରମା ଟଙ୍କାରେ ନିଜେ ଚଳି ଉକ୍ତ ବିଦ୍ୟାଳୟକୁ ପରିଚାଳନା କରୁଥିଲେ । ବହୁ କଷ୍ଟ ସତ୍ତ୍ୱେ ସେ ଆନନ୍ଦ ମନରେ ସେବା କରିବାକୁ ଭଲ ପାଉଥିଲେ । ଚାକିରି କରିବା ସମୟରେ ସେ ପାଠପଢାରେ ନିୟୋଜିତ ରହି ୧୮୭୩ ମସିହାରେ ପ୍ରଥମ ଓଡ଼ିଆ ଭାବେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଏବଂ ୧୮୭୮ ମସିହାରେ ବି.ଏଲ୍. (ଆଇନ୍ ପାସ୍) ଉପାଧି ଲାଭ କରିଥିଲେ ।

କଲିକତାରେ ବିଶ୍ୱଭାରତୀରେ ପଢିଲା ବେଳେ ସୌଦାମିନୀ ନାମକ ଏକ ବଙ୍ଗୀୟ ଝିଅକୁ ବିବାହ କରିଥିଲେ । ତାଙ୍କର ଦାମ୍ପତ୍ୟ ଜୀବନ ବେଶିଦିନ ସ୍ଥାୟୀ ହୋଇପାରିନଥିଲା । କାରଣ ସୌଦାମିନୀଙ୍କର ବିବାହ ପାଞ୍ଚ ବର୍ଷ ନ ପୂରୁଣୁ ତାଙ୍କର ପରଲୋକ ହୋଇଯାଇଥିଲା । ସୌଦାମିନୀ ଜଣେ ଉଦାରମୟୀ ଧର୍ମପରାୟଣା ଓ ପତିବ୍ରତା ନାରୀ ଥିଲେ । ତାଙ୍କର ମୃତ୍ୟୁ ପରେ ମଧୁସୂଦନ ଆଉ ଦ୍ୱିତୀୟ ବିବାହ କରିନଥିଲେ । ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିବା ଅନୁଭବ କରି ସେ କଲିକତା ଛାଡି କଟକ ଅଦାଲତରେ ଓକିଲାତି କରିବା ଆରମ୍ଭ କଲେ । ସେତେବେଳେ କଟକ ଅଦାଲତରେ ବଙ୍ଗାଳୀ ଓକିଲମାନଙ୍କର ପ୍ରାଧାନ୍ୟ ଖୁବ୍ ଥିଲା । ତଥାପି ସେ ଧୈର୍ଯ୍ୟହରା ନ ହୋଇ ବହୁ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମା ଲଢି କୃତକାର୍ଯ୍ୟ ହୋଇଥିଲେ । ଓକିଲାତି ବ୍ୟତୀତ ମଧୁବାବୁ କିଛି ବର୍ଷ ରେଭେନ୍ସା କଲେଜରେ ଆଇନ୍ ଅଧ୍ୟାପକ ଭାବରେ କାର୍ଯ୍ୟ କରିଥିଲେ । ୧୮୮୭ ମସିହାଠାରୁ କଲିକତା ହାଇକୋର୍ଟରେ ଓକିଲ ଭାବେ କାର୍ଯ୍ୟ କରି ଓଡ଼ିଆମାନଙ୍କର ଅତି ପ୍ରିୟ ମଧୁ ବାରିଷ୍ଟର ଭାବରେ ପରିଚିତ ହୋଇଥିଲେ ।

ମଧୁସୂଦନ ୧୮୯୭ ମସିହାରେ ପ୍ରଥମ ଓଡ଼ିଆ ଭାବରେ ବିଲାତ ଯାତ୍ରା କରିଥିଲେ । ସେତେବେଳେ ଇଂଲଣ୍ଡକୁ ବିଲାତ କୁହାଯାଉଥିଲା ଏବଂ ଭାରତ ଇଂରେଜ ଶାସନାଧୀନ ଥିଲା । ତେଣୁ ଶାସକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ସେଠାରେ ଏକ ପ୍ରଦର୍ଶନୀରେ ରୁପା ତାରକସି କାମ, ହାତୀଦାନ୍ତ, ସିଙ୍ଗ କାମ, ସରୁ ସୂତାର ଲୁଗା ଏବଂ ଶାଢୀ, ପ୍ରାଚୀନ ମନ୍ଦିରର ସୂକ୍ଷ୍ମ କଳା, କୁଟିକାମ ଓ ବଣିଆମାନଙ୍କର ବିଭିନ୍ନ ଅଳଙ୍କାର ପ୍ରଦର୍ଶିତ କରାଯାଇଥିଲା । ବିଲାତରେ ପ୍ରାୟ ୮ ମାସ ରହି ଓଡ଼ିଆ ଜାତି ସମ୍ପର୍କରେ ଶାସନବର୍ଗଙ୍କ ସହିତ ଆଲୋଚନା ବେଳେ କାରିଗରୀ ଶିଳ୍ପର ଆର୍ଥିକ ଅବସ୍ଥାର ଉନ୍ନତି ଓ ପ୍ରତିବର୍ଷ ବନ୍ୟା ଦ୍ୱାରା ଘଟୁଥିବା କ୍ଷୟକ୍ଷତି ସମ୍ବନ୍ଧରେ ଇଂରେଜ ସରକାରଙ୍କୁ ଅବଗତ କରାଇଥିଲେ, ଯାହାଫଳରେ କି ତାଙ୍କର ବ୍ୟକ୍ତିତ୍ୱରେ ଇଂରେଜ ସରକାର ମୁଗ୍ଧ ହୋଇ ତାଙ୍କୁ ସି.ଆଇ.ଇ. (Companion of the Indian Empire) ପଦବୀ ପ୍ରଦାନ କରିଥିଲେ ।

ସେତେବେଳେ ଓଡ଼ିଶାର ସ୍ୱତନ୍ତ୍ର ପରିଚୟ ନଥିଲା । ଏହାର କିଛି ଅଂଶ ପଶ୍ଚିମବଙ୍ଗ, ବିହାର ଓ ମଧ୍ୟପ୍ରଦେଶ ସହିତ ମିଶି ରହିଥିଲା । ଏହି ଖଣ୍ଡବିଖଣ୍ଡିତ ଉତ୍କଳକୁ ଏକତ୍ରିତ କରିବା ଉଦ୍ଦେଶ୍ୟରେ ମଧୁବାବୁ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଗଠନ କରିଥିଲେ । ଏହାର ପ୍ରାରମ୍ଭିକ ଅଧିବେଶନ କଟକସ୍ଥ କନିକା ରାଜବାଟୀରେ ବସିଥିଲା । ଏଥିରେ ପ୍ରାକୃତିକ ଉତ୍କଳର ଏକତ୍ରିକରଣ, କୃଷି, ବାଣିଜ୍ୟ ଓ ଶିଳ୍ପର ଉନ୍ନତିସାଧନ ଏବଂ ଶିକ୍ଷା ସାହିତ୍ୟର ପ୍ରସାର ଉପରେ ଆଲୋକପାତ

କରାଯାଇଥିଲା । ଦେଶ ଓ ଜାତି ପାଇଁ ଅନେକ କିଛି କରିବାର କଳ୍ପନା ମନରେ ଥିଲେ ମଧ୍ୟ ଦେଶର ତତ୍କାଳୀନ ବେଷ୍ଟନୀ ପ୍ରତିବନ୍ଧକ ହୋଇଥିଲା । ଏହି ସମ୍ମିଳନୀ ଥିଲା ଉତ୍କଳର ଜାତୀୟ ଜାଗରଣର ପଥ ପ୍ରଦର୍ଶକ । ଏହି ସଭାରେ ଉତ୍କଳୀୟ, ବଙ୍ଗୀୟ, ତେଲୁଗୁ, ରାଜପୁତ ଓ ମାରୁୱାଡ଼ି ପ୍ରଭୃତି ବିଭିନ୍ନ ଜାତିର ପ୍ରତିନିଧିମାନେ ଉପସ୍ଥିତ ରହି ମଧୁବାବୁଙ୍କ ଭାଷଣ ଓ ପ୍ରସ୍ତାବ ଶୁଣିଲା ପରେ ତାଙ୍କର ଜାତିପ୍ରୀତି, ଦୂରଦୃଷ୍ଟିତା ଓ ମହାନୁଭବ ବ୍ୟକ୍ତିତ୍ୱର ପରିଚୟ ପାଇଥିଲେ ।

ମଧୁବାବୁ ୧୯୦୫ ମସିହାରେ 'ଉତ୍କଳ ଟ୍ୟାନେରୀ' ନାମକ ଏକ ଜୋତା କାରଖାନା କଟକର ଚାଉଳିଆଗଞ୍ଜଠାରେ ପ୍ରତିଷ୍ଠା କରିଥିଲେ । ଏହି କାରଖାନାରୁ ପ୍ରସ୍ତୁତ ସାମଗ୍ରୀଗୁଡ଼ିକ ଅତି ଉଚ୍ଚମାନ ଥିବାରୁ ଉତ୍କଳ ଟ୍ୟାନେରୀର ଜୋତାସବୁ ସରକାର, ସୈନ୍ୟମାନଙ୍କ ପାଇଁ କ୍ରୟ କରୁଥିଲେ । ମଧୁବାବୁଙ୍କ ବ୍ୟବସାୟରୁ ପ୍ରଚୁର ଆୟର ମନୋବୃତ୍ତି ନଥାଇ ସ୍ୱଦେଶୀ ଶିଳ୍ପର ପୁନର୍ଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ଖଣ୍ଡବିଖଣ୍ଡିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳରୁ ଓଡ଼ିଆ ଭାଷାକୁ ଉଠାଇ ଦେବାପାଇଁ ବଙ୍ଗାଳିମାନେ ଉଚ୍ଚପଦସ୍ଥ ଇଂରେଜ ଅଧିକାରୀଙ୍କୁ ପ୍ରବର୍ତ୍ତାଇ ଓଡ଼ିଆ ଭାଷାର ଲୋପ କରିବାକୁ ହୀନ ଚକ୍ରାନ୍ତ ଚଳାଇଥିଲେ । ପ୍ରଥମେ ସମ୍ବଲପୁରରୁ ଓଡ଼ିଆ ଭାଷା ଉଠିଯିବ ବୋଲି ଘୋଷଣା କରାଗଲା । ମଧୁସୂଦନ ଏହି ପ୍ରସ୍ତାବକୁ ଦୃଢଭାବରେ ବିରୋଧ କଲେ । ମାତୃଭୂମି, ମାତୃଭାଷାର ସୁରକ୍ଷା ପାଇଁ ମଧୁସୂଦନଙ୍କ ସ୍ୱର ସହିତ ବହୁ ବ୍ୟକ୍ତି ସ୍ୱର ମିଳାଇଲେ । ଇଂରେଜ ସରକାରଙ୍କର ହୀନ ଉଦ୍ୟମ ପଣ୍ଡ ହେଲା ।

ବିହାର - ଓଡ଼ିଶା ବ୍ୟବସ୍ଥାପକ ସଭାରେ ମଧୁବାବୁ ବହୁତ ଉଲ୍ଲେଖନୀୟ କାର୍ଯ୍ୟମାନ କରିଛନ୍ତି । ସେ ୧୯୧୩ ମସିହାରୁ ୧୯୨୩ ମସିହା ପର୍ଯ୍ୟନ୍ତ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ଜୁରୀ ବିଚାରର ପ୍ରସାର ଓ କଟକ ଇଂଜିନିୟରିଂ ସ୍କୁଲ୍ ସ୍ଥାପନା କରିବା ପାଇଁ ସେ ଅନେକ ଚେଷ୍ଟା କରିଥିଲେ । ସେ ମଧ୍ୟ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ୍‌ର ସବ୍‌କମିଟିରେ ରହି ଅନେକ କାମ ଏହି ବିଲ୍ ପାଇଁ କରିଥିଲେ । ଏହି ବ୍ୟବସ୍ଥାପକ ସଭାର ସଭ୍ୟ ଥିଲାବେଳେ ମଧୁବାବୁ ମଧ୍ୟ ୧୯୧୬ ମସିହାରେ ଅନୁଷ୍ଠିତ ନିଖିଳ ଭାରତ ଖ୍ରୀଷ୍ଟିଆନ୍ ସମ୍ମିଳନୀର ସଭାପତି ହୋଇଥିଲେ । ଏହି ସମ୍ମିଳନୀରେ ଖ୍ରୀଷ୍ଟିଆନମାନଙ୍କୁ ସେ କହିଥିଲେ ତୁମେ ଭାରତୀୟ, ତେଣୁ ଭାରତୀୟମାନଙ୍କର ଉନ୍ନତିର ଆନ୍ଦୋଳନରେ ପୂରା ଅଂଶୀଦାର ହେବା ଉଚିତ୍ । ୧୯୧୭ ମସିହାରେ ମଧୁବାବୁଙ୍କ ସମ୍ପାଦନାରେ 'ଓଡ଼ିଆ' ନାମକ ଏକ ଇଂରାଜୀ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ଓଡ଼ିଆ ଥିଲା ସେତେବେଳେ ଓଡ଼ିଶାର ଜନଜୀବନ, ସାମାଜିକ ଓ ରାଜନୈତିକ ଇତିହାସର ମୁଖପତ୍ର । ଓଡ଼ିଆରେ ପ୍ରକାଶିତ ତାଙ୍କର ପ୍ରବନ୍ଧ, ଟୀକା, ଟିପ୍ପଣୀ ପ୍ରଭୃତି ଅତ୍ୟନ୍ତ ଭାବଗର୍ଭକ ଓ ଚିତ୍ତାକର୍ଷକ ଥିଲା । ତାହା ମାଧ୍ୟମରେ ମଧୁବାବୁ ସମାଜର ବିଭିନ୍ନ ସମସ୍ୟା ସରକାର ତଥା ଅନ୍ୟମାନଙ୍କୁ ଜଣାଇବାକୁ ଚେଷ୍ଟା କରୁଥିଲେ । ତାଙ୍କର ଲିଖିତ ବହୁ କାବ୍ୟ ଓ ଗଳ୍ପ ମଧ୍ୟରୁ 'ଉତ୍କଳ ସନ୍ତାନ' କାବ୍ୟ ପଢିଲେ ଯେକୌଣସି ଓଡ଼ିଆ ଭାଷୀ ମନରେ ଅପୂର୍ବ ଦମ୍ଭ, ସାହସ ଓ ଉଦ୍ଦୀପନା ଭରି ଯାଉଥିଲା ।

ମଧୁବାବୁ ସବୁଥିରେ ଥିଲେ ପ୍ରଥମ ଓଡ଼ିଆ, ଯିଏକି ପ୍ରଥମ ଗ୍ରାଜୁଏଟ୍, ଏମ୍.ଏ, ବିଲାତ ଯାତ୍ରୀ, ଓକିଲ, ମନ୍ତ୍ରୀ, ବିଭିନ୍ନ ବ୍ୟବସ୍ଥାପକ ସଭାର ସଦସ୍ୟ ଓ ଖ୍ରୀଷ୍ଟିଆନ୍ ମଣ୍ଡଳର ସଭାପତି । ମଧୁବାବୁ ୧୯୨୧ ମସିହାରେ ମନ୍ତ୍ରୀ ହେଲେ ଓ ଉତ୍କଳର ସାଧାରଣ ନେତୃତ୍ୱରୁ ବିଦାୟ ନେଇଥିଲେ । ପ୍ରତ୍ୟକ୍ଷ ନେତୃତ୍ୱରୁ ବିଦାୟ ନେଇଥିଲେ ମଧ୍ୟ ଦେଶର ସୁଖ ଦୁଃଖରେ ସମବେଦନା ଜ୍ଞାପନ କରୁଥିଲେ । ସେ ମନ୍ତ୍ରୀ ହେଲାବେଳକୁ ଭାରତରେ ଜାତୀୟ ଆନ୍ଦୋଳନର ସ୍ରୋତ, ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ତୀବ୍ରରୁ ତୀବ୍ରତର ହେଉଥାଏ । ସ୍ୱଦେଶାନୁରାଗି

ସ୍ୱାଧୀନତାକାମୀ ଜନତା ଇଂରେଜ ସହ ଅସହଯୋଗ କରୁଥିଲା ବେଳେ ମଧୁସୂଦନ ମନ୍ତ୍ରୀ ପଦରେ ଆଉ ରହିବାକୁ ଉଚିତ୍ ମନେ ନ କରି ୧୯୨୩ ମସିହାରେ ମନ୍ତ୍ରୀପଦରୁ ଇସ୍ତଫା ଦେଲେ ।

ମଧୁବାବୁ ମଧ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ବହୁ ପରିଶ୍ରମ କରିଥିଲେ । ୧୯୨୭ ମସିହାରେ ଆସିଲେ ସାଇମନ୍ କମିଶନ । ମଧୁବାବୁ ଏବଂ ତାଙ୍କର ଅନ୍ୟ ସହଯୋଗୀ ବନ୍ଧୁମାନଙ୍କ ସହିତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଯଥାର୍ଥତା କମିଶନ ଆଗରେ ଦର୍ଶାଇଲେ । କମିଶନ ମଧ ଉତ୍କଳୀ ମାନଙ୍କ ଦାବି ଯଥାର୍ଥ ବୋଲି ହୃଦୟଙ୍ଗମ କଲେ । ୧୯୩୧ରେ ସରକାର, ଓଡନେଲ୍ କମିଟି ମାଧ୍ୟମରେ ଓଡ଼ିଶାର ନ୍ୟାଯ୍ୟ ଦାବି ସମ୍ପର୍କରେ ଅନୁସନ୍ଧାନ କଲେ । ଏହି ଓଡ଼ନେଲ୍ କମିଟିର ସୁପାରିସ୍ ଅନୁଯାୟୀ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇପାରିଲା । ୧୯୩୬ ମସିହା ଏପ୍ରିଲ୍ ପହିଲାରେ ମଧୁବାବୁଙ୍କର ସ୍ୱପ୍ନର ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟର ସମ୍ମାନ ହାସଲ କଲା । ମାତ୍ର ତାହା ପୂର୍ବରୁ ୧୯୩୪ ମସିହା ଫେବୃୟାରୀ ୪ ତାରିଖ ଦିନ ସେ ଉତ୍କଳବାସୀଙ୍କୁ ଶୋକ ସାଗରରେ ଭସାଇ ପରଲୋକ ଗମନ କଲେ । ଉତ୍କଳ ଭାଷା ଓ ସାହିତ୍ୟ ଏବଂ ଉତ୍କଳବାସୀଙ୍କ ଜାତୀୟତା ତଥା ଦେଶାତ୍ମବୋଧର ଉନ୍ନତି ନିମିତ୍ତ ତାଙ୍କର ସାଧନା ତାଙ୍କୁ କାଳ କାଳକୁ ଓଡ଼ିଶା ଇତିହାସରେ ଉତ୍କଳଗୌରବ ମଧୁସୂଦନ ନାମରେ ଅମର କରି ରଖିଥିବ, ଏଥିରେ ସନ୍ଦେହ ନାହିଁ ।

---

ପ୍ଲଟ ନଂ- ୧୨୯୧ (ଦ୍ୱିତୀୟ ପର୍ଯ୍ୟାୟ)
ଡୁମୁଡୁମା ହାଉସିଂବୋର୍ଡ କଲୋନୀ
ଡୁମୁଡୁମା, ଭୁବନେଶ୍ୱର -୭୫୧୦୧୯

## ‘ଉତ୍କଳ ପ୍ରସଙ୍ଗ’ ଏବଂ ‘ଓଡ଼ିଶା ରିଭ୍ୟୁ’ର ନୂତନ ଇ-ମେଲ୍ ଆଇ.ଡି.

ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ମାସିକ ପତ୍ରିକା ‘ଉତ୍କଳ ପ୍ରସଙ୍ଗ’ ଏବଂ ‘ଓଡ଼ିଶା ରିଭ୍ୟୁ’ର ଇ-ମେଲ୍ ଆଇ.ଡି. ବଦଳି ଯାଇଥିବାରୁ ପ୍ରକାଶନ ନିମନ୍ତେ ଲେଖାଗୁଡିକ ଏଣିକି ପ୍ରତ୍ୟେକ ମାସରେ ପୁରୁଣା ଇ-ମେଲ୍ ଆଇ.ଡି. ପରିବର୍ତ୍ତେ ନୂତନ ଇ-ମେଲ୍ ଆଇ.ଡି. uporipr@gmail.comରେ ପଠାଇବା ନିମନ୍ତେ ଲେଖକ/ଲେଖିକାମାନଙ୍କୁ ଅନୁରୋଧ କରାଯାଉଛି ।

ନିର୍ଦ୍ଦେଶକ
ସୂଚନା ଓ ଲୋକସମ୍ପର୍କ ବିଭାଗ
ଓଡ଼ିଶା ସରକାର

# ଓଡ଼ିଆ ଚଳଚ୍ଚିତ୍ରରେ ଓଡ଼ିଶୀ : ସ୍ୱର ଓ ତାଳରେ ଶାସ୍ତ୍ରୀୟ ସଂକଳ୍ପ

ସୁବ୍ରତ ଜେନା

ସଂଗୀତ,ଜୀବନର ଅମୃତ ସ୍ୱର । ନାଟ୍ୟ ଶାସ୍ତ୍ରରେ, ଅସ୍ତ୍ର ବି' ନୃତ୍ୟ, ଶସ୍ତ୍ର ବି' ନୃତ୍ୟ । ଶ୍ରୋତା ଓ ଦର୍ଶକଙ୍କୁ ଚିରକାଳ ଆକର୍ଷିତ କରିଆସିଛି ଏହାର ସ୍ୱର ଓ ତାଳ । କ୍ଲାସିକ ଓଡିଆ ଚଳଚ୍ଚିତ୍ରରେ ଆମେ ଶୁଣିଛୁ, ଓଡିଶୀ ସଂଗୀତର ମଧୁର ସ୍ୱର । କଳା କଳ୍ପନାରେ ଚିତ୍ରାୟିତ ହୋଇଛି ଓଡିଶୀ ନୃତ୍ୟର ନାନ୍ଦନିକତା । ଭାରତର ଆଠଗୋଟି ଶାସ୍ତ୍ରୀୟ ନାଚ ଭିତରୁ ଓଡିଶୀ ଗୋଟିଏ । ଶୈଳୀ ଓ ଲାଳିତ୍ୟରେ ଏହା ପାଞ୍ଚୋଟି ପର୍ଯ୍ୟାୟରେ କ୍ରମ ବିକଶିତ । ମଙ୍ଗଳା ଚରଣରେ ଶ୍ରୀଜଗନ୍ନାଥଙ୍କୁ ପୁଷ୍ପାଞ୍ଜଳି ଅର୍ପଣ କରି ପ୍ରଦର୍ଶିତ ହେଉଥିବା ଏ ନୃତ୍ୟ ପରମ୍ପରା ଖୁବ୍ ପ୍ରାଚୀନ । ମନ୍ଦିର କାନ୍ଥ ଓ ଗୁମ୍ଫାରେ ଖୋଦା ହୋଇଛି, ଓଡିଶୀ ନୃତ୍ୟର ଗୌରବୋଜ୍ଜ୍ୱଳ ଛବି । ପଥରରେ ପ୍ରାଣ ସଞ୍ଚାର କରିଛି ଏହି ଜୀବନ୍ତ କଳା । କାଳକୁ କଳରବରେ ଶୁଣାଉଛି, କଳିଙ୍ଗ କୀର୍ତ୍ତିର ଗୀତ । ମଞ୍ଚମାୟା ହେଉ କି' ଚଳଚ୍ଚିତ୍ର ପରଦା । ଏହା ଆମ ସଂସ୍କୃତିର ଅଭିନ୍ନ ଅଙ୍ଗ ପାଲଟି ଯାଇଛି ।

ଓଡିଆ ଚଳଚ୍ଚିତ୍ର ମୌସୁମୀ ପ୍ରବାହରେ ନୃତ୍ୟଶିଳ୍ପୀମାନେ, ମୁଦ୍ରା ଓ ଅଙ୍ଗ ଭଙ୍ଗୀରେ ଓଡିଶୀର ବୈଶିଷ୍ଟ୍ୟ ପ୍ରଦର୍ଶିତ କରିଛନ୍ତି । ନୃତ୍ୟଶିଳ୍ପୀଙ୍କ ନୃତ୍ୟ କଳାରେ ପ୍ରତିଧ୍ୱନିତ ହୋଇଛି ଓଡିଆ ପ୍ରାଣର ଅସ୍ମିତା । ରାସ ଦଳ ଦ୍ୱାରା ଛବି ନିର୍ମାଣର ବାସନାରୁ ନିର୍ମାଣ ହୋଇଛି, ପ୍ରଥମ ଓଡିଆ ଚଳଚ୍ଚିତ୍ର 'ସୀତା ବିବାହ' । ଏହାର ନିର୍ମାତା ପ୍ରଭୁପାଦ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ଥିଲେ ବୈଷ୍ଣବ ଧର୍ମର ପ୍ରବକ୍ତା । ୧୯୩୪ ମସିହାରେ ପରିକଳ୍ପିତ ହୋଇଥିଲା 'ସୀତା ବିବାହ'ର ନିର୍ମାଣ ଯୋଜନା । ୧୯୩୬ ମସିହା, ଅପ୍ରେଲ ୨୮ ତାରିଖରେ ଚଳଚ୍ଚିତ୍ରଟି ମୁକ୍ତିଲାଭ କରିଥିଲା । 'ସୀତା ବିବାହ' ଜନ୍ମ ଜାତକ ଗଣନାଠାରୁ ଚଳନ୍ତି ସମୟର ପୃଷ୍ଠା । ମଧ୍ୟଯୁଗରୁ ଆମ ସଂସ୍କୃତିର ମାଧ୍ୟମ ସାଜିଥିବା ଓଡିଶୀ, ଓଡିଆ ଚଳଚ୍ଚିତ୍ର ପରମ୍ପରାରେ ପାଲଟି ଯାଇଛି ପ୍ରମୁଖ ଅଂଶ ।

୧୯୫୦ ମସିହାର ସ୍ୱାଧୀନୋତ୍ତର ସମୟ । ଲୋକ ସଂଗୀତ ଓ ଶାସ୍ତ୍ରୀୟ ରାଗ ସଂଗମରେ ସଜା ହୋଇଥିଲା 'ଶ୍ରୀଜଗନ୍ନାଥ'ର ସଂଗୀତ । ଶ୍ରୋତା-ଦର୍ଶକ-ସତୀର୍ଥ ଖୋଜୁଥିଲେ ନୀରା । ବାଳକୃଷ୍ଣ ଦାଶଙ୍କ ସଂଯୋଜନାରେ କବି ମଂଜୁଳ କୃଷ୍ଣ ପ୍ରସାଦ ବସୁ ଲେଖିଲେ:

'ପିଆସୀରେ ନୀରା ଖୋଜୁ, କ୍ଷୀରା ଦେବି ମୁହିଁ ।
ଫେରାଇଦେ କ୍ଷୀରା ନୀରା, ମିଶା ମିଶି ନାହିଁ ।'

୧୦ଟି ଗୀତ 'ଶ୍ରୀଜଗନ୍ନାଥ' ଚଳଚ୍ଚିତ୍ରରେ ସଂଯୋଜିତ ହୋଇଛି । ପ୍ରମୁଖ ସଂଗୀତ ଓ ନୃତ୍ୟ ନିର୍ଦ୍ଦେଶକ ରଣଜିତ ରାୟ । ସାଂସ୍କୃତିକ ପ୍ରବାହରେ ଓଡିଶୀକୁ କରିଥିଲେ ରସଭୁକ୍ତ । ୧୯୪୯ ମସିହାରେ 'ଲଳିତା'ରେ ପ୍ରଦର୍ଶିତ ହୋଇଛି ଓଡିଶୀ ଲୀଳା । ପ୍ରଭୁ ନୀଳ ମାଡି ଆଉ ଲଳିତା ବଢାଇଛନ୍ତି, ପ୍ରଭୁଙ୍କ ନୀତି । ସରଣା, ସବରବାଳା, ଦେବଦାସୀ ରୂପେ ପ୍ରଭୁଙ୍କ ଛାମୁରେ କରିଛନ୍ତି ନୃତ୍ୟ ରଚନା । ଲଳିତା - ବିଦ୍ୟାପତିଙ୍କ ଉପାଖ୍ୟାନ ଆଧାରରେ ନିର୍ମିତ କଲ୍ୟାଣ ଗୁପ୍ତାଙ୍କ ଚଳଚ୍ଚିତ୍ର 'ଲଳିତା' । 'ଶ୍ରୀଜଗନ୍ନାଥ'ର ଚିତ୍ରନାଟ୍ୟ ଓ ସଂଳାପ ଲେଖି, ଚଳଚ୍ଚିତ୍ର ଜଗତକୁ ପ୍ରବେଶ

କରିଥିଲେ ଗୋପାଳ ଛୋଟରାୟ । 'ଲଳିତା'ର ଚିତ୍ରନାଟ୍ୟ, ଗୀତ ଓ ସଂଳାପ ଲେଖିଥିଲେ କାଳୀ ଚରଣ ପଟ୍ଟନାୟକ । ଓଡିଶୀ ସଂଗୀତଜ୍ଞ ଓ ନୃତ୍ୟ ବିଶାରଦ କାଳୀ ଚରଣ । ଲୀଳା ପ୍ରଦର୍ଶନ କ୍ଷେତ୍ରରେ ପ୍ରମୁଖ ପ୍ରତିଭା । ୧୯୬୪ ମସିହାରେ ଓଡିଶୀ ନୃତ୍ୟ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା କ୍ଷେତ୍ରରେ ଥିଲା, କାଳୀ ବାବୁଙ୍କ ଭଳି ଅନେକ ଦିଗ୍‌ଗଜ ସ୍ରଷ୍ଟାଙ୍କ ଉଦ୍ୟମ । କାଳୀ ଚରଣଙ୍କ ପ୍ରତିଭା 'ଲଳିତା'କୁ ଦେଇଥିଲା ଜୀବନ୍ୟାସ । ଚଳଚ୍ଚିତ୍ରର ଲାସ୍ୟମୟୀ ନାୟିକା ଥିଲେ ଉମା ବାନାର୍ଜୀ । ୧୯୪୩ ମସିହାରୁ ୧୯୫୩ ମସିହା ଭିତରେ ମଞ୍ଚରେ ଉମା ବାନାର୍ଜୀ ବୁଣିଥିଲେ ମାୟା ଜୋଛନା । ଏହା ପରେ 'ଷ୍ଟାର ଥିଏଟର୍ସ'ରେ କରୁଥିଲେ ଅଭିନୟ । 'ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ'ର ଚଳଚ୍ଚିତ୍ର'ଲଳିତା'ରେ ତାଙ୍କୁ ସୁଯୋଗ ଦେଇଥିଲେ, ଢେଙ୍କାନାଳର ରାଜପୁତ୍ର ଗୌରେନ୍ଦ୍ର ପ୍ରତାପ ସିଂହଦେଓ ।'ଲଳିତା'ରେ ଉମା ବାନାର୍ଜୀଙ୍କ ପାଦ ଶବ୍ଦ, ନୃତ୍ୟଶିଳ୍ପୀଙ୍କ ପାଇଁ ଖୋଲିଦେଲା ସମ୍ଭାବନାର ଦ୍ୱାର । ଗୌର ଗୋସ୍ୱାମୀ ଓ ସୁରେନ ପାଲ୍‌ଙ୍କ ସଂଗୀତରେ ଥିଲା, ଶାସ୍ତ୍ରୀୟ ରାଗର ମୂର୍ଚ୍ଛନା । ଅନାଦି ପ୍ରସାଦଙ୍କ ନୃତ୍ୟକଳା ତାଳରେ ଶ୍ରୀଜଗନ୍ନାଥଙ୍କୁ ସମର୍ପିତ ହୋଇଥିଲା, ଓଡିଶୀ ନୃତ୍ୟ- ନୈବେଦ୍ୟ ।

୧୯୪୯ ମସିହାରୁ ୧୯୫୧ ମସିହା । ଓଡିଆ ଚଳଚ୍ଚିତ୍ର ଜଗତରେ ପରିବର୍ତ୍ତନର ଧାରା ନିର୍ମାଣ ହେଉଥିଲା । ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସ ଓ କାଳୀ ଚରଣଙ୍କ ଲୀଳା ନାଟକରୁ ମୁକୁଳି, ଓଡିଆ ଚଳଚ୍ଚିତ୍ର ଖୋଜୁଥିଲା ନୂଆ ବାଟ । ସାଂସ୍କୃତିକ ଐତିହ୍ୟରେ ସାମିଲ ହେଉଥିଲା, ସାମାଜିକ ଜୀବନର ଛବି । ଆଗ୍ରହ ଓ ସଫଳତା ପାଇଁ ସଂଘର୍ଷ ସମୟରେ ମୁକ୍ତିଲାଭ କରିଥିଲା, କଲ୍ୟାଣ ଗୁପ୍ତାଙ୍କ ନିର୍ଦ୍ଦେଶିତ ୩ଟି ଚଳଚ୍ଚିତ୍ର । 'ଲଳିତା', 'ସପ୍ତଶଯ୍ୟା' ଓ 'ରୋଲସ୍-ଟୁ-ଏଇଟ୍' । ପ୍ରେମ,ସାମନ୍ତବାଦୀ ଓ ବିତ୍ତଶାଳୀଙ୍କ ବିରୋଧରେ-'ଜନତାଙ୍କ ମୃତ୍ୟୁ ନାହିଁ' ଜବାବୀ ଆହ୍ୱାନ ସହିତ ଚଳଚ୍ଚିତ୍ରରେ ପ୍ରଦର୍ଶିତ ହେଉଥିଲା- ଗାଁର ସରଳ ଜୀବନ । ଘର-ସଂସାରର ସୁଖ-ଦୁଃଖ । ୧୯୫୪ ମସିହାର ଦୁର୍ଗାପୂଜା ସମୟ । ମୁକ୍ତିଲାଭ କଲା ନିତାଇ ପାଲିତ ଓ ମନୋରଂଜନ ଦାସଙ୍କ ଯୁଗ୍ମ ନିର୍ଦ୍ଦେଶନାରେ 'କେଦାର ଗୌରୀ' । ଚଳଚ୍ଚିତ୍ରର ପୌରାଣିକ ଧାରାରେ ଥିଲା, ସାମାଜିକ ଜୀବନର କଥା । ଗୌର ଘୋଷଙ୍କ ନାୟିକା 'ଗୋରୀ' ଭୂମିକା ନିଭାଇ ଥିଲେ ବୀଣା ତଥା ସଂଯୁକ୍ତା ଦାସ । ବାଳକୃଷ୍ଣ ଦାଶ ଓ ଭୁବନେଶ୍ୱର ମିଶ୍ର 'କେଦାର ଗୌରୀ'ର ସଂଗୀତ ସଂଯୋଜନା କରିଥିଲେ । 'ସୁର ଭାରତୀ' ନାମରେ ନୃତ୍ୟ ନିର୍ଦ୍ଦେଶନା ଦେଇଥିଲେ 'ଆକାଶବାଣୀ'ର ସହକାରୀ ନିର୍ଦ୍ଦେଶକ ସୁରେନ୍ ମହାନ୍ତି । ୮ଟି ଗୀତର ସ୍ୱର ଲିପିରେ ସଜା ହୋଇଥିଲା 'ରାଧା ପିକଚର୍ସ'ର 'କେଦାର ଗୌରୀ' । ଗୋଟିଏ ଓଡିଶୀ ନୃତ୍ୟ ସଂଯୋଜିତ ହୋଇଥିଲା । 'ଚନ୍ଦ୍ରିକା ଛାୟା' ନାମରେ ଏହା ପ୍ରଦର୍ଶିତ କରିଥିଲେ ମିନତୀ ଦାସ ।

୧୯୫୮ ମସିହା,ଏପ୍ରିଲ ୩ ତାରିଖ । ମୁକ୍ତିଲାଭ କଲା ନିତାଇ ପାଲିତଙ୍କ ଚଳଚ୍ଚିତ୍ର ମା' । ନୃତ୍ୟ ଶିଳ୍ପୀ ଓ ଗୁରୁ ରୂପେ ଓଡିଆ ସିନେମା ଜଗତକୁ ଆସିଲେ କେଳୁ ଚରଣ ମହାପାତ୍ର । ରଘୁରାଜପୁର ଶିଳ୍ପୀ ଗ୍ରାମରେ କେଳୁ ବାବୁଙ୍କ ଜନ୍ମ । ମାତ୍ର ୨୮ ବର୍ଷ ବୟସରେ ଲକ୍ଷ୍ମୀପ୍ରିୟାଙ୍କୁ ବିବାହ କରିଥିଲେ । ଗୌର ଘୋଷଙ୍କ ଚିତ୍ରମ୍ ବ୍ୟାନରର 'ମା' ଜରିଆରେ କେଳୁ ବାବୁଙ୍କୁ ମିଳିଲା ସୁଯୋଗ । ଭୁବନେଶ୍ୱର ମିଶ୍ରଙ୍କ ସଂଗୀତ ମୂର୍ଚ୍ଛନାରେ ସଜା ହୋଇଥିଲା ଚଳଚ୍ଚିତ୍ର ମା' । କଣ୍ଠଶିଳ୍ପୀ ଭାବେ ଅକ୍ଷୟ ମହାନ୍ତି ଓ ପ୍ରଣବ ପଟ୍ଟନାୟକଙ୍କୁ ସୁଯୋଗ ଦେଇଥିଲେ ଭୁବନେଶ୍ୱର ମିଶ୍ର । ଗୌର-ପାର୍ବତୀଙ୍କ ଯୋଡିର ଏହି ଚଳଚ୍ଚିତ୍ରରେ ପ୍ରାୟ ୭ଟି ଭିନ୍ନ ସ୍ୱାଦର ଗୀତ ସଂଯୋଜିତ ହୋଇଥିଲା । ଲୋକଗୀତ 'ନୂଆ ନାଗର' ତାଳରେ ତାଳ ମିଳାଇ ଥିଲେ କେଳୁ ଚରଣ ଓ ଲକ୍ଷ୍ମୀପ୍ରିୟା । ଚଳଚ୍ଚିତ୍ର ଜଗତରେ ମା'ର ଅମାପ ଦୃଷ୍ଟିଠାରୁ ୧୯୮୭ ମସିହାରେ ମୁକ୍ତିଲାଭ କରିଥିବା 'ଜୟଦେବ'ର ସମୟ ସୀମା । କେଳୁ ବାବୁଙ୍କ ନୃତ୍ୟା ଶିକ୍ଷାରେ ନିର୍ମାଣ ହୋଇଛି - 'ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା', 'ମାଣିକ ଯୋଡି', 'ଜୀବନ ସାଥୀ', 'ଅମଡା ବାଟ', 'ଅରୁନ୍ଧତୀ', 'ଧରିତ୍ରୀ','ତଅପୋଇ', 'ଶ୍ରୀକୃଷ୍ଣ ରାସଲୀଳା',

'ରାମାୟଣ' ଭଳି ଲୋକପ୍ରିୟ ଚଳଚ୍ଚିତ୍ର । ଲୋକନୃତ୍ୟରୁ ଅର୍ପଣ ହୋଇଛି 'ଗୀତ ଗୋବିନ୍ଦ'ର କାନ୍ତ -କୋମଳ ଆଦି ରସ । ପଦ୍ୟକୁ ନୃତ୍ୟ କଳାରେ ସଜାଇବାର ଅଦମ୍ୟ ଗୁରୁପଣ ଦେଖାଇଛନ୍ତି କେଳୁ ଚରଣ ମହାପାତ୍ର ।

'ସଜନୀରେ କାହିଁ ଗଲେ ଶ୍ୟାମ ।
ସତେ କି' ବିଧି ହେଲା ବାମ ।

୧୯୭୫ ମସିହାରେ ମୁକ୍ତିଲାଭ କରିଥିଲା ଚଳଚ୍ଚିତ୍ର 'ସମୟ' । ଏଥିରେ ଶୁଣିବାକୁ ମିଳିଥିଲା ଉପରୋକ୍ତ ମନଛୁଆଁ ଗୀତଟି । ଗଣେଶ ମହାପାତ୍ରଙ୍କ ଗୀତଟି ସୁମନକଲ୍ୟାଣପୁରଙ୍କ କଣ୍ଠରେ ରେକର୍ଡ ହୋଇଥିଲା । ଭୁବନ-ହରି ନାମରେ ସଂଗୀତ ସଜାଇ ଥିଲେ ଭୁବନେଶ୍ୱର ମିଶ୍ର ଓ ହରି ପ୍ରସାଦ ଚୌରାସିଆ । ସୁପ୍ରସିଦ୍ଧ ହିନ୍ଦୁସ୍ତାନୀ ବାଦକ ହରି ପ୍ରସାଦ ଚୌରାସିଆ । ବଂଶୀରେ ତୋଳି ପାରନ୍ତି ବିଭୁ ମୂର୍ଚ୍ଛନା । ସଂଗୀତଜ୍ଞ ଭୁବନେଶ୍ୱର ମିଶ୍ର ଓ ହରି ପ୍ରସାଦ ଚୌରାସିଆ ସାଥୀ ହୋଇ ଅନେକ ଚଳଚ୍ଚିତ୍ରରେ ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି । ଭୁବନ-ହରିଙ୍କ ସଂଗୀତର ସ୍ୱର 'ଗପ ହେଲେ ବି ସତ, ଅନୁରାଗ ଓ ବାଟ ଅବାଟ' ଭଳି ଚଳଚ୍ଚିତ୍ରରେ ଶୁଣିବାକୁ ମିଳିଛି ।

ପରିଶ୍ରମର ସ୍ୱେଦରେ ଫଳିଥାଏ ସଂସ୍କୃତିର ଅମୃତ ଫଳ । ଆମ କଳା, ସଂସ୍କୃତିର କ୍ଷେତ ଜଗିଥିବା ଏମିତି ଜଣେ ମଣିଷ ବାବୁଲାଲ ଦୋଶୀ । ୧୯୫୨ ମସିହାରେ କଟକରେ ସେ ଏକ କଳା ବିକାଶ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଓଡିଶୀ ସଂଗୀତ ଓ ନୃତ୍ୟର ପ୍ରଚାର-ପ୍ରସାର ପାଇଁ କାମ କରୁଥିଲେ । ୧୯୫୩ ମସିହାରୁ ୧୯୬୫ ମସିହା ପର୍ଯ୍ୟନ୍ତ ବାବୁଲାଲ୍'ଙ୍କ କଳା ବିକାଶ କେନ୍ଦ୍ରରେ ନୃତ୍ୟ ଶିକ୍ଷା ଦେଉଥିଲେ ଗୁରୁ କେଳୁ ଚରଣ ମହାପାତ୍ର । ୧୯୬୨ ମସିହା ବେଳକୁ ଚଳଚ୍ଚିତ୍ର ନିର୍ମାଣ ପ୍ରତି ଆଗ୍ରହୀ ହୋଇ ବାବୁଲାଲ୍ ଦୋଶୀ ନିର୍ମାଣ କରିଥିଲେ 'ଅମଡା ବାଟ' । ଅମର ଗାଙ୍ଗୁଲୀଙ୍କ ନିର୍ଦ୍ଦେଶନାରେ ନିର୍ମାଣ ହୋଇଥିଲା 'ଅମଡା ବାଟ' ଓ 'ଅଭିନେତ୍ରୀ' । ମୃଣାଳ ସେନଙ୍କ ନିର୍ଦ୍ଦେଶନାରେ ସୁଜାତା ଆନନ୍ଦଙ୍କ ପ୍ରଥମ ଚଳଚ୍ଚିତ୍ର 'ମାଟିର ମଣିଷ' । ଅମିତି ମୈତ୍ରଙ୍କ ନିର୍ଦ୍ଦେଶନାରେ 'ଅଦିନ ମେଘ' । ୩ଟି ଚଳଚ୍ଚିତ୍ରର ସଂଗୀତ ନିର୍ଦ୍ଦେଶକ ଥିଲେ ବାଳକୃଷ୍ଣ ଦାଶ । 'ମାଟିର ମଣିଷ'ର ସଂଗୀତ ସଜାଇ ଥିଲେ ଭୁବନେଶ୍ୱର ମିଶ୍ର । ବାବୁଲାଲ ଦୋଶୀଙ୍କ ଚଳଚ୍ଚିତ୍ର -'ଅମଡା ବାଟ' ଓ 'ଅଭିନେତ୍ରୀ'ଚଳଚ୍ଚିତ୍ରରେ ଲୋକନୃତ୍ୟ ଓ ଶାସ୍ତ୍ରୀୟ ନୃତ୍ୟର ସଂଗମ ଘଟାଇଥିଲେ କେଳୁ ଚରଣ ମହାପାତ୍ର ।

ଶାସ୍ତ୍ରୀୟ ନୃତ୍ୟରେ ଶ୍ରଦ୍ଧା ଆଦୃତ ସଂଯୁକ୍ତା ପାଣିଗ୍ରାହୀ । ତାଙ୍କ ପାଇଁ ଓଡିଆ ଚଳଚ୍ଚିତ୍ର ଜଗତର ଦ୍ୱାର ଖୋଲିଥିଲା କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କ ଚଳଚ୍ଚିତ୍ର'ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା' । ଏହା ଥିଲା, ଗଂଜାମ' ଜିଲ୍ଲାରୁ ପ୍ରଯୋଜିତ ହୋଇଥିବା ପ୍ରଥମ ଚଳଚ୍ଚିତ୍ର । 'ଉତ୍କଳ ଚଳଚ୍ଚିତ୍ର' ପ୍ରତିଷ୍ଠାନର ପ୍ରଯୋଜନାରେ ନିର୍ମିତ ଚଳଚ୍ଚିତ୍ରକୁ ନିର୍ଦ୍ଦେଶନା ଦେଇଥିଲେ ବିଶ୍ୱନାଥ ନାୟକ । ୧୯୫୯ ମସିହାରେ ମୁକ୍ତିଲାଭ କରିଥିଲା 'ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା' । ସଂଯୁକ୍ତାଙ୍କ ସହିତ ସମବେତ ନୃତ୍ୟାଂଶରେ ଥିଲେ ଜୟନ୍ତୀ ଘୋଷ,ଭୋଳାନାଥ ଭଟ୍ଟାଚାର୍ଯ୍ୟ, ଜୟଶ୍ରୀ ଓ ମାଧୁରୀ ।

'ଉଦୟ ପିକଚର୍ସ'ର ଚଳଚ୍ଚିତ୍ର 'ସୂର୍ଯ୍ୟମୁଖୀ । ୧୯୬୩ ମସିହାରେ 'ସୂର୍ଯ୍ୟମୁଖୀ'ର ମୁକ୍ତିଲାଭ କରିଥିଲା । ସୌମେନ୍ଦ୍ର ମିଶ୍ର ଥିଲେ ଏହା ପ୍ରଯୋଜକ ଓ ନାୟକ । ପ୍ରଫୁଲ୍ଲ ସେନଗୁପ୍ତାଙ୍କ ନିର୍ଦ୍ଦେଶନାରେ ଅଭିନୟ କରି ଚଳଚ୍ଚିତ୍ର ଜଗତକୁ ଆସିଥିଲେ ମିନତୀ ମିଶ୍ର । ପ୍ରଥମ କରି, ସୂର୍ଯ୍ୟମୁଖୀ'ର ସଂଗୀତ ସଜାଇ ଥିଲେ,ଶାନ୍ତନୁ ମହାପାତ୍ର । ମାନ୍ନା ଦେ'ଙ୍କ କଣ୍ଠରେ ଶୁଣାଇଲେ ଓଡିଆ ଗୀତ । 'ବଂଧୁରେ, ଆରେ ବଂଧୁ...'ଦୁନିଆରେ ସମୟର ନଈ ବହି ଯାଏ' । ଲତା ମଙ୍ଗେଶକରଙ୍କ କଣ୍ଠରୁ ଶୁଣିଲେ ଆଳାପନା : ସେଇ ଚୁନା ଚୁନା ତାରା ଫୁଲ ଆଜି' । କିଏ ଚୁମି ଚୁମି ଗଲା ହାଏ ହଜି'... ।

'ରୂପରାଗ'ର ଚଳଚ୍ଚିତ୍ର 'ଶ୍ରୀଲୋକନାଥ' ଲଗାଇଲା ଆକାଶରେ ରଂଗ । ଚୋରା ପବନେ ଖେଳାଇଲା ସୁରଭି । କୁଆଁରୀଙ୍କ ମନକୁ ଛୁଇଁ ଛୁଇଁ ଗଲା,ଫୁଲ ରସିଆର ଗୀତ । ୧୯୫୯ ମସିହା, ଅକ୍ଟୋବର ୧୬ ତାରିଖ । କୁମାର ପୂର୍ଣ୍ଣମୀ ତିଥି, ଶୁକ୍ରବାର ଦିନ ମୁକ୍ତିଲାଭ କଲା, ପ୍ରଫୁଲ୍ଲ ସେନଗୁପ୍ତାଙ୍କ

ଚଳଚ୍ଚିତ୍ର 'ଶ୍ରୀଲୋକନାଥ' । ଚଳଚ୍ଚିତ୍ରରେ ପ୍ରଥମ ଥର ପାଇଁ ସଂଯୋଜିତ ହୋଇଥିଲା, ସାପଙ୍କ ମହିମା ଦୃଶ୍ୟରାଜି । ସଂଗୀତରେ ଶୁଣିବାକୁ ମିଳିଥିଲା, ନିଃଶାର ଓ ଆଠତାଳି ଖାଣ୍ଟି ଓଡିଶୀ ତାଳ । ବାଳକୃଷ୍ଣ ଦାଶ ସଜାଇ ଥିଲେ ସଂଗୀତ । ସଂଧ୍ୟା ମୁଖାର୍ଜୀଙ୍କ କଣ୍ଠରେ ରେକର୍ଡ ହୋଇଥିଲା ଫୁଲ ରସିଆ ଗୀତ । ନିର୍ମଳା ମିଶ୍ର ଶୁଣାଇ ଥିଲେ, ଆଜି ଆକାଶେ କି ରଂଗ ଲାଗିଲା... ।

ରାଷ୍ଟ୍ରପତିଙ୍କ ରୌପ୍ୟ ପଦକ ପ୍ରାପ୍ତ ଚଳଚ୍ଚିତ୍ର 'ଶ୍ରୀଲୋକନାଥ' । ସ୍ୱତନ୍ତ୍ର ଶାସ୍ତ୍ରୀୟ ରାଗରେ ସଜା ଏହାର ସଂଗୀତ । ଓଡିଆ ଚଳଚ୍ଚିତ୍ରରେ ଇତିହାସ ସୃଷ୍ଟି କରିଥିଲା । ଅନେକ ଭିନ୍ନତାର ସ୍ୱରୂପ ବହନ କରୁଥିବା ଏ ଚଳଚ୍ଚିତ୍ରରେ ପରିବେଷିତ ହୋଇଥିଲା ଦସକାଠିଆ ଗୀତ । ପରିବେଷଣ କରିଥିଲେ, ଗାୟକ ରତ୍ନ ବୈଦ୍ୟନାଥ ଶର୍ମା ଓ ସାଥୀ ଭୀମସେନ ଶତପଥୀ । ଏମିତି ପାଲା, ଦାସକାଠିଆ ଓ ସଂକୀର୍ତ୍ତନରୁ ପାରମ୍ପରିକ ସଂଗୀତ ପ୍ରତି ଆକୃଷ୍ଟ ହୋଇଥିଲେ କଣ୍ଠଶିଳ୍ପୀ ଶ୍ୟାମାମଣି ଦେବୀ । ଷାଠିଏ ଦଶକରୁ ସେ ଶ୍ରୋତାଙ୍କୁ ଆକୃଷ୍ଟ କରିଛନ୍ତି , ନିଜର ସ୍ୱର ଓ ଶୈଳୀରେ । 'ନୂଆବୋହୂ' 'ଶ୍ରୀକୃଷ୍ଣ ରାସଲୀଳା' ଓ 'ଦସ୍ୟୁ ରତ୍ନାକର' ଭଳି ଚଳଚ୍ଚିତ୍ର ତାଙ୍କ ସ୍ୱରର ମୌଳିକତା ପ୍ରତିପାଦିତ ।

'ପ୍ରଳୟ ପୟୋଧି ଜଳେ' ପଂକ୍ତି ସ୍ନାନ । 'ଜୟ ଜଗଦୀଶ ହରେ'ରେ ହରି ଆଞ୍ଚା ଘୋଷା । 'ଦଶାବତାର' ପଦ୍ୟକୃତିଟି ସଂଯୋଜିତ ହୋଇଥିଲା, 'ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା'ରେ । ସ୍ୱର ସଂଯୋଜକ ଥିଲେ ନଚିକେତା ଘୋଷ । କଣ୍ଠଦାନ କରିଥିଲେ ସୁରମଣି ରଘୁନାଥ ପାଣିଗ୍ରାହୀ । 'ଦଶାବତାର'ରେ ନୃତ୍ୟ ନୈବେଦ୍ୟ ଅର୍ପଣ କରିଥିଲେ ସଂଯୁକ୍ତା ପାଣିଗ୍ରାହୀ । ପ୍ରଭାତ ମୁଖାର୍ଜୀଙ୍କ 'ଦସ୍ୟୁ ରତ୍ନାକର'ରେ ବି' ଅଭିନୟ କରିଥିଲେ ସଂଯୁକ୍ତା । ୧୯୬୨ ମସିହାରେ ମୁକ୍ତିଲାଭ କରିଥିଲା 'ଦସ୍ୟୁ ରତ୍ନାକର' । ୧୯୬୬ ମସିହାରେ ମୁକ୍ତିଲାଭ କଲା କା' । 'ସିଦ୍ଧାର୍ଥ' ନାମରେ ଏହାକୁ ନିର୍ଦ୍ଦେଶନା ଦେଇଥିଲେ ଗୌର, ପାର୍ବତୀ ଓ ରାମଚନ୍ଦ୍ର ଠାକୁର । ଗୁରୁ ମାୟାଧର ରାଉତଙ୍କ ନୃତ୍ୟ ସଂଯୋଜନାରେ ସଂଯୁକ୍ତା, ପାଦରେ ବାନ୍ଧିଥିଲେ ଘୁଙ୍ଗୁର । ୧୯୬୭ ମସିହାରେ ମୁକ୍ତିଲାଭ କଲା 'ଭାଇ ଭାଉଜ' । ଶରତ ପୂଜାରୀ, ମଣିମାଳା ଓ ପ୍ରିୟନାଥ ମିଶ୍ର'ସାରଥୀ' ସତୀର୍ଥଙ୍କ ଚଳଚ୍ଚିତ୍ର । 'ଭାଇ ଭାଉଜ'ର ଏକ ଦୃଶ୍ୟରେ ଖଂଜା ଯାଇଥିଲା ଦୁଷ୍ମନ୍ତ-ଶକୁନ୍ତଳା ନାଟିକା । ନୃତ୍ୟକଳା ରଚନା କରିଥିଲେ କେଳୁ ଚରଣ ମହାପାତ୍ର । ରାଜ ନର୍ତ୍ତକୀ ଭୂମିକାରେ ନୃତ୍ୟ କଳା ଦେଖାଇ ଥିଲେ ସଂଯୁକ୍ତା ପାଣିଗ୍ରାହୀ । 'ସୂର୍ଯ୍ୟମୁଖୀ'ରେ ପ୍ରଦର୍ଶିତ ହୋଇଥିଲା ମିନତୀ ମିଶ୍ରଙ୍କ ତେଜଦୀପ୍ତ ପ୍ରତିଭା । ଶାନ୍ତନୁ ମହାପାତ୍ରଙ୍କ ସଂଗୀତରେ ମିନତୀ ଦେଖାଇ ଥିଲେ, ଆଖି ଆଇନାରେ ପ୍ରେମ । ଘୁଙ୍ଗୁରର ତାଳରେ ଶୁଣାଇ ଥିଲେ,ଶାସ୍ତ୍ରୀୟ ସଂସ୍କାର । ୫ ବର୍ଷରେ ୫ଟି ଓଡିଆ ସିନେମା - 'ସୂର୍ଯ୍ୟମୁଖୀ',(୧୯୬୩) 'ଜୀବନ ସାଥୀ', (୧୯୬୪) 'ସାଧନା',(୧୯୬୪) 'ଭାଇ ଭାଉଜ' (୧୯୬୬) ଓ 'ଅରୁନ୍ଧତୀ (୧୯୬୮)ରେ ଅଭିନୟ କରିଛନ୍ତି ମିନତୀ ମିଶ୍ର । ମୌନ ଅଭିସାରରୁ ତୋଳିଛନ୍ତି ମଧୁର ମୂର୍ଚ୍ଛନା । ପରଦାରେ ପ୍ରତିଫଳିତ ହୋଇଛି ମିନତୀଙ୍କ ଅଭିନୟ ଓ ନୃତ୍ୟକଳା । 'ନିର୍ଜନ ସୈକତେ'- ଏଇ ଗୋଟିଏ ବଙ୍ଗଳା ଚଳଚ୍ଚିତ୍ରରେ ନୃତ୍ୟ କଳା ଦେଖାଇଛନ୍ତି ମିନତୀ । ତପନ ସିହ୍ନାଙ୍କ ଚଳଚ୍ଚିତ୍ର'ନିର୍ଜନ ସୈକତେ' ୧୯୬୩ ମସିହାରେ ମୁକ୍ତିଲାଭ କରିଥିଲା । ଚିତ୍ରଦୃଶ୍ୟରେ ଅଭିନୟ କରିଥିଲେ, ଅନୀଲ ଚାଟାର୍ଜୀ, ଶର୍ମିଳା ଟାଗୋର, ଛାୟା ଦେବୀ ଓ ରୁମା ଗୁହାଙ୍କ ଭଳି କଳାକାର । ଚଳଚ୍ଚିତ୍ରରେ କେଳୁ ଚରଣଙ୍କ କଲ୍ୟାଣୀ - ପଲ୍ଲବୀ ରାଗରେ ନୃତ୍ୟ ପ୍ରଦର୍ଶନ କରିଥିଲେ ମିନତୀ ମିଶ୍ର ।

ସାଧନା ଥିଲେ ନିଶ୍ଚୟ ମିଳେ ସିଦ୍ଧି । ପୂର୍ଣ୍ଣ ହୁଏ, ଅଧାଲେଖା ପଦ୍ୟପଂକ୍ତି । ଭକ୍ତ ବତ୍ସଳ ଶ୍ରୀ ପ୍ରଭୁ ସ୍ୱୟଂ ଲେଖାଇ ନିଅନ୍ତି ।

ଭକ୍ତିର ଏମିତି ଶକ୍ତି ପର୍ବ 'ଗୀତଗୋବିନ୍ଦ' । ଯାହାର ରଚୟିତା ଦ୍ୱାଦଶ ଶତାବ୍ଦୀର କବି ଜୟଦେବ । ଜୟଦେବଙ୍କ ଜୀବନୀ ଓ 'ଗୀତ ଗୋବିନ୍ଦ'ର ବିଶ୍ଳେଷଣ ଆଜି ବି' ରସଗ୍ରାହୀ ପାଠକଙ୍କ ପାଇଁ ଆଗ୍ରହର ବିଷୟ ।

'ଗୀତଗୋବିନ୍ଦ'ର ପ୍ରତି ଅଷ୍ଟପଦୀରେ ଅଛି ଓଡିଶୀର ରାଗ ଓ ତାଳ । ରାଧା-କୃଷ୍ଣଙ୍କ ରାସଲୀଳାର ରସ । ଜୟଦେବଙ୍କ ଜୀବନୀ ଓ କାବ୍ୟ ସାଧନାକୁ ଆଧାର କରି ନିର୍ମାଣ ହୋଇଛି ୨ଟି ଚଳଚ୍ଚିତ୍ର । ୧୯୬୩ ମସିହାରେ ମୁକ୍ତିଲାଭ କରିଥିଲା ବ୍ୟୋମକେଶ ତ୍ରିପାଠୀଙ୍କ 'ଜୟଦେବ' । ୧୩ଟି ଶାସ୍ତ୍ରୀୟ ରାଗ ସଂରଚନାରେ ସଜା ହୋଇଥିଲା ଚଳଚ୍ଚିତ୍ରଟି । ସଂଗୀତ ପରିଚାଳନା କରିଥିଲେ ବାଳକୃଷ୍ଣ ଦାଶ । ନୃତ୍ୟାଂଶରେ ଥିଲେ ଓଡିଶୀ ନୃତ୍ୟଶିଳ୍ପୀ ଡକ୍ଟର ମିନତୀ ଦାସ । ୧୯୮୭ ମସିହାରେ ମୁକ୍ତିଲାଭ କରିଥିଲା, କବି ସଚ୍ଚି ରାଉତରାୟଙ୍କ 'ଜୟଦେବ' । 'ଜୟଦେବ'ର ପଦ୍ମାବତୀ ସାଜିଥିଲେ ଷୋଳ ବୟସୀ ଶର୍ମିଲା ବିଶ୍ୱାସ । ବିଶ୍ୱାସର ବେଭାରରେ ବାଢିଥିଲେ ନୃତ୍ୟକଳା । 'ଗୀତ ଗୋବିନ୍ଦ'ର ଛତ୍ରେ ଛତ୍ରେ ପ୍ରବାହିତ ରାଧାକୃଷ୍ଣଙ୍କ ପ୍ରେମ ଲୀଳାର ରସ । 'ଗୀତ ଗୋବିନ୍ଦ' ପଦ୍ୟ ଭଳି ଓଡିଶୀ ଆମ ସଂସ୍କୃତି ଓ ଐତିହ୍ୟର ସମ୍ପଦ । ଶ୍ରୀଜଗନ୍ନାଥ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ । ଚଳଚ୍ଚିତ୍ର 'ବସନ୍ତ ରାସ'ରେ ଓଡିଶୀର ରାଗ-ତାଳ ନ'ଥିଲା । ସଜା ହୋଇଥିଲା ରାସକୁଞ୍ଜ । ସଂଚାଳିତ ହୋଇଥିଲା ରାସ । 'ବଂଶୀ ବିଳାସ'ର ଉପହାର 'ବସନ୍ତ ରାସ' । ଗୁରୁ ଦାସ ଓ ବଂଶୀଧର ପଣ୍ଡାଙ୍କ ନିର୍ଦ୍ଦେଶିତ ଚଳଚ୍ଚିତ୍ର । ୧୯୮୪ ମସିହାରେ ଏହି ସଂଗୀତଭିତ୍ତିକ ଚଳଚ୍ଚିତ୍ରଟି ମୁକ୍ତିଲାଭ କରିଥିଲା । ନୃତ୍ୟ ନିର୍ଦ୍ଦେଶକ ବିମ୍ବାଧର ଦାସ ପରିଚାଳନା କରିଥିଲେ ରାସ ଉତ୍ସବ । କୃଷ୍ଣ ଓ ଗୋପୀଙ୍କ ଲୀଳା । 'ବସନ୍ତ ରାସ'ର ସଂଗୀତ ସଂଯୋଜନା କରିଥିଲେ ସାଂସ୍କୃତିକ ଯୋଦ୍ଧା ବାଳକୃଷ୍ଣ ଦାଶ । ତାଙ୍କ ସ୍ୱରରେ ଥିଲା ସମୁଦ୍ରର ଶୋଷ । 'ଶ୍ରୀଜଗନ୍ନାଥ'ରୁ 'ବସନ୍ତ ରାସ' । ୧୮ ଟି ସିନେମାରେ ବାଳକୃଷ୍ଣ ଦାଶ ଶୁଣାଇଛନ୍ତି ସଂଗୀତ । ତାଙ୍କ ବସନ୍ତ ରାଗ ପଲ୍ଲବୀ ପାଇଁ ଓଡିଶୀ ନୃତ୍ୟ ହୋଇଛି ପଲ୍ଲବୀତ । ଚଳଚ୍ଚିତ୍ର 'ଶ୍ରୀକୃଷ୍ଣ ରାସ ଲୀଳା' ଓ 'ମଥୁରା ବିଜୟ', 'କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ'ରେ ମଧ୍ୟ ରାସ ପ୍ରସଙ୍ଗ ପ୍ରଦର୍ଶିତ ହୋଇଛି ।

'ମଥୁରା ବିଜୟ'ରେ ଶବ୍ଦର ସଂସ୍କାର, ଏହାର ଗୀତ ଓ ସଂଗୀତରେ ସୃଷ୍ଟି କରିଥିଲା ଶାସ୍ତ୍ରୀୟତାର ପରମ୍ପରା । ୧୯୭୮ ମସିହାରେ ମୁକ୍ତିଲାଭ କଲା ରଘୁନାଥ ମିଶ୍ରଙ୍କ ଚଳଚ୍ଚିତ୍ର 'କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ' । କାବ୍ୟିକତାରେ ଶବ୍ଦ ସମୁଦ୍ର ପହଁରିଥିବା ଉପେନ୍ଦ୍ର ଭଞ୍ଜଙ୍କ 'ଜୀବନଗାଥା' ଚଳଚ୍ଚିତ୍ର 'କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ' । ଏହାର ନିର୍ଦ୍ଦେଶନା ଭାର ସମ୍ଭାଳି ଥିଲେ ଏନ୍.ଗୋପାଳକୃଷ୍ଣ ।

ଏଚ୍.ପି ଗୀତା ଓ ଜଗନ୍ନାଥ ପାଣିଗ୍ରାହୀଙ୍କ କଣ୍ଠରେ ରେକର୍ଡ ହୋଇଥିଲା ଉପେନ୍ଦ୍ର ଭଞ୍ଜଙ୍କ ଚଉପଦୀ :'ମଲ୍ଲୀ ମାଳ ଶ୍ୟାମକୁ ଦେବି ମନ ତୋଷିବି' । ଏଇ ଗୋଟିଏ ଚଉପଦୀ ସହିତ କବି ସମ୍ରାଟ୍‌ଙ୍କ 'କାନ୍ତ ବିନା ଦିବା ରଜନୀ ସଜନୀ', 'ଦେଖି ନବ କାଳିକା ବକାଳିକା ମାଳିକା', 'ଆଜ ଦେଖିଲିରେ ନବୀନ ବୟସୀ ବାଳା', 'ଆହା ମୋ ଜୀବନ ଧନ' ଚଉପଦୀ ସଂଯୋଜିତ ହୋଇଥିଲା ଚଳଚ୍ଚିତ୍ରରେ । ରଘୁନାଥ ମିଶ୍ର ଲେଖିଥିଲେ ୨ଟି ଗୀତ ...। 'ଜନନୀ ଭବାନୀ... ଓ ଝୁଲ୍'ରେ ହାତୀ ଝୁଲ୍... । ଉପେନ୍ଦ୍ର କୁମାରଙ୍କ ସଂଗୀତର ଶାସ୍ତ୍ରୀୟ ଅସ୍ମିତାରେ ସଜା ହୋଇଥିଲା ଉକ୍ତ ଚଳଚ୍ଚିତ୍ରର ସଂଗୀତ ।

ପ୍ରେମ ଥିଲେ, ଦୁଃଖ ଥାଏ । ସଂଘର୍ଷ ଶିଖାଏ, ଦୁଃଖକୁ ଅତିକ୍ରମ କରିବାର କଳା । ଆମ ଚଳଚ୍ଚିତ୍ର କଳା-ସଂସ୍କୃତିରେ ଓଡିଶୀର ଗୌରବମୟ ଅଧ୍ୟାୟକୁ ଅନେକ ଶିଳ୍ପୀ ରଚନା କରିଛନ୍ତି । ନୃତ୍ୟ ଓ ସଂଗୀତ ଚର୍ଚ୍ଚାରେ ଆହୁରି ଉଜ୍ଜ୍ୱଳ କରିଛନ୍ତି ଏହାର ଛବି । ଗୁରୁମାନଙ୍କ ଶିକ୍ଷା ଓ ସାଧନା, ଅନେକ ଶିଳ୍ପୀଙ୍କୁ ବାଟ ଦେଖାଇଛି । ମଞ୍ଚ ଦେଇଛି ସୁଯୋଗ । ପରିଚୟ ଓ ପ୍ରତିଷ୍ଠା ଦେଇଛି । ଆଦିଗୁରୁ ପଙ୍କଜ ଚରଣ ଦାସଙ୍କ ସମୟରୁ ସ୍ମରଣ କଲେ ଦେଖିବା, ମଞ୍ଚରୁ, ସଂଗୀତ, ନୃତ୍ୟ ଓ ଚଳଚ୍ଚିତ୍ରର ଚୌହଦୀ ଭିତରକୁ ଆସିଛନ୍ତି,- ମାୟାଧର ରାଉତ, ଗୋପୀକୃଷ୍ଣ ବେହେରା, ଦେବ ପ୍ରସାଦ ଦାସ, ପ୍ରିୟମ୍ବଦା ମହାନ୍ତି ହେଜମାଦି, ରମଣୀ ରଂଜନ ଜେନା, ସୋନାଲ୍ ମାନସିଂହ, କୁମକୁମ୍ ମହାନ୍ତି, ଗଂଗାଧର ପ୍ରଧାନ, ଅରୁଣା ମହାନ୍ତି, କବିତା ଦ୍ୱିବେଦୀ, ପ୍ରତିଭା ପଣ୍ଡାଙ୍କ ଭଳି ନୃତ୍ୟ ଗୁରୁ । ଅନ୍ନପୂର୍ଣ୍ଣା ରଂଗମଞ୍ଚ, ଅନେକ ଗୁରୁ ଓ ନୃତ୍ୟଶିଳ୍ପୀଙ୍କ ପାଇଁ ତୀର୍ଥ କ୍ଷେତ୍ର । କିଏ, ଚଳଚ୍ଚିତ୍ରରେ ନିଜ କଳା ବାଣ୍ଟିଛନ୍ତି ।

ଆଉ କିଏ, ମଞ୍ଚପ୍ରତି ଚିରକାଳ ସମର୍ପିତ । ଏଭଳି ପ୍ରତିଷ୍ଠିତ କଳାପ୍ରାଣଙ୍କ ଭିତରେ ଅଛନ୍ତି ମୀରା ଦାସ, କସ୍ତୁରୀ ମହାପାତ୍ର, ସୁଜାତା ମହାପାତ୍ର, ଇଲିଆନା ସିତାରିଷ୍ଟଙ୍କ ଭଳି ପ୍ରତିଷ୍ଠିତ ନୃତ୍ୟଶିଳ୍ପୀ । ସେମାନଙ୍କ ନୂପୁର ନିକ୍ୱଣ । ସଂଗୀତ ଓ ନୃତ୍ୟର ସଂଗମ । କଳା ମଞ୍ଚରେ ଦେଖାଇଛି ଦମ୍ଭ । ୧୯୮୬ ମସିହା । ଓଡିଆ ଚଳଚ୍ଚିତ୍ର ଜଗତରେ ମୁକ୍ତିଲାଭ କଲା 'ବାଜେ ବଇଁଶୀ ନାଚେ ଘୁଙ୍ଘୁର' । କେଳୁ ଚରଣଙ୍କ ନୃତ୍ୟ ନିର୍ଦ୍ଦେଶନାରେ ପାଦରେ ଘୁଙ୍ଘୁର ବାନ୍ଧିଲେ ଅଭିନେତ୍ରୀ ସଂଗୀତା ଦାଶ । ଅନେକ ସିନେମାରେ ନୃତ୍ୟ ନିର୍ଦ୍ଦେଶକ ଦାୟିତ୍ୱ ତୁଲାଇଛନ୍ତି କେଳୁ ଚରଣ । ନୃତ୍ୟଶିଳ୍ପୀ ଓ ନାୟିକାଙ୍କୁ ବାଣ୍ଟିଛନ୍ତି ଶ୍ରୀଜଗନ୍ନାଥଙ୍କ ନୃତ୍ୟକଳା - କୈବଲ୍ୟ କଣିକା ।

'ବାଜେ ବଇଁଶୀ ନାଚେ ଘୁଙ୍ଘୁର' ଜନ୍ମ ଜାତକ ଗଣନା ଦିନଠାରୁ ଶାଶ୍ୱତ ଯୋଶୀଙ୍କ କ୍ଷୁଦ୍ର ପ୍ରାମାଣିକ ଚଳଚ୍ଚିତ୍ର 'ଚକା ଆଖି'ର ସମୟ ସୀମା । ଓଡିଆ ଚଳଚ୍ଚିତ୍ରରେ ଓଡିଶୀର ପାରମ୍ପରିକ ଓ ଧାର୍ମିକ ମହତ୍ତ୍ୱ ପ୍ରତିପାଦିତ ହୋଇଛି । ପଦ୍ୟ ଛନ୍ଦରେ ପ୍ରଦର୍ଶିତ ହୋଇଛି, ସାମାଜିକ ପ୍ରତିବଦ୍ଧତା । ନୃତ୍ୟାଙ୍ଗନାଙ୍କ ମୁଦ୍ରା ଓ ଦୃଷ୍ଟିଭଂଗୀ ଭେଦ ସତୀର୍ଥଙ୍କୁ ଆକୃଷ୍ଟ କରିଛି ।

ସଂସ୍କୃତିକ ସୋପାନରେ ଓଡିଶୀ, ସାରା ବିଶ୍ୱରେ ଖୁବ୍ ଆଦୃତ । ମଞ୍ଚ ଚର୍ଚ୍ଚା ଚୌହଦି ବାହାରେ ଚିତ୍ର-ଛାୟାରେ ମଧ୍ୟ ଏହା ପ୍ରଦର୍ଶିତ ।

king of pop ମାଇକେଲ୍ ଜ୍ୟାକସନ୍ ନିଜ 'ବ୍ଲାକ୍ ଔର ହ୍ୱାଇଟ୍' ଆଲବମ୍‌ରେ ଏହା ପ୍ରଦର୍ଶିତ କରାଇଥିଲେ । 'ଦୃଶ୍ୟ-ଦସ୍ତାବିଜ'ରେ ଦର୍ଶକ ଦେଖିଥିଲେ - ଶାସ୍ତ୍ରୀୟ ଓଡିଶୀର ଶକ୍ତି । ୧୯୮୯ ରୁ ୧୯୯୦ ଭିତରେ ହୋଇଥିଲା 'ବ୍ଲାକ୍ ଔର ହ୍ୱାଇଟ'ର ଅଧ୍ୟାୟ ଚୟନ । ୧୯୯୧ ମସିହାରେ ଏହା ମୁକ୍ତିଲାଭ କରିଥିଲା ।

ଯୋଗରେ ଜୀବନ । ଶାସ୍ତ୍ରୀୟ ସଂଗୀତ ଓ ନୃତ୍ୟରେ ଭରି ଉଠିଛି ଆମ ଚଳଚ୍ଚିତ୍ରର ସ୍ପନ୍ଦନ । ପୌରାଣିକ ଛବିରେ ପ୍ରଦର୍ଶିତ ହୋଇଥିଲା,ଓଡିଶୀର ରୀତିନୀତି । ଶାସ୍ତ୍ର ଓ ପୁରାଣ କହେ -କଳି ଯୁଗରେ ନାରାୟଣ, ପ୍ରଭୁ ଜଗନ୍ନାଥ । ଦେବୀ ମହାଲକ୍ଷ୍ମୀ, ସ୍ୱୟଂ ନାରାୟଣୀ । 'ଲକ୍ଷ୍ମୀ ପୁରାଣ' ବିଷୟ ଆଧାରରେ ସବ୍ୟସାଚୀ ମହାପାତ୍ର ନିର୍ମାଣ କରିଥିଲେ ଚଳଚ୍ଚିତ୍ର - 'ଜୟ ଜଗନ୍ନାଥ' । 'ନାରଦ ସମ୍ବାଦ'ରୁ ଆରମ୍ଭ ହୋଇଥିବା ଚଳଚ୍ଚିତ୍ରରେ ସଂଗୀତ ସଂଯୋଜନା କରିଥିଲେ ଅକ୍ଷୟ ମହାନ୍ତି । ଅକ୍ଷୟଙ୍କ ଅମ୍ଳାନ ସଂଗୀତରେ ଥିଲା ଶାସ୍ତ୍ର-ସମ୍ପଦର ମୌଳିକତା । ନୃତ୍ୟ ନିର୍ଦ୍ଦେଶନା ଦେଇଥିଲେ ଭବାନୀ, ବବି ଇସଲାମ୍ ଓ ରାଜୁ ନାଇଡୁ । 'କଥାରେ ନାହିଁ ଭରଷା'- ଗୀତଟିରେ ପ୍ରଦର୍ଶିତ ହୋଇଥିଲା କଥକ-ଓଡିଶୀ ଶୈଳୀର ନୃତ୍ୟ । ଚଳନ୍ତି ସମୟର ଚଳଚ୍ଚିତ୍ରରେ ବି' ଝଙ୍କାର ତୋଳୁଛି ଏଭଳି ବାଣୀ । ଦେବ ବିଦ୍ୟା ସାଧନା କ୍ଷେତ୍ରରେ ଶୁଭୁଛି, ଗୁରୁଙ୍କ ଅଗ୍ନୀବୀଣା । ୨୦୦୨ରେ ମୁକ୍ତିଲାଭ କରିଥିଲା ହିମାଂଶୁ ପରିଜାଙ୍କ ଚଳଚ୍ଚିତ୍ର - 'ନାରୀ ନୁହେଁ ତୁ ନାରାୟଣୀ' । ସ୍ୱରୂପ ନାୟକଙ୍କ ସଂଗୀତରେ ସଜା ହୋଇଥିଲା ନାରୀ ସ୍ୱରୂପ ଓ ସଂଘର୍ଷର ସ୍ୱର । ଏସ୍.କେ ମୂରଲୀଧରନଙ୍କ ନୃତ୍ୟ ତାଳରେ ଥିଲା, ଲୋକଶୈଳୀର ଆଧୁନିକତା । ଏଥିରେ ସିଦ୍ଧାନ୍ତ ମହାପାତ୍ରଙ୍କ ନାୟିକା ସାଜିଥିଲେ ରଚନା ବାନାର୍ଜୀ । ରଚନାଙ୍କ ନୃତ୍ୟରେ ପ୍ରଦର୍ଶିତ ହୋଇଥିଲା, ତୃପ୍ତି ଓ ତାଣ୍ଡବ । ସୀତାରାମ୍ ଅଗ୍ରୱାଲ୍‌ଙ୍କ ଚଳଚ୍ଚିତ୍ର 'ଆକାଶେ କି ରଂଗ ଲାଗିଲା । ଚଳଚ୍ଚିତ୍ରର ରଂଗ ରାଗରେ ପ୍ରଦର୍ଶିତ ହୋଇଛି ଓଡିଶୀ । ସୁନୀଲ ରାଉତ ଓ ଦିଲ୍ଲୀପ ପଣ୍ଡାଙ୍କ ଚଳଚ୍ଚିତ୍ର 'ହିରୋ:ପ୍ରେମ କଥା'ର ଶାସ୍ତ୍ରୀୟ ରାଗରେ ପ୍ରତିଫଳିତ ହୋଇଛି ଭକ୍ତି ଓ ଶକ୍ତି ।

୨୦୦୯ ମସିହା, ଜୁଲାଇ ୧୨ ତାରିଖରେ ମୁକ୍ତିଲାଭ କରିଥିଲା, 'ଆକାଶେ କି ରଂଗ ଲାଗିଲା' । ପାରିବାରିକ ଚଳଚ୍ଚିତ୍ରରେ ଅର୍ଚ୍ଚିତାଙ୍କ ନାୟକ ସାଜିଥିଲେ ଅନୁଭବ ମହାନ୍ତି । ବିକାଶ ଦାସ ସଜାଇ ଥିଲେ ଏହାର ସଂଗୀତ । ହୃଦୟକୁ ଛୁଇଁ ପାରୁଥିଲା ଶବ୍ଦର ମାଳି । ଅନୁଭବଙ୍କ ଭଉଣୀ ସାଜି ପାଦରେ ଘୁଙ୍ଘୁର ବାନ୍ଧିଥିଲେ ରାଲୀ ନନ୍ଦ । ତୋଳିଥିଲେ ଶାସ୍ତ୍ରୀୟ ଓଡିଶୀ ଛନ୍ଦ । ସଂକଟ ସମୟରେ, ପ୍ରେମର ଜ୍ୟୋତି ପ୍ରଜ୍ୱଳିତ କରିପାରେ ଓଡିଶୀ । ଚଞ୍ଚଳ ପାଦର ଘୁଙ୍ଘୁର, ଆଲୋକ- ତରଙ୍ଗ ଖେଳାଇ ଦେଇପାରେ ନିଃଶବ୍ଦ ନିଃଶ୍ୱାସରେ । ଯାହା ପ୍ରଦର୍ଶିତ ହୋଇଥିଲା 'ହିରୋ : ପ୍ରେମ କଥା'ରେ । ଦୀପକ କୁମାର ସଜାଇ ଥିଲେ' ଏହାର

ସଂଗୀତ । ଅରିନ୍ଦମ୍ ଓ ପ୍ରିୟାଙ୍କ ଯୋଡିର ଏହି ଚଳଚ୍ଚିତ୍ରରେ ଜଣେ ଓଡିଶୀ ନୃତ୍ୟଶିଳ୍ପୀ ଭୂମିକାରେ ଅଭିନୟ କରିଥିଲେ ପ୍ରିୟା । ପ୍ରେମ୍'ଗୋପୀଙ୍କ ନୃତ୍ୟ ନିର୍ଦ୍ଦେଶନାରେ ନାଚିଥିଲେ । ଅର୍ପଣ କରିଥିଲେ ଭକ୍ତିର ଶକ୍ତି- ଅର୍ଘ୍ୟ ।

ଯେଉଁ ପ୍ରେମରେ କଳଙ୍କ ନାହିଁ, ସିଏ କି ପ୍ରେମ ? ଯେଉଁ ପ୍ରେମରେ ମାନ – ଅଭିମାନ ନାହିଁ, ସିଏ କି ପ୍ରେମ? ହର ବାରିକଙ୍କ ସଂଳାପ ଶୁଭିଥିଲା, ଶ୍ରେୟା ଗାଙ୍ଗୁଲୀଙ୍କ କଣ୍ଠରେ । ବିକାଶ ଦାସଙ୍କ ସଂଗୀତ ଶୁଣାଇଲା, ମୋହନ ବଂଶୀ ଥରି ଉଠିଥିଲା କୁଞ୍ଜବନ । ନମିତା ଅଗ୍ରୱାଲ ଗାଇଥିଲେ : କାହ୍ନୁରେ କାହ୍ନୁରେ । ବଜାନା ତୁ ବଇଁଶୀରେ ।

ନା' ପାରିବନି ରାଧା, ଆଉ କଳଙ୍କ ସହିରେ ।'

'ଗୀତଟି,ଦର୍ଶକଙ୍କ ମନରେ ଭରି ଦେଇଥିଲା, ମଧୁ ମାଳତୀର ମହକ । ହୃଦୟରେ ସୃଷ୍ଟି କରିଥିଲା, କଦମ୍ବର ରୋମାଞ୍ଚ । ବଂଶୀ ସହ ତାଳ ଦେଇ ନାଚିଥିଲେ ଚଳଚ୍ଚିତ୍ରର ନାୟିକା ବର୍ଷା ପ୍ରିୟଦର୍ଶିନୀ । କଳଙ୍କର କଜ୍ଜ୍ୱଳ ପିନ୍ଧି ସାଜିଥିଲେ,ଗୋପ ନାଗର କାହ୍ନୁଙ୍କ ରାଧା । ଅନୁଭବ ଓ ବର୍ଷାଙ୍କ ଯୋଡିର ଚଳଚ୍ଚିତ୍ର 'ଆମ ଭିତରେ କିଛି' । ୨୦୧୦ ମସିହା, ଜୁନ୍ ୧୩ ତାରିଖରେ ମୁକ୍ତିଲାଭ କରିଥିଲା ।

ଅନୁରକ୍ତିରୁ ଭକ୍ତି । ଅଳଂକାର ଶାସ୍ତ୍ରରେ ପ୍ରଶଂସାର ନାମାନ୍ତର ହିଁ ବ୍ୟାଜସ୍ତୁତି । ମିତ ପାଇଁ ଯେଉଁ ସ୍ତୁତି କରିଥିଲେ ସୌମ୍ୟଦର୍ଶୀ ନାୟିକା ଅର୍ଚ୍ଚିତା । ନାୟକ 'ପଞ୍ଚମ'ର ଜୀବନ-ଶକ୍ତି ପାଇଁ ନେଇଥିଲେ ମହାପ୍ରଭୁଙ୍କ ପରୀକ୍ଷା । ଶଙ୍ଖ, ଘଣ୍ଟ ଓ ମୃଦଙ୍ଗ ଧ୍ୱନୀରେ ଶୁଣାଇ ଥିଲେ, ଓଡିଶୀର ମଙ୍ଗଳ ମହତ୍ତ୍ୱ । ଅକ୍ଷୟ ପରିଜା ଓ ପ୍ରଶାନ୍ତ ନନ୍ଦଙ୍କ ଚଳଚ୍ଚିତ୍ର 'ଥୁକୁଲ୍'ରେ ଏଭଳି ଦୃଶ୍ୟ ପ୍ରଦର୍ଶିତ ହୋଇଥିଲା । ଜଣେ ମୃଦଙ୍ଗ ବାଦକ ଓ ଓଡିଶୀ ନୃତ୍ୟଶିଳ୍ପୀଙ୍କ ପ୍ରେମ ଓ ଜୀବନ ଯୋଗ ଚିତ୍ରାୟିତ ହୋଇଥିଲା 'ଥୁକୁଲ୍'ରେ । ଅର୍ଚ୍ଚିତାଙ୍କ ସହିତ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ ବାବୁସାନ୍ ଓ ପ୍ରକୃତି ମିଶ୍ର । ଓଡିଶୀ ଶିଖୁଥିବା, ଝିଅଟିଏ ଦେବୀ । ଓଡିଶୀ ଟିକେ ନାଚିଦେଲେ ତା' ଖୁସି । ଓଡିଶୀ ନାଚରେ ତା' ମନକୁ ମିଳେ ଶାନ୍ତି । ହସ-ଖୁସିର ଏ ଜୀବନରେ କିନ୍ତୁ ଘଟିଯାଏ କିଛି ପାପ । ଯାହା ପ୍ରଦର୍ଶିତ ହୋଇଛି ତରଙ୍ଗ ସିନେ ପ୍ରଡକସନ୍ସ ନିବେଦିତ 'ପାପ'ରେ । କବିର ଦାସ ଓ ଅଶୋକ ପତିଙ୍କ ଚଳଚ୍ଚିତ୍ର 'ପାପ' । ଏଥିରେ ଓଡିଶୀ ନୃତ୍ୟଶିଳ୍ପୀ ଦେବୀ ସାଜିଥିଲେ ଏଲିନା ସାମନ୍ତରାୟ । ଯିଏ, ଦୁଃଖ ଯନ୍ତ୍ରଣାକୁ ସାଉଁଟି ଲଢୁଛି, ନିଜ ସ୍ୱପ୍ନ ଆଉ ସଂକଳ୍ପ ପାଇଁ ।

ସ୍ୱର ଓ ତାଳରେ ଶାସ୍ତ୍ରୀୟ ସଂକଳ୍ପ । ଆମ ଐତିହ୍ୟ, ପରମ୍ପରା ଓ ସଂସ୍କୃତିର ସୁରକ୍ଷା କବଚ । ସାର୍ଥକ ସେ ଜୀବନ । ଯେଉଁ ଜୀବନରେ ଘଟିଛି, କଳା-ସଂସ୍କୃତିର ସଂଗମ । ତ୍ରିଭଙ୍ଗୀ ଠାଣୀ ଓ ମୌଳିକ ଚଉକୋଣରେ ସ୍ୱତନ୍ତ୍ର ଓଡିଶୀ । ଓଡିଆ ଚଳଚ୍ଚିତ୍ରରେ ଏହାର ପ୍ରଭାବ ଥିଲା ଓ ଅଛି । ଆଶା କରିବା, ଭବିଷ୍ୟତରେ ମଧ୍ୟ ଓଡିଆ ଚଳଚ୍ଚିତ୍ରର କଳାତ୍ମକ କ୍ଷେତ୍ରକୁ ଏହା ସୌହାର୍ଯ୍ୟ ମଣ୍ଡିତ କରିବ ।

---

ହରିଦାସପୁର, ଯାଜପୁର
ପିନ୍- ୭୫୫୦୨୪

**ତଥ୍ୟ ସହାୟତା**

- ଭୀମ ସିଂହଙ୍କ 'ଓଡିଆ ଚଳଚ୍ଚିତ୍ରର ଅଜ୍ଞାତ ଅଧ୍ୟାୟ'
- 'ଉତ୍କଳ ପ୍ରସଙ୍ଗ' – VOL-LXXIX NO.୪ ନଭେମ୍ବର ୨୦୨୨ ସଂଖ୍ୟା ।
- 'ନିଶାନ୍ତ'୨୦୨୧ ଶୀତ ସଂଖ୍ୟା ।
- Marg Asia - winter 2020 issue.
- 'ଉଇକି ପିଡିଆ'ର ତଥ୍ୟ ଆଧାର ।
- odissi dance in odia films
- including a rare dance in lalita (1949)

– ସୂର୍ଯ୍ୟ ଦେଓ ଓ କେଦାର ମିଶ୍ରଙ୍କ ଆଲେଖ୍ୟ ତଥ୍ୟ । OTV, 'ଓଡିଶା ସମ୍ବାଦ' ଓ ବିଭିନ୍ନ ସମ୍ବାଦପତ୍ରରୁ ସଂଗୃହିତ ତଥ୍ୟ ।

# ଓଡ଼ିଆ କବିଙ୍କର ସ୍ୱଦେଶ ପ୍ରୀତି

ସୁଚିତ୍ରା ବେହେରା

ପବିତ୍ର ଓଡ଼ିଶା ମାଟିରେ ଜନ୍ମ ନେଇଥିବା କବିଗଣ ଏହାର ମାଟି, ପାଣି, ପବନ ଆଉ ଏହାର ପ୍ରତ୍ୟେକଟି ସୃଷ୍ଟିକୁ ହୃଦୟରୁ ଭଲପାଇ ଲେଖନୀରେ ଜୀବନ୍ତ ରୂପ ଦେଇଛନ୍ତି । ଓଡ଼ିଆ କବିଙ୍କର କାବ୍ୟିକ ଦୃଷ୍ଟିକୋଣ ତୀକ୍ଷ୍ଣ ଓ ସୁଦୂରପ୍ରସାରୀ । ଉତ୍କଳର କଳା, ସଂସ୍କୃତି, ପୁଣ୍ୟଭୂମି, ଐତିହ୍ୟ, ପ୍ରକୃତିର ସୌନ୍ଦର୍ଯ୍ୟ, ଭାଷା, ଭାସ୍କର୍ଯ୍ୟ, ପରମ୍ପରା, ଇତିହାସ, ଧର୍ମ ଆଦିରେ ବିମୁଗ୍ଧ କବି ଯେଉଁ ସାହିତ୍ୟ ସୌଧ ନିର୍ମାଣ କରିଛନ୍ତି, ସେଥିରେ ଗଭୀର ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ଜାତୀୟତା ଭାବ ଉଦ୍ରେକ ହୋଇ ଲେଖନୀଚାଳନା ହୋଇଥିଲେ ହେଁ ଏ ଦେଶ ଓ ଜାତି ପାଇଁ ଉତ୍ସର୍ଗୀକୃତ ହୋଇଥିବା କବିମାନେ ଚିର ସ୍ମରଣୀୟ ।

ଓଡ଼ିଆ କବିଙ୍କର ସ୍ୱଦେଶ ପ୍ରୀତି ଅସୀମ ଓ ଅତୁଳନୀୟ । ଉତ୍କଳର ସୌନ୍ଦର୍ଯ୍ୟରେ ଆତ୍ମହରା ହେବା ସହ ଦୁଃଖରେ ସମଦୁଃଖୀ ହୋଇଉଠିଛି ଓଡ଼ିଆ କବିଙ୍କର ଉଦାର ହୃଦୟ । ତା'ର ଚିତ୍ର ପ୍ରତିଫଳିତ ହୋଇଅଛି କବିତାରେ । ସ୍ୱଦେଶର ସୂକ୍ଷ୍ମ ବିପର୍ଯ୍ୟୟରେ ମଧ କବି ଅନ୍ତର ଦାରୁଣ ଆଘାତରେ ମ୍ରିୟମାଣ ହୋଇ ଜାତିକୁ ପ୍ରତ୍ୟେକ ଛତ୍ରେ ଛତ୍ରେ ପ୍ରେରଣା ଯୋଗାଇଛି । ଏହି ସୃଷ୍ଟିକୁ ସର୍ବଦା ସମୃଦ୍ଧ କରି ରଖିବା ହେଉଛି ମାନବ ଜାତିର କର୍ତ୍ତବ୍ୟ । ଉତ୍କଳ ଜନନୀ ପ୍ରତି ଏହା ଯଥାର୍ଥ ଅର୍ଘ୍ୟ । ଏହିପରି ଜାତୀୟତା ଭାବପ୍ରକାଶ ପାଇଛି ଓଡ଼ିଆ କବିଙ୍କର କବିତାରେ ।

ଓଡ଼ିଶାର ପ୍ରାଚୀନ ନାମ ଉତ୍କଳ । ସମୟ ସ୍ରୋତର ପ୍ରବହମାନ ଗତିପଥରେ ଏହି ନାମର ପରିବର୍ତ୍ତନ ଘଟିଥିଲେ ହେଁ ମୂଳ ସୃଜନର ସ୍ୱର୍ଣ୍ଣାଭ ଚିତ୍ର ସଦାସର୍ବଦା ଆଭାସିତ ହେଉଅଛି । ଓଡ଼ିଶା ମାଟିରେ ଜନ୍ମିତ ଓଡ଼ିଆ କବିଙ୍କର ଲେଖନୀରେ ସ୍ୱଦେଶ ଅର୍ଥାତ୍ ଉତ୍କଳ ପ୍ରୀତିର ଜୀବନ୍ତ ରୂପ ପ୍ରତ୍ୟେକ ଓଡ଼ିଆଙ୍କୁ ଜାତୀୟତାଭାବ ଅଭିମୁଖୀ କରିବାରେ ମାର୍ଗଦର୍ଶକ କହିବା ଯଥାର୍ଥ ଅଟେ ।

କବିବର ରାଧାନାଥ ଆଧୁନିକ ଓଡ଼ିଆ କବିତାର ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ଭାବେ ସ୍ୱନାମଧନ୍ୟ । ତାଙ୍କର ଉତ୍କଳପ୍ରୀତି ଥିଲା ଅପୂର୍ବ । ଜାତୀୟଭାବ ଚେତନାର ସେ ଥିଲେ ଉଦ୍‌ବାହକ । ମାତୃଭୂମିର ଗୌରବ ଗାନରେ ସେ ଥିଲେ ଶତମୁଖ । ଅତୀତ ଉତ୍କଳର ଗୌରବ ଓ ପୂର୍ବ ସ୍ମୃତିର ପବିତ୍ର କୀର୍ତ୍ତିରାଜିକୁ ସେ ତାଙ୍କର କାବ୍ୟକବିତାରେ ରୋମନ୍ଥନ କରିଛନ୍ତି । ସମଗ୍ର ବିଶ୍ୱରେ ଉତ୍କଳ ହେଉଛି ସର୍ବଶ୍ରେଷ୍ଠ ପୁଣ୍ୟସ୍ଥଳୀ । ଉତ୍କଳକୁ ବୀରଭୂମି, ଦେବଭୂମି, ଧର୍ମଭୂମି ଭାବରେ ସେ ତାଙ୍କ କାବ୍ୟକବିତାରେ ଗୁରୁତ୍ୱ ଦେଇଛନ୍ତି ।

ଉତ୍କଳର ପ୍ରକୃତି ବର୍ଣ୍ଣନାରେ ରାଧାନାଥଙ୍କର ଯେଉଁ ଜୀବନ୍ତ ଭାବ ପ୍ରକାଶ ପାଇଛି ସେଥିରୁ ଉତ୍କଳ ପ୍ରତି ତାଙ୍କର ଯଥେଷ୍ଟ ପ୍ରୀତିଭାବ ସ୍ପଷ୍ଟ ଅନୁମେୟ । କବିଙ୍କ ଭାଷାରେ –

'ସ୍ୱଭାବେ ଉତ୍କଳ ଶୋଭାର ନିଧାନ
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ ।'

ବ୍ରାହ୍ମବାଦୀ କବି ତଥା ଉତ୍କଳର ମଧୁପୁତ୍ର ମଧୁସୂଦନ ରାଓଙ୍କର ଉତ୍କଳ ପ୍ରୀତି ଥିଲା ଗଭୀରତମ । ତାଙ୍କର 'ଉତ୍କଳ

ଗାଥା' ୧୯୧୩ ଖ୍ରୀଷ୍ଟାବ୍ଦରେ କ୍ରାନ୍ତିକାରୀ ଉତ୍କଳ ସମ୍ମିଳନୀର ପ୍ରେରଣା ପ୍ରସୂତ ଗୀତିକବିତାର ଫଳଶ୍ରୁତି ବହନ କରିଛି । ଏହା କବିଙ୍କର ଉତ୍କଳ ପ୍ରୀତିତାର ବଳିଷ୍ଠ ନିଦର୍ଶନ । 'ଉତ୍କଳ ସଂଗୀତ' କବିତାରେ ଅତୀତ ଉତ୍କଳର ଐକିକ ପରମ୍ପରା ସମ୍ପର୍କରେ ଉଲ୍ଲେଖ କରି କହିଛନ୍ତି -

'ବାରେ ଡାକ ହେ ଉତ୍କଳ ସୁଖେ
ମା' ଉତ୍କଳେ ଭୂମି ଜନନୀ ।'

ଉତ୍କଳ ହେଉଛି ଧର୍ମକ୍ଷେତ୍ର । ବୌଦ୍ଧ, ଶୈବ, ଶାକ୍ତ ଆଦି ଧର୍ମର ଅପୂର୍ବ ସମନ୍ୱୟ ଘଟିଛି ଏହି ମାଟିରେ । ଏଠାରେ ବୌଦ୍ଧ ମୂର୍ତ୍ତି, ଶିବା ତୀର୍ଥ, ନୀଳାଚଳ ଭୂମି, ଭୁବନେଶ୍ୱର, କୋଣାର୍କର ଶିଳ୍ପକଳା, ଉତ୍କଳୀୟ ମାଟିରେ ସତ୍ୟ, ଜ୍ଞାନ, ଧର୍ମ ଓ କର୍ମରେ ବ୍ରତୀ ହେବା ପାଇଁ କବି ପ୍ରେରଣା ଦେଇଛନ୍ତି । ଉତ୍କଳର ଗୌରବ ଗାଥା ବର୍ଣ୍ଣନାରେ କବିଙ୍କ ଭାବାବେଗ ଯେତିକି ଗଭୀର ହୋଇଛି 'ଉତ୍କଳ ଜନନୀ ପ୍ରତି' କବିତାରେ ଗୌରବ ଓ ଐତିହ୍ୟ ବିଦୀର୍ଣ୍ଣ ହେବା ଦେଖି ମଧୁସୂଦନ ରାଓ ଖେଦୋକ୍ତି ପ୍ରକାଶ କରିଛନ୍ତି-

'ବିଶାଳ ବିସ୍ତାର ତବ ମା' ଉତ୍କଳ ଭୂମି
ଦେଖି ଆସିଲି ମୁଁ ଚାରିଆଡ଼େ ଘୁମି ଘୁମି
କୋଟିଏ ସନ୍ତାନ ମାଗୋ ଧରି ଅଛୁ କୋଳେ
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲା ତୋଳେ ।'

ଉତ୍କଳ ଭୂମି ଗୌରବରେ ଓ ଐତିହ୍ୟରେ ପରିପୂର୍ଣ୍ଣ । ତେଣୁ ଏହାର ଅବକ୍ଷୟ ଏ ଜାତି ପାଇଁ ଏକ ବିରାଟ ଅନ୍ତରାୟ । ଜାତିପ୍ରୀତି ସୃଷ୍ଟି, ଐକ୍ୟ, ସଂହତି, କର୍ମ, ଧର୍ମ, ପ୍ରେମ ଆଦି ପାଇଁ କବି ଜାତିକୁ ଉଦ୍‌ବୋଧନ ଦେଇଛନ୍ତି ।

ଜାତୀୟଭାବ ଚେତନାର ଜଣେ ଆଶାବାଦୀ କବି ରୂପେ ଯାହାଙ୍କର ସ୍ମୃତି ଏବେ ମଧ୍ୟ ସଂଜୀବିତ ସେହେଉଛନ୍ତି କାମପାଳ ମିଶ୍ର । ରାଧାନାଥଙ୍କ ସମସାମୟିକ କବି ଭାବେ ତାଙ୍କର ସ୍ୱଦେଶ ପ୍ରୀତି ଗଭୀର । ବ୍ରିଟିଶ ରାଜଶକ୍ତି ଅଧୀନରେ ଯେତେବେଳେ ଜାତି ନିର୍ଯ୍ୟାତିତ, ବ୍ୟଥିତ ଅବହେଳିତ ଓ ବିପର୍ଯ୍ୟସ୍ତ ଅବସ୍ଥାରେ ଥିଲା ସେସମୟରେ ରେଭେନ୍‌ସା କଲେଜରେ ଅଧ୍ୟୟନରତ ଏହି କବି ସ୍ୱତନ୍ତ୍ର ଉତ୍କଳ ଭାବନାର ସ୍ୱପ୍ନରେ ବିଭୋର ହୋଇ ଲେଖିଥିଲେ 'ଅପୂର୍ବ ସ୍ୱପ୍ନ' । ଉତ୍କଳର ଦୁଃଖ ଦୁର୍ବିପାକ ମୋଚନ କରି କବିତାରେ ତାଙ୍କର ଯୁଗୋପଯୋଗୀ ଆହ୍ୱାନ ସ୍ୱଦେଶ ପ୍ରୀତିର ପରିଚୟ ପ୍ରଦାନ କରେ । କବି କାମପାଳଙ୍କ ବର୍ଣ୍ଣନାରେ -

'ସତେ କି ଘୁଞ୍ଚିବ ତୋହର ଉତ୍କଳ
ଜନନୀ ମନ ବେଦନା
କୋଳେ ଆଉ ଆସି ସୁସୁତ ସତେ କି
ସୁଖୀ ହେବ ସୁଲୋଚନା ।'

ଓଡ଼ିଆ କାବ୍ୟ ସାହିତ୍ୟରେ ଚତୁର୍ଭୁଜ ପଟ୍ଟନାୟକ ଅପରିଚିତ ହେଲେ ମଧ୍ୟ 'କାବ୍ୟ କୁସୁମ' କବି ଭାବରେ ସେସମୟରେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । ତାଙ୍କର ଜାତୀୟ ପ୍ରୀତି ଥିଲା ଅଗାଢ଼ । ଜାତୀୟତାର ଜୟଗାନ କରୁଥିଲେ । ଜାତୀୟ ଜୀବନ ପ୍ରତି ମମତା ଓ ଉତ୍କଳ ପ୍ରତି ଶ୍ରଦ୍ଧାଭାବ ଏହିପରି -

'ଉତ୍କଳ ଦେଶରେ ହୋଇଅଛି ଜାତ
ଉତ୍କଳୀୟ ନାମ ସଦା ଆଖ୍ୟାତ
ଯାବତ ଶୋଣିତ ଦେହେ ରହିବ
ଯାବତ ନିଃଶ୍ୱାସ ପ୍ରାଣ ରଖିବ
ତାବତ ଉତ୍କଳ ଉପକାରାର୍ଥେ
ତ୍ୟଜିବ ବହନ ସକଳ ସ୍ୱାର୍ଥ ।'

ଉତ୍କଳ ପ୍ରୀତି ଭାବନାରେ ଭରି ଉଠିଥିବା ଏକ ଦରଦୀ ହୃଦୟର ମଣିଷକୁ ପ୍ରତ୍ୟେକ ଓଡ଼ିଆ ଭୁଲିବା ଅସମ୍ଭବ । ସେ ହେଉଛନ୍ତି ସତ୍ୟବାଦୀର ପ୍ରତିଷ୍ଠାତା, ପ୍ରବର୍ତ୍ତକ ଓ କ୍ରାନ୍ତିକାରୀ ସାହିତ୍ୟ ପ୍ରତିଭା ଉତ୍କଳମଣି ଗୋପବନ୍ଧୁ ଦାସ । ତାଙ୍କର ସ୍ୱଦେଶ ଚିନ୍ତା, ଜାତୀୟ ଚିନ୍ତା ପ୍ରକାଶ ପାଇଛି 'ବନ୍ଦୀର ଆତ୍ମକଥା' କବିତାରେ । କବିଙ୍କର ଦରଦୀପ୍ରାଣ ମ୍ରିୟମାଣ ହୋଇଉଠିଛି ସ୍ୱଦେଶ ପ୍ରୀତିରେ -

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।'

ବିଶ୍ୱପ୍ରାଣତାରେ ଉଦ୍‌ବୁଦ୍ଧ ତାଙ୍କର କାବ୍ୟ କବିତା ଚିରନ୍ତନୀ ଓ ହୃଦୟସ୍ପର୍ଶୀ । ଉତ୍କଳ ପ୍ରୀତି ସମ୍ପର୍କରେ ତାଙ୍କର ବକ୍ତବ୍ୟରେ ରହିଛି ଉଦାତ୍ତ ଆହ୍ୱାନ । ଆବେଗ ପ୍ରବଣତା

ପ୍ରକାଶିତ । ଉତ୍କଳବାସୀଙ୍କର ଦୁଃଖ ଦୁର୍ଗତିରେ ସେ ବ୍ୟାକୁଳ ହୋଇଛନ୍ତି । କବିଙ୍କର ବର୍ଣ୍ଣନାରେ -

'ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ କିହେ ନୀଳାଚଳ ପତି!
ମାତ୍ର ବୁଝ ଭାଇ ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।'

ଉତ୍କଳର କୀର୍ତ୍ତି, ଶିଳ୍ପକଳା ପ୍ରତି ଗୋପବନ୍ଧୁଙ୍କର ଅହେତୁକ ଆନ୍ତରିକତା ଥିଲା । ଉତ୍କଳ ବିଧ୍ୱସ୍ତ ଶିଳ୍ପକଳାର ନଷ୍ଟଭ୍ରଷ୍ଟ ରୂପ ଦେଖି ଅଧୈର୍ଯ୍ୟ ହୋଇଥିଲେ । ତାଙ୍କର ସାହିତ୍ୟର ମୂକ ଆଦର୍ଶ ହେଉଛି ସ୍ୱଦେଶ ପ୍ରୀତି ଓ ଜାତୀୟ ଜୀବନ ପ୍ରତି ମମତା ।

ସତ୍ୟବାଦୀର ଆଉ ଜଣେ ସ୍ୱଦେଶପ୍ରେମୀ କବି ଥିଲେ ପଣ୍ଡିତ ନୀଳକଣ୍ଠ ଦାସ । ଉତ୍କଳ ଭୂମି, ଉତ୍କଳ ଜନନୀର ଗୌରବାବହ କାହାଣୀକୁ ଜୀବନ୍ତ ରୂପ ଦେଇଛନ୍ତି 'କୋଣାର୍କେ' କାବ୍ୟରେ । ତାଙ୍କର ସ୍ୱଦେଶ ପ୍ରୀତି ଓ ଜାତୀୟତାବୋଧ ତାଙ୍କ କାବ୍ୟରୁ ସ୍ପଷ୍ଟ ଅନୁମେୟ । 'କୋଣାର୍କେ' କାବ୍ୟାଂଶରେ ରାମଚଣ୍ଡୀରେ ରାତି ଓ ସକାଳରେ ଉତ୍କଳର ଦୃଢ଼ ଓ ସୁପ୍ତ ଗୌରବରାଜିର ଯେଉଁ କମନୀୟ ଚିତ୍ର ବର୍ଣ୍ଣନା କରିଛନ୍ତି, ସେଥିରେ କବିଙ୍କର ଜାତୀୟ ପ୍ରୀତି ଉତ୍କୀର୍ଣ୍ଣ । ପ୍ରତ୍ୟେକଟି ବର୍ଣ୍ଣନା ଏହି କାବ୍ୟରେ ତାଙ୍କର ଦେଶ ପ୍ରେମକୁ ଗଭୀର ଭାବାବେଗରେ ଆନ୍ଦୋଳିତ କରିଛି । ଉତ୍କଳ ଭୂମି ଓ ତା'ର ଐତିହ୍ୟ ସମ୍ପର୍କରେ କବିଙ୍କ ବର୍ଣ୍ଣନା ଏହିପରି -

'ଏହି ଭୂମି ଥିଲାଟି କି ମା',
ଯେବେ କୋଣାର୍କେ ହେଲା?
ଏହି ଭୂମି ଦେଖି ଆସିତ ଥିଲ ସ୍ୱରଗୁ ତୁମ୍ଭେ?
ନୀଳାଚଳ ନାଥ ଦେଖି ତ ଏହି ଆସିଲ ଭବେ?
ଏ ଭୂମି ସେ ତ ଆଦରି ଥିଲେ ସିଦ୍ଧି - ସାଧକ?
ଏହି ଭୂମିରେତ ବିପ୍ଳବ ସବୁ ହେଲା ଅଳିକ?'

କବି ନୀଳକଣ୍ଠଙ୍କର ଉତ୍କଳ ପ୍ରାଣତା ଥିଲା ଅନ୍ତିମ ଜାଗରଣ । ତେଣୁ 'କୋଣାର୍କେ' କାବ୍ୟର ବର୍ଣ୍ଣନା ପ୍ରସଙ୍ଗରେ କବି ଉତ୍କଳର ମହନୀୟ କୀର୍ତ୍ତିକୁ ଗଭୀର ଉତ୍କଣ୍ଠା ଓ ଆବେଗରେ ଉପସ୍ଥାପନ କରିଛନ୍ତି ।

ଦାରୁଣ ବ୍ୟାଧିଗ୍ରସ୍ତ ଜୀବନର ଜ୍ୱଳନରେ ପୀଡ଼ିତ ହୋଇ ମଧ୍ୟ ଦେଶପ୍ରୀତି ଭାବନାରେ ବ୍ୟଥିତ ସ୍ୱର ପ୍ରକାଶ କରିଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ତାଙ୍କର କବିତାରେ । ଦେଶାତ୍ମବୋଧର ହୃଦୟସ୍ପର୍ଶୀ ବର୍ଣ୍ଣନା ତାଙ୍କ କବିତାରେ ଗୁଞ୍ଜରିତ । ଉତ୍କଳ ଜନନୀ ପ୍ରତି ପ୍ରୀତି ଅର୍ଘ୍ୟ ଢାଳି କବି 'ବନ୍ଦେ ଉତ୍କଳ ଜନନୀ' କବିତାରେ କବି ଗାଇ ଉଠିଛନ୍ତି -

'ବନ୍ଦେ ଉତ୍କଳ ଜନନୀ
ଚାରୁ ହାସମୟୀ, ଚାରୁ ଭାଷମୟୀ
ଜନନୀ ଜନନୀ ଜନନୀ ।
ପୂତ ପୟୋଧି ବିଧୌତ ଶରୀରା
ତାଳ-ତମାଳ-ସୁଶୋଭିତ ତୀରା
ଶୁଭ୍ର-ତଟିନୀ-କୂଳ-ଶୀକର-ସମୀରା
ଜନନୀ-ଜନନୀ ଜନନୀ ।'

ଚିର ବନ୍ଦନୀୟା ଉତ୍କଳ ଜନନୀ । ଅପରୂପ ସୌନ୍ଦର୍ଯ୍ୟମୟୀ ଉତ୍କଳ ଜନନୀର ରୂପ ଲାବଣ୍ୟରେ ବିମୁଗ୍ଧ କବି ହୃଦୟ ଅତ୍ୟନ୍ତ ନିଖୁଣ ବର୍ଣ୍ଣନାରେ ଜୀବନ୍ତ ଭାବେ ଚିତ୍ର ପ୍ରକାଶି ସ୍ୱଦେଶ ପ୍ରେମର ଗଭୀରତାକୁ ସୂଚାଇଛନ୍ତି କବିତାରେ ।

ସ୍ୱଦେଶ ପ୍ରତି ଅଗାଢ଼ ପ୍ରେମଭାବ, ସ୍ୱଦେଶର ମାଟି, ପାଣି, ପବନ ଆଦି ପ୍ରକୃତିର ରୂପ ଓ ଜାତି ପ୍ରତି ମମତ୍ୱବୋଧ ଓଡ଼ିଆ କବିଙ୍କର କାବ୍ୟକବିତାକୁ ସମୃଦ୍ଧ କରିଛି ଏକ ସମ୍ବେଦନଶୀଳ ହୃଦୟର ବର୍ଣ୍ଣନା ମାଧ୍ୟମରେ । ଓଡ଼ିଆ କବିଙ୍କର ଗଭୀର ସ୍ୱଦେଶ ପ୍ରେମରେ ସମୁଜ୍ଜ୍ୱଳ କାବ୍ୟ କବିତାଗୁଡ଼ିକ ଓଡ଼ିଆ ସାରସ୍ୱତ ଜଗତ ପାଇଁ ମହାର୍ଘ୍ୟ କହିବାରେ ଅତ୍ୟୁକ୍ତି ହେବ ନାହିଁ । ଏଥିପାଇଁ ଓଡ଼ିଆ କବିମାନେ ମଧ୍ୟ ଚିରନମସ୍ୟ ଅଟନ୍ତି ।

ପ୍ଲଟ୍ ନଂ. - ୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର-୧୮

# କବିଶେଖର ଚିନ୍ତାମଣି ମହାନ୍ତି : ଏକ ଦୃଷ୍ଟିପାତ

ରବୀନ୍ଦ୍ର କୁମାର ବେହୁରିଆ

ପୁଣ୍ୟତୋୟା ସାଳନ୍ଦୀ ନଦୀ କୂଳସ୍ଥିତ ଭଦ୍ରକ ଜିଲ୍ଲା କୂଳ ମୂଳେଇ ଗ୍ରାମ (ସଂପ୍ରତି ଡ଼ାକନାମ ନରିପୁର)ରେ ୧୮୬୭ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୬ ତାରିଖରେ ଚିନ୍ତାମଣି ଜନ୍ମଗ୍ରହଣ କରିଥିଲେ । କିଶୋର ବୟସରେ ତାହାଙ୍କ ପିତାଙ୍କର ମୃତ୍ୟୁ ହେଲା । ଫଳରେ ଚିନ୍ତାମଣିଙ୍କ ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଲା । ଶୈଶବରୁ ମେଧାବୀ, କଷ୍ଟସହିଷ୍ଣୁ ଓ ଜ୍ଞାନଲିପ୍ସୁ ଚିନ୍ତାମଣି ବହୁ ଅଭାବ ଅସୁବିଧା ମଧ୍ୟରେ ଅଧ୍ୟୟନ କରି ଷୋହଳବର୍ଷ ବୟସରେ ତତ୍କାଳୀନ ଭର୍ଣ୍ଣାକୁଲାର ବା ଓଡ଼ିଆ ପରୀକ୍ଷାରେ ପାଶ୍ କଲେ । ଭଦ୍ରକର ଫ୍ରେଜର ବାଳିକା ବିଦ୍ୟାଳୟରେ ଶିକ୍ଷକ ଭାବରେ ତାଙ୍କର କର୍ମମୟ ଜୀବନ ଆରମ୍ଭ ହେଲା । ୧୮୮୪ ମସିହାରେ ପ୍ରଥମେ ସେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା ଆରମ୍ଭ କରିଥିଲେ । ଏହାପରେ କୋଡ଼ିଏ ବର୍ଷ ସେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଆଦର୍ଶ ଶିକ୍ଷକ ଭାବରେ ସୁଖ୍ୟାତିର ସହ କାଳ ଅତିବାହିତ କରିଛନ୍ତି ।

କବିଶେଖର ଚିନ୍ତାମଣି ମହାନ୍ତି ଜଣେ ଭକ୍ତିଭାବାପନ୍ନ ଦୂରଦ୍ରଷ୍ଟା, ବାଗ୍ମୀ ଓ ବିଦ୍ୱାନ ଥିଲେ । ପିଲାଦିନରୁ ତାଙ୍କ କବିପ୍ରାଣ ଉଦ୍‌ବେଳିତ ଥିଲା, ସେ ପିଲା ବୟସରୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ', 'ରସିକ ହାରାବଳୀ', 'ପ୍ରେମ ସୁଧାନିଧି', ଦୀନକୃଷ୍ଣଙ୍କ 'ରସ କଲ୍ଲୋଳ', ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି' ଆଦି ଓଡ଼ିଆ ସାହିତ୍ୟର ମହାନ୍ କାବ୍ୟଗୁଡ଼ିକର ଅତିପ୍ରିୟ ପାଠକ ଥିଲେ ଏବଂ ଭଞ୍ଜପ୍ରିୟ କବି ଥିଲେ । ପ୍ରାଚୀନ ସାହିତ୍ୟରେ ଭଞ୍ଜଙ୍କୁ ଜଣେ ଅଦ୍ୱିତୀୟ କବି ଭାବେ ଗ୍ରହଣ କରିଥିଲେ । ରୀତିଯୁଗ ସାହିତ୍ୟ ପ୍ରତି ତାଙ୍କର ଆକର୍ଷଣ ଥିଲା ।

ପ୍ରାକୃତିକ ଓଡ଼ିଶାକୁ ଘନିଷ୍ଠ ଭାବରେ ଜାଣିବାରେ ଚିନ୍ତାମଣି ହୋଇପାରିଥିଲେ ସର୍ବାଧିକ ସମର୍ଥ । କବିବର ରାଧାନାଥଙ୍କ ପରେ ଓଡ଼ିଶାର ପ୍ରକୃତି ସମ୍ପଦର ଅଦ୍ୱିତୀୟ ଚିହ୍ନାରା ଗ୍ରାହକ ଥିଲେ କବିଶେଖର ଚିନ୍ତାମଣି । ରାଧାନାଥଙ୍କୁ ଅନୁକରଣ କରି ସେ କାବ୍ୟକବିତା, ଫକୀର ମୋହନଙ୍କୁ ଅନୁକରଣ କରି ସେ ଗଳ୍ପ, ଉପନ୍ୟାସ ଓ ମଧୁସୂଦନଙ୍କୁ ଅନୁକରଣ କରି ବହୁ ପ୍ରବନ୍ଧ ରଚନା କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ଅନୁକରଣ ସତ୍ତ୍ୱେ ତାଙ୍କର ମୌଳିକ ଦୃଷ୍ଟିକୋଣକୁ ଅସ୍ୱୀକାର କରାଯାଇ ନପାରେ ।

କବିଶେଖର ଛାତ୍ର ଥିଲା ବେଳେ କବିବର ରାଧାନାଥ ରାୟ ଶିକ୍ଷା ବିଭାଗର ଜଏଣ୍ଟ ଇନ୍ସପେକ୍ଟର ଥିଲେ । ରାଧାନାଥ ବାଗୁରାଇ ସ୍କୁଲକୁ ପରିଦର୍ଶନରେ ଆସିଥିବାବେଳେ କବିଶେଖର ସେହି ସ୍କୁଲର ଛାତ୍ର ଥିଲେ । ସେ କେତେକ ପ୍ରଶ୍ନ ଉତ୍ତର କ୍ରମରେ କବି ଶେଖରଙ୍କ ଜ୍ଞାନ ଓ ସାହିତ୍ୟ ପ୍ରତିଭାକୁ ଜାଣିପାରି ତାଙ୍କୁ ପ୍ରଶଂସା କରିଥିଲେ । କବିବର ରାଧାନାଥ ରାୟ ତାଙ୍କ ସାହିତ୍ୟ ସାଧନାରେ ମୁଗ୍ଧ ହୋଇ ଏକଦା ଲେଖିଥିଲେ:- ''ଉତ୍କଳ ସାହିତ୍ୟରେ ଚିନ୍ତାମଣିଙ୍କର ଯେପରି ବ୍ୟୁତ୍ପତ୍ତିର ପରିଚୟ ପାଇଲି, ତାହା ଅସାଧାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଣେ ଛାତ୍ର ବୃତ୍ତି ପରୀକ୍ଷୋତ୍ତୀର୍ଣ୍ଣ ବ୍ୟକ୍ତି ପକ୍ଷରେ ଏହା ସାମାନ୍ୟ ଗୌରବାବହ ନୁହେଁ ।''

୧୯୦୩ରୁ ଆରମ୍ଭ ହୁଏ ସାମ୍ବାଦିକତା । ଗଞ୍ଜାମ ଜିଲ୍ଲାରୁ ପ୍ରକାଶ ପାଉଥିବା 'ହିତବାଦିନୀ' ପତ୍ରିକା ସଂପାଦନା କରି ଖ୍ୟାତିଲାଭ କରିବା ପରେ ଖ୍ରୀ:୧୯୦୪ରେ ସୁରଙ୍ଗୀ ରାଜାଙ୍କ ପୃଷ୍ଠପୋଷକତାରେ ଇଚ୍ଛାପୁରରୁ ପ୍ରକାଶିତ ସାପ୍ତାହିକ ପତ୍ରିକା 'ଉତ୍କଳବାସୀ', ଗଞ୍ଜାମରୁ ପ୍ରକାଶିତ ମାସିକ ପତ୍ର 'ସ୍ୱଦେଶ ଲକ୍ଷ୍ମୀ', ବାରିପଦାରୁ ପ୍ରକାଶିତ ସାପ୍ତାହିକ ପତ୍ର 'ମନୋରମା', ଧରାକୋଟରୁ ପ୍ରକାଶିତ 'ଜ୍ଞାନ ଦର୍ପଣ' ପ୍ରଭୃତି ତାହାଙ୍କ ସଂପାଦକତ୍ୱରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । କବିଶେଖର ଚିନ୍ତାମଣି ୧୯୦୩ ମସିହାରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା 'ହିତବାଦିନୀ' ପତ୍ରିକା ସଂପାଦନା ଦାୟିତ୍ୱ ନେଇ, ଗଞ୍ଜାମରେ ପହଞ୍ଚନ୍ତି । ସେତେବେଳକୁ ଉତ୍ତରରେ ବଙ୍ଗଳା ଓ ଦକ୍ଷିଣରେ ତେଲଗୁ ଭାଷାର ପ୍ରଭାବ ଏବଂ ବଙ୍ଗାଳୀ ଓ ତେଲଙ୍ଗାମାନଙ୍କର ହୀନ ଚକ୍ରାନ୍ତ ଫଳରେ ଓଡ଼ିଆ ଭାଷା ନିଷ୍ପେଷିତ ହେଉଥାଏ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ 'ଉତ୍କଳ ସମ୍ମିଳନୀ'ର ଶୁଭାରମ୍ଭ । ଓଡ଼ିଶାର ସ୍ୱାତନ୍ତ୍ର୍ୟ, ଓଡ଼ିଆ ସାହିତ୍ୟ, ଭାଷା ଓ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇପାରୁନଥିବାବେଳେ, ଉତ୍କଳ ସମ୍ମିଳନୀ ଏଥିପାଇଁ ଅଣ୍ଟା ଭିଡ଼ିଥାଏ । ଏହି ସମୟରୁ ଚିନ୍ତାମଣିଙ୍କ ସାହିତ୍ୟ ସୃଷ୍ଟି ବିଧିବଦ୍ଧ ଭାବରେ ଆରମ୍ଭ ହେଲା । ଓଡ଼ିଆ ଜାତିର ଗୌରବ ଓ ଓଡ଼ିଆ ଭାଷାର ମହତ୍ତ୍ୱ ତାଙ୍କ ସାହିତ୍ୟରେ ଫୁଟି ଉଠିଲା ।

ଅର୍ଦ୍ଧଶତାବ୍ଦୀ ବ୍ୟାପୀ ନିରବଚ୍ଛିନ୍ନ ସାହିତ୍ୟ ସାଧନା ଯୋଗୁଁ ୧୯୩୫ ମସିହାରେ ଆନ୍ଧ୍ର ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ପକ୍ଷରୁ ସେ 'କବିଶେଖର' ଉପାଧି ପାଇଥିଲେ । ରାଜା ବିକ୍ରମଦେବ ବର୍ମା ମଧ୍ୟ ତାଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ୧୯୨୯ ମସିହାରେ ପ୍ରସିଦ୍ଧ ସାହିତ୍ୟ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ୧୯୪୩ ମସିହା ଭଦ୍ରକରେ ଓଡ଼ିଶାର ଏହି ବରେଣ୍ୟ ଏକନିଷ୍ଠ ସାହିତ୍ୟ ସାଧକଙ୍କର ତିରୋଧାନ ହୋଇଥିଲା ।

୧୮୮୭ ମସିହାରେ ଦେବଗଡ଼ରୁ ରାଜା ବାସୁଦେବ ସୁଢଳଦେବଙ୍କ ତତ୍ତ୍ୱାବଧାନରେ 'ହିତୈଷିଣୀ' ପ୍ରକାଶ ପାଇ ବହୁ ଉପକାର କରିଥିଲା । ୧୮୯୭ ମସିହା, ଜାନୁୟାରୀ ୨୭ ତାରିଖ ସଂଖ୍ୟାରେ ଚିନ୍ତାମଣିଙ୍କ 'ସ୍ତୁତି' ପ୍ରକାଶ ପାଇଲା । ଏହାଥିଲା ତାଙ୍କର ପ୍ରଥମ ମୁଦ୍ରିତ ରଚନା । ୧୯୦୧ ମସିହା ମଇ ୨୨ ତାରିଖ ସଂଖ୍ୟାରୁ କବିଙ୍କ 'ମୋହିନୀ କାବ୍ୟ' ଧାରାବାହିକ ରୂପେ ପ୍ରକାଶ ପାଇଥିଲା । ବାମଣ୍ଡାରୁ ଏହା ସଚ୍ଚିଦାନନ୍ଦ ଦେବଙ୍କ ଦ୍ୱାରା ଗ୍ରନ୍ଥ ଆକାରରେ ପ୍ରକାଶିତ ହୋଇଥିଲା । ଏହା ହିଁ ତାଙ୍କର ପ୍ରଥମ (୧୯୦୧) ପ୍ରକାଶିତ କାବ୍ୟଗ୍ରନ୍ଥ । ୧୮୯୭ ମସିହାରେ କବିଶେଖର ଚିନ୍ତାମଣିଙ୍କ 'ସୁଲକ୍ଷଣା' କାବ୍ୟ ଧାରାବାହିକ ଭାବେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହେବାପରେ 'ଶଶିପ୍ରଭା' ନାମରେ ୧୯୧୬ ମସିହାରେ ଏହି ଗ୍ରନ୍ଥ ପ୍ରକାଶିତ ହୋଇଥିଲା ।

'ଭାଷାକୋଷ' ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ କବିଙ୍କ ସମ୍ପର୍କରେ କହନ୍ତି :– ''ଚିନ୍ତାମଣି, ରାଧାନାଥ ଯୁଗର ଶେଷ ଶ୍ରେଷ୍ଠ କବି । ତାଙ୍କ କବିତାରେ ରାଧାନାଥଙ୍କ କବିତାର ରସିକତା ନଥିଲେ ସୁଦ୍ଧା ମଧୁସୂଦନଙ୍କ ଗାମ୍ଭୀର୍ଯ୍ୟ ଯେ ରହିଅଛି – ଏଥିରେ ସନ୍ଦେହ ନାହିଁ । ସାଧକ ଜନୋଚିତ ଗାମ୍ଭୀର୍ଯ୍ୟର ମୁଦ୍ରା ଚିନ୍ତାମଣିଙ୍କ କବିତାର ପ୍ରତି ଛତ୍ରରେ ସ୍ପଷ୍ଟ ହିସାବରେ ଅଙ୍କିତ । ଚିନ୍ତାମଣିଙ୍କ ଅପକ୍ୱ ବୟସରେ ଲେଖାରେ ମଧ୍ୟ ପ୍ରବୀଣ ଜନୋଚିତ ଗାମ୍ଭୀର୍ଯ୍ୟ ଦ୍ରଷ୍ଟବ୍ୟ ।'' (ଚିନ୍ତାମଣି ଗ୍ରନ୍ଥାବଳୀ – ୧ମଭାଗ – ମୁଖବନ୍ଧ) । ବାସ୍ତବିକ କବି ଚିନ୍ତାମଣି ମୁଖ୍ୟତଃ ରାଧାନାଥଙ୍କ ଆଖ୍ୟାନ କାବ୍ୟ ଓ ପ୍ରକୃତି ବର୍ଣ୍ଣନାତ୍ମକ କାବ୍ୟମାନଙ୍କୁ ହିଁ ଆଦର୍ଶ କରି ବହୁ ସଂଖ୍ୟକ କାବ୍ୟ କବିତା ରଚନା କରିଅଛନ୍ତି । ଏପରିକି ରାଧାନାଥଙ୍କ ଭାବ, ଭାଷା ଓ ପଙ୍‌କ୍ତିକୁ ମଧ୍ୟ ନିଃସଂକୋଚରେ ନିଜ କାବ୍ୟରେ ଉଦ୍ଧାର କରିଯାଇଅଛନ୍ତି । ତାହାଙ୍କ 'ଘୁମୁସର' କାବ୍ୟ (୧୯୦୩), 'ଉଦ୍ୟାନ ଖଣ୍ଡ' (୧୯୦୮), 'ମେଘାସନ' (୧୯୦୮), 'ଧରାକୋଟ ଦର୍ଶନ' (୧୯୦୯), 'ସାଳନ୍ଦୀ' (୧୯୧୧), 'ସୁରଙ୍ଗୀ କାବ୍ୟ (୧୯୧୨), 'ସିଂହରାଜ' (୧୯୧୪), 'ମହେନ୍ଦ୍ର' (୧୯୧୮), 'ମହୋଦଧି' (୧୯୧୮), 'ଉତ୍କଳ କମଳା' (୧୯୧୮), 'ପାଟନା କାବ୍ୟ' (୧୯୪୧) ପ୍ରଭୃତି କାବ୍ୟଗୁଡ଼ିକ ରାଧାନାଥଙ୍କ ଚିଲିକା କାବ୍ୟ ଅନୁକରଣରେ ହିଁ ରଚିତ ।

ଏତଦ୍‌ବ୍ୟତୀତ କବିଶେଖର ଚିନ୍ତାମଣି ପୌରାଣିକ ଓ ଐତିହାସିକ କଥାବସ୍ତୁକୁ ଅବଲମ୍ବନ କରି ବହୁ ଆଖ୍ୟାନ

କାବ୍ୟ ମଧ୍ୟ ରଚନା କରିଯାଇଅଛନ୍ତି । ତନ୍ମଧ୍ୟରୁ 'ବିକ୍ରମାଦିତ୍ୟ' (୧୯୦୧), 'ଶିଶୁପାଳବଧ' (୧୯୦୯), 'ସପ୍ତରଥ' (୧୯୧୧), 'ସପ୍ତସଥୀ' (୧୯୧୨), 'ଆର୍ଯ୍ୟବାଳା' (୧୯୧୪), 'ଭାରତ ଲଳନା' (୧୯୧୪), 'କଳ୍ପଲତା' (୧୯୧୫), 'ସୁଭଦ୍ରା' (୧୯୨୦), 'ମୁକୁନ୍ଦଦେବ' (୧୯୨୩) ପ୍ରଭୃତି ପୁସ୍ତକଗୁଡ଼ିକ ଉଲ୍ଲେଖଯୋଗ୍ୟ ।

ଅମିତ୍ରାକ୍ଷର ଛନ୍ଦରେ ମଧ୍ୟ କବି କାବ୍ୟ ରଚନା କରିଅଛନ୍ତି । ଏକାଦଶ ସର୍ଗ ବିଶିଷ୍ଟ 'ସୁଭଦ୍ରା' (୧୯୨୦) କାବ୍ୟଟି ତାହାର ପ୍ରକୃଷ୍ଟ ଉଦାହରଣ । ରାଧାନାଥଙ୍କ 'ମହାଯାତ୍ରା' ହିଁ ଯେ ଏହି କାବ୍ୟର ଆଦର୍ଶ ଏହା କହିବା ଅନାବଶ୍ୟକ । ରାଧାନାଥ 'ଉତ୍କଳ ଭାରତୀ'ରେ ସାରଳାଙ୍କୁ ବନ୍ଦନା କରି 'ମହାଯାତ୍ରା' କାବ୍ୟ ଆରମ୍ଭ କଲାପରି, ଚିନ୍ତାମଣି କଳ୍ପନା ଦେବୀଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇ କାବ୍ୟ ଆରମ୍ଭ କରିଛନ୍ତି :–

'ସ୍ୱାଗତ କଳ୍ପନା ଦେବୀ ଭାରତୀୟ ତନୁଜା  
ଭାବମାତା ଅଣାକାରା, ଅନାଦି ଅନନ୍ତା,  
କାଖେଇ ନିର୍ବୋଧ ସୁତେ ଜନନୀ ଯେସନ  
ଘେନିଯାଇ ଯାତ୍ରାସ୍ଥଳେ, ଦେଖାଏ ତାହାକୁ,  
ଯାତ୍ରା ଅନ୍ତରାଳେ ରହି, ତେସନେ ଗୋ ମାତ,  
ଘେନି ଏ ସେବକେ ତୁମ୍ଭେ ଚାଲ ଦୟାମୟୀ ।'

ଉପେନ୍ଦ୍ର ଭଞ୍ଜ ଏବଂ ରାଧାନାଥଙ୍କ ଭାବ ଓ ଭାଷାର ପ୍ରତିଧ୍ୱନି ଚିନ୍ତାମଣିଙ୍କ କାବ୍ୟମାନଙ୍କରେ ଶୁଣିବାକୁ ମିଳେ । ଏଠାରେ ତହିଁରୁ ଦୁଇଟି ଉଦାହରଣ ଦିଆଯାଇପାରେ :–

ଉପେନ୍ଦ୍ର :– 'ବାମା ବାମ କପୋଳ ତଳ  
କେହ୍ନୁ ପଲ୍ଲବେ କି ଥୁଆ ଫୁଲ କମଳ ।'

ଚିନ୍ତାମଣି :– 'ଆହାକି ସେ ଶୋଭା  
କମଳ ପତ୍ରେକି ଥୁଆ ସୁବର୍ଣ୍ଣ କମଳ ।'

ରାଧାନାଥ:– 'ଦାରୁଭେଦ ଯମ ଭ୍ରମର ପଶି କମଳ କୋଳେ  
ପାଶୋରେ ଆପଣା ବିକ୍ରମ ପ୍ରେମ ମୋହନ ଭୋଳେ ।'

ଚିନ୍ତାମଣି :– 'କେ ବୋଲେ ହେଲେହେଁ ଭୃଙ୍ଗ ଦାରୁଭେଦ ଦକ୍ଷ  
ପାରେକି ଫିଟାଇ କେବେ କମଳିନୀ ମୁଦ ।'

ଚିନ୍ତାମଣିଙ୍କ ରଚିତ ଗୀତି କବିତାର ସମ୍ଭାର ସ୍ୱଳ୍ପ ନୁହେଁ । 'ପତ୍ରପୁଷ୍ପ', 'ସନ୍ଧ୍ୟାତାରା', 'କଳ୍ପନାକୁଞ୍ଜ', 'ଫୁଲଡ଼ାଲା', 'ଜନନୀ', 'ଶତଦଳ', 'ପୁଷ୍ପବାଟିକା', 'ବ୍ରଜରେଣୁ', 'ପ୍ରୀତିଲେଖ', 'ବିଶ୍ୱଚିତ୍ର', 'କୈବଲ୍ୟ କଣିକା', 'ନୀତି କୁସୁମ', 'ରାଜଭକ୍ତି', 'ଶିଶୁଧର୍ମନୀତି ଶିକ୍ଷା', 'ଜଗନ୍ନାଥ ଜଣାଣ', 'ତୁଳସୀମାଳା' ପ୍ରଭୃତି ରଚନାଗୁଡ଼ିକ ତାହାଙ୍କ ଗୀତି କବିତା ସଂଗ୍ରହ ଭାବେ ଗ୍ରହଣୀୟ । ମଧୁସୂଦନଙ୍କ ପଦାଙ୍କ ଅନୁସରଣ କରି ସେ ବହୁ ଚତୁର୍ଦ୍ଦଶପଦୀ କବିତା, ଶୋକଗୀତ ଓ ସମ୍ବୋଧନ ଗୀତ ମଧ୍ୟ ରଚନା କରିଯାଇଛନ୍ତି ।

ଚିନ୍ତାମଣିଙ୍କ କବି ପ୍ରତିଭା ମୁଖ୍ୟତଃ ପ୍ରକୃତିପ୍ରୀତି, ଈଶ୍ୱର ଭକ୍ତି ଓ ନୀତିବାଦିତାରେ ପର୍ଯ୍ୟବସିତ । ରାଧାନାଥଙ୍କ ଚିଲିକା ଖଣ୍ଡକାବ୍ୟ ସଦୃଶ ସେ 'ମେଘାସନ', 'ସାଳନ୍ଦୀ', 'ଧରାକୋଟ ଦର୍ଶନ' ଓ 'ପ୍ରକୃତିପେଟିକା' ପ୍ରଭୃତି ରଚନା କରିଅଛନ୍ତି । ସେହି ହିଁ ତାଙ୍କର ପ୍ରିୟ ନଈ ସାଳନ୍ଦୀର ମହିମା ମାଧୁରୀ ଗାଇବାକୁ ଯାଇ ଲେଖିଥିଲେ – 'ଉତ୍କଳେ କାଳିନ୍ଦୀ ରୂପିଣୀ ସାଳନ୍ଦୀ'... । ରାଧାନାଥଙ୍କ 'ଲେଖାବଳୀ'ର ଉତ୍ତର ସ୍ୱରୂପ ଚିନ୍ତାମଣି 'ପ୍ରୀତିଲେଖ' ଗ୍ରନ୍ଥଟି ରଚନା କରିଅଛନ୍ତି । ଚିନ୍ତାମଣିଙ୍କ ସର୍ବବୃହତ ଗୀତିକାବ୍ୟ ସଂଗ୍ରହ ହେଉଛି 'ପତ୍ରପୁଷ୍ପ' (୧୯୧୮) । ସମ୍ଭବତଃ କବି ସ୍ୱୟଂ ତାହାଙ୍କ କବିତାଗୁଡ଼ିକୁ ବାଣୀପୂଜା, ମାତୃତୀର୍ଥ, ପ୍ରାକୃତିକୀ, ସାମୟିକୀ, ଜନ୍ମଭୂମି, ବିଷାଦ ବୀଣା, ଶୋକଗାଥା, କବିତାଗୁଚ୍ଛ, କୌତୁକ କବିତା ଭେଦରେ ନଅଗୋଟି ପର୍ଯ୍ୟାୟରେ ବିଭକ୍ତ କରିଅଛନ୍ତି । ବୀଣାପୂଜା ପର୍ଯ୍ୟାୟର କବିତାଗୁଡ଼ିକ ସରସ୍ୱତୀଙ୍କ ବନ୍ଦନା ମାତ୍ର । 'ମାତୃପୂଜା' ପର୍ଯ୍ୟାୟର କବିତାଗୁଡ଼ିକ ପୁରୀଧାମର ପବିତ୍ରତାକୁ କେନ୍ଦ୍ରକରି ରଚିତ । ମଧୁସୂଦନ ଓ ଫକୀର ମୋହନଙ୍କ କ୍ଷୁଦ୍ର କବିତାବଳୀ ହିଁ ଥିଲା ଚିନ୍ତାମଣିଙ୍କ ଗୀତି କବିତାର ଆଦର୍ଶ । ତାହାଙ୍କ ରଚିତ ଅଧିକାଂଶ ପ୍ରକୃତି କବିତା ବର୍ଣ୍ଣନାମୂଳକ । ମାତ୍ର 'ବିଷାଦବୀଣା' ପର୍ଯ୍ୟାୟସ୍ଥ କବିତାଗୁଡ଼ିକରୁ କବିଙ୍କର ଅନ୍ତରାନୁଭୂତିର ପରିଚୟ ମିଳିଥାଏ । 'ପୀଡ଼ିତର ପ୍ରାର୍ଥନା'

କବିତାରେ କବି ଭଗବାନଙ୍କ ନିକଟରେ କରୁଣ ଭାବରେ ଆପଣାର ଦୁର୍ଗତ ଅବସ୍ଥା ନିବେଦନ କରିଅଛନ୍ତି :-

''ଶୁଣିବକି ଅନ୍ତର୍ଯ୍ୟାମି! ଅନ୍ତର ବେଦନା
ଜନ୍ମ ଦୁଃସ୍ଥ ପୀଡ଼ିତର କାତର ପ୍ରାର୍ଥନା
ମାନବ ଜୀବନେ ବାଲ୍ୟକାଳ ସୁଖମୟ
ମୋ ପକ୍ଷରେ ବିଷୟମ ହେଲା ସେ ସମୟ ।
କଟାଇଲି ରୋଗ, ଶୋକ ଦାରିଦ୍ର୍ୟେ ଯୌବନ
ମୋର ଜୀବନ ସିନା ଜୀବନ୍ତ ମରଣ ।''

କବି ଦୃଢ ଈଶ୍ୱର ବିଶ୍ୱାସୀ ଥିଲେ । ଭଗବାନଙ୍କ ନିକଟରେ ଆତ୍ମସମର୍ପଣ ହିଁ ସାଂସାରିକ ଦୁଃଖରୁ ନିଷ୍କୃତିର ଏକମାତ୍ର ପନ୍ଥା, ଏହା ହିଁ ଥିଲା କବିଙ୍କର ଜୀବନ ଦର୍ଶନ । ଏଣୁ ସେ ଲେଖିଥିଲେ :-

''ହରି ପାଦ ପଦ୍ମକର ଦୃଢ ଚିତ୍ତେ ଲୟ
ବିହିବେ ମଙ୍ଗଳ ଯେଣୁ ସେ ମଙ୍ଗଳମୟ ।''

ଫକୀର ମୋହନଙ୍କ 'ଉତ୍କଳ ଭ୍ରମଣ' ଆଦର୍ଶରେ ଚିନ୍ତାମଣି 'ଗଞ୍ଜାମ ଭ୍ରମଣ' ରଚନା କରିଅଛନ୍ତି । ଏଥିରେ ଗଞ୍ଜାମ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ କବିଙ୍କ ମତାମତ, ଉପଦେଶ ଓ ଦେଶର ଅବସ୍ଥାର ଚିତ୍ର ବର୍ଣ୍ଣିତ ହୋଇଅଛି ।

ଚିନ୍ତାମଣି ୪୮ କାବ୍ୟର ସ୍ରଷ୍ଟା । 'ସାଳନ୍ଦୀ', 'ଘୁମୁସର', 'ମେଘାସନ', 'ଉତ୍କଳ ଦର୍ପଣ', 'ମହୋଦଧି', 'ବିକ୍ରମାଦିତ୍ୟ', 'ଶିଶୁପାଳବଧ', 'ମହେନ୍ଦ୍ର', 'ଧରାକୋଟ ଦର୍ଶନ', 'ସୁରଙ୍ଗୀ', 'ଉତ୍କଳକମଳା', 'ଶ୍ରୀ ମୁକୁନ୍ଦଦେବ' ଓ 'ସୁଭଦ୍ରା' ପ୍ରଭୃତି ତାଙ୍କର ଉଲ୍ଲେଖନୀୟ ଅବଦାନ । ତାଙ୍କ କାବ୍ୟ କବିତା ଆଦର୍ଶ ଓ ନୈତିକତାର ମୁଦ୍ରାଙ୍କ ବହନ କରିଛି ।

ଉପନ୍ୟାସ ରଚୟିତା ଭାବେ ଚିନ୍ତାମଣିଙ୍କ ସାଧନା ମଧ୍ୟ ଉଲ୍ଲେଖଯୋଗ୍ୟ । ଫକୀର ମୋହନଙ୍କ ପରେ ଉପନ୍ୟାସ ରଚନା କ୍ଷେତ୍ରକୁ କିଛି ପରିମାଣରେ ଉଜ୍ଜୀବିତ ରଖିଥିଲେ ଚିନ୍ତାମଣି । ତାଙ୍କର ସମସ୍ତ ଉପନ୍ୟାସ ୧୯୨୦ ମସିହାରୁ ୧୯୪୦ ମସିହା ମଧ୍ୟରେ ରଚିତ ହୋଇଛି । 'ଯୁଗଳ ମଠ' ହେଉଛି ତାଙ୍କର ପ୍ରଥମ ଉପନ୍ୟାସ । ସେ 'ରୂପାଚୁଡ଼ି', 'ଟଙ୍କାଗଛ', 'ଯୁଗଳ ମଠ', 'ବୁଲା ଫକୀର' ଓ 'ଶନିସପ୍ତା' ପ୍ରଭୃତି ପାଞ୍ଚୋଟି ଉପନ୍ୟାସର ସ୍ରଷ୍ଟା । ତାଙ୍କ ସବୁ ଉପନ୍ୟାସ ମିଳନାନ୍ତ କ୍ରିୟାରେ ପରିସମାପ୍ତି ଘଟିଛି । ଉପନ୍ୟାସଗୁଡ଼ିକରେ ଚିନ୍ତାମଣି 'ଟ୍ରାଜେଡ଼ି'ର ସ୍ୱର ଯଥେଷ୍ଟ ଶୁଣାଇଛନ୍ତି । କିନ୍ତୁ ଏହି ସ୍ୱରର ମର୍ମବାଣୀ ହୋଇଛି ଆନନ୍ଦ ଦାନ । କଥା ସାହିତ୍ୟର ଅନ୍ୟ ଏକ ବିଭାବ କ୍ଷୁଦ୍ର ଗଳ୍ପ ରଚନାରେ ମଧ୍ୟ ଚିନ୍ତାମଣି କାର୍ପଣ୍ୟ ପ୍ରକାଶ କରିନାହାନ୍ତି । ତାଙ୍କର ଦୁଇଟି ଗଳ୍ପ ସଂକଳନ 'ପଞ୍ଚବଟୀ' ଓ 'ନନ୍ଦନବନ' ପ୍ରକାଶିତ ହୋଇଛି । ଗଳ୍ପଗୁଡ଼ିକ ରହସ୍ୟମୟ ଓ ଜୀବନଧର୍ମୀ ହୋଇ ଥିବାବେଳେ ଉପନ୍ୟାସରେ ସାମାଜିକ ଜୀବନର ପ୍ରତିଫଳନ ଘଟିଛି ।

ଏହିପରି ଭାବରେ କେବଳ ନାଟକ ବ୍ୟତୀତ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାୟ ସମସ୍ତ ବିଭାଗକୁ ଚିନ୍ତାମଣି ପରିପୁଷ୍ଟ କରିଯାଇଅଛନ୍ତି । ଶାରୀରିକ ପଙ୍ଗୁତ୍ୱ ସାଧନାର ଅନ୍ତରାୟ ହୋଇନାହିଁ । ତାହାଙ୍କ ଲେଖାରେ ମୌଳିକତା ଓ ସ୍ୱାତନ୍ତ୍ର୍ୟ ରହିଛି । ଚିନ୍ତାମଣି ରାଧାନାଥଙ୍କ ଭଳି ପ୍ରତିଭାବାନ ଓ ଫକୀର ମୋହନଙ୍କ ପରି ପ୍ରସିଦ୍ଧ କଥାକାର । ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ସ୍ୱୀୟ ନିଷ୍ଠାପର ନିରବଚ୍ଛିନ୍ନ ସାଧନା ବଳରେ ସେ ଗିରିଲଂଘନର ଯଥାର୍ଥ ଗୌରବ ଅର୍ଜନ କରିଅଛନ୍ତି ।

**ସହାୟକ ଗ୍ରନ୍ଥସୂଚୀ**

୧. ମହାନ୍ତି, ଜାନକୀବଲ୍ଲଭ । ଭ୍ରମଣ ପ୍ରିୟ କବି ଚିନ୍ତାମଣି : ନବ ଯୁଗର କବି ଓ କାବ୍ୟଧାରା । କଟକ, ଗ୍ରନ୍ଥମନ୍ଦିର, ୧୯୭୭ । ପୃ.୪୬ - ୫୫ ।

୨. ରାଉତ, ରମାକାନ୍ତ । କବିଶେଖର ଚିନ୍ତାମଣି ମହାନ୍ତିଙ୍କ ସାଧନା । ପ୍ରଜାତନ୍ତ୍ର, ଡ଼ିସେମ୍ବର ୧୭: ୨୦୦୨ ।

୩. ରାୟ, ଅପୂର୍ବ ରଞ୍ଜନ । ସୃଷ୍ଟି ବିଭୋର ବିମୁଗ୍ଧ ସ୍ରଷ୍ଟା କବିଶେଖର ଚିନ୍ତାମଣି ମହାନ୍ତି : ଉତ୍ତର ଓଡ଼ିଶା ପ୍ରବନ୍ଧମାଳା । ୨୦୦୬ । ପୃ. ୪୩ - ୪୮ ।

---

ସଂପାଦକ, ଉତ୍କଳ ସମ୍ମିଳନୀ ସମାଚାର
ସାମରାଏପୁର, ଗେଲପୁର, ଭଦ୍ରକ - ୭୫୬୧୮୧

# ଉତ୍କଳର ପୋଥି ପରମ୍ପରା

ପଣ୍ଡିତ ତ୍ରିଲୋଚନ ମିଶ୍ର

ଶ୍ରୀଜଗନ୍ନାଥ ଯେପରି ଓଡ଼ିଆ ଜାତିର ପରିଚୟ ସେହିପରି ଶ୍ରୀ ଜଗନ୍ନାଥ ଦାସଙ୍କ ନବାକ୍ଷରୀ ଭାଗବତ ପୋଥି ଓଡ଼ିଆ ଘରର ସର୍ବଶ୍ରେଷ୍ଠ ସମ୍ପଦ । ଏହି ପବିତ୍ର ତାଳପତ୍ର ପୋଥିକୁ ଖଞ୍ଜାର ଏକ ନିର୍ଦ୍ଦିଷ୍ଟ କୋଠରିରେ ବା ଗ୍ରାମର ଭାଗବତ ଗାଦି ଘରେ ବ୍ୟାସାସନ, ଖଟୁଲୀ,ବିମାନ ବା ସିଂହାସନ ଆଦିରେ ସଜାଇ ରଖି ନିତ୍ୟ ପୂଜନ,ଦର୍ଶନ, ପଠନ, ଶ୍ରବଣ ଆଦିରେ ବ୍ୟବସ୍ଥା କରାଯାଇଥାଏ । ଆମ ଉତ୍କଳର ତାଳପତ୍ର ''ପୋଥି ସଂସ୍କୃତି' ବିଶ୍ୱବିଦିତ । ବିଶ୍ୱର ସର୍ବାଧିକ ତାଳପତ୍ର ପୋଥି ଓଡ଼ିଶାର ମଠ, ମନ୍ଦିର, ଭାଗବତ ଘର, ଗାଦିଘରମାନଙ୍କରେ ଦେଖିବାକୁ ମିଳେ । ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ୫୦,୦୦୦ରୁ ଊର୍ଦ୍ଧ୍ୱ ପୋଥି ରାଜ୍ୟର ଭିନ୍ନ ଭିନ୍ନ ସ୍ଥାନରୁ ସଂଗୃହୀତ ହୋଇ ରଖାଯାଇଛି । ସଂସ୍କୃତ, ଓଡ଼ିଆ,ହିନ୍ଦୀ,ବଙ୍ଗଳା, ଆସାମୀ ଓ ପାର୍ଶି ଆଦି ଭାଷାର ବହୁ ଦୁର୍ଲଭ ତାଳପତ୍ର ପୋଥି ଓ ଚିତ୍ର ପୋଥି ସମ୍ଭାର ଲାଗି ବିଶ୍ୱସ୍ତରୀୟ ପୋଥି ସଂଗ୍ରହାଳୟ ତାଲିକାରେ ଏହାର ସ୍ୱତନ୍ତ୍ରତା ରହିଛି । ୧୯୩୨ ମସିହାରେ କଟକ ରେଭେନ୍‌ସା କଲେଜରେ ଜନ୍ମ ନେଇଥିବା ଓଡ଼ିଶା ସଂଗ୍ରହାଳୟର ପୋଥି ସଂଗ୍ରହ କାର୍ଯ୍ୟ ୧୯୩୬ରୁ ଆରମ୍ଭ ହୋଇଥିଲା । ୧୯୫୦ରେ ଏହା ଭୁବନେଶ୍ୱରସ୍ଥ ସର୍ଦ୍ଦାର ପଟେଲ ହଲ୍‌କୁ ସ୍ଥାନାନ୍ତରିତ ହୋଇ ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ସ୍ୱତନ୍ତ୍ର ପୋଥି ବିଭାଗ ପରିଚାଳିତ ହେଲା । ପରେ ପରେ ୧୯୬୦ ମସିହାରେ ନୂତନ ରାଜ୍ୟ ସଂଗ୍ରହାଳୟ ଭବନ ଉଦ୍‌ଘାଟିତ ହୋଇ ଦେଶ ସେବାରେ ନିଜକୁ ସାମିଲ କରି ଆଜି ଦେଶ ବିଦେଶର ପର୍ଯ୍ୟଟକ,ଐତିହାସିକ ଓ ଗବେଷକ ଆମର ଏହି ଦୁର୍ଲଭ ପୋଥି ସମ୍ଭାର ପ୍ରଲୋଭନରେ ବାରମ୍ବାର ଏଠାକୁ ଆସୁଥିବା ଆମ ପାଇଁ ଗର୍ବର ବିଷୟ । ତାଳପତ୍ର ପୋଥି ପ୍ରତି ଆଦିମ କାଳରୁ ଉତ୍କଳବାସୀଙ୍କ ପ୍ରୀତି ରହିଆସିଛି । ଓଡ଼ିଆ ଶିଶୁଟିର କର୍ଣ୍ଣବୋଧ ସମୟରେ କୁଳପୁରୋହିତ ଶିଶୁର ଖଡ଼ିଛୁଆଁ,ପୋଥିଛୁଆଁ, ଲେଖନୀ ଛୁଆଁ ସଂସ୍କାର ସମ୍ପନ୍ନ କରାଇ ଥାଆନ୍ତି । ଅକ୍ଷର ଶିକ୍ଷା ପରେ ନିତ୍ୟ ପୋଥି ଦର୍ଶନ, ପୂଜନ,ପଠନ,ଶ୍ରବଣ ପ୍ରତି ଶିଶୁକୁ ଆକର୍ଷିତ କରାଯାଇଥାଏ । ପିଲାର ପ୍ରତିଭା ବିକଶିତ ହେବା ପରେ ତାଳପତ୍ର ଖୋଦାରେ ଲେଖନୀ ଚାଳନ ବିଦ୍ୟା ଶିକ୍ଷା ଦିଆଯାଉଥିଲା । ଶ୍ରୀମଦ ଭାଗବତ ପୋଥି ଅଧ୍ୟୟନ ଓ ପଠନରେ ଦକ୍ଷତା ଥିବା ବ୍ୟକ୍ତିର ଆଦର ସର୍ବଦା ସମାଜରେ ରହିଆସିଛି । ପ୍ରତ୍ୟେକ ଓଡ଼ିଆର ଜନ୍ମଜାତକରେ ଜ୍ୟୋତିଷ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ତାଳପତ୍ର ଖୋଦାର ଲେଖନୀ ଚଳାଇ ଉତ୍କଳ ଗଜପତିଙ୍କ ନାମ ଅଙ୍କ ସ୍ଥାପନ ପୂର୍ବକ ଜନ୍ମ କୁଣ୍ଡଳୀ ପୂର୍ଣ୍ଣାଙ୍ଗ କରିଥାଆନ୍ତି । ବଞ୍ଚିଥିବା ପର୍ଯ୍ୟନ୍ତ ଏହି ଜାତକ ଖଣ୍ଡକ ଘରେ ସାଇତା ହୋଇ ରହିଥାଏ । କୁଳବୃଦ୍ଧ ମଧୁସୂଦନ ଓଡ଼ିଆ ଜାତିର ତାଳପତ୍ର ଜନ୍ମ କୁଣ୍ଡଳୀ ଦେଖାଇ ଇଂରେଜ ସରକାରକୁ ଶ୍ରୀମନ୍ଦିର ପ୍ରଶାସନ ନେବାକୁ ବାରଣ

କରିଥିଲେ । ଏହା ଏ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ଭୁଲି ପାରିବ ନାହିଁ । ତାଳପତ୍ର ପୋଥି ସମ୍ପଦକୁ ସଯତ୍ନେ ସାଇତି ରଖିବା ପାଇଁ ଗାଁ ଗାଁରେ ଭାଗବତ ପୋଥିଘର ପୋଥିଆ ସ୍ଥାନ, ପୋଥିଖଟୁଳି, ପୋଥିବ୍ୟାସାସନ, ପୋଥିମଣ୍ଡପ, ପୋଥିବିମାନ, ପୋଥିପେଡ଼ି, ପୋଥିପେଟେରା ଦେଖିବାକୁ ମିଳେ । ପୂର୍ବେ ରାଜା ମହାରାଜା, ଜମିଦାର, ଶ୍ରେଷ୍ଠୀମାନଙ୍କ ଘରେ କରଣ ଗୁମାସ୍ତା ନିଯୁକ୍ତ ହୋଇ ଆୟବ୍ୟୟ, ପର୍ବପର୍ବାଣି, ଯାନିଯାତ୍ରା ଆଦିର ସ୍ୱତନ୍ତ୍ର ସ୍ୱତନ୍ତ୍ର ପୋଥି ପ୍ରସ୍ତୁତ କରି ସଜାଇ ରଖୁଥିଲେ । ସାଧାରଣ ଚାଷୀଟିଏ ଅମଳ ଶସ୍ୟ ବିହନକୁ ଚିହ୍ନଟ କରିବା ପାଇଁ ଓଳିଆ, ମଲେଇ, ଘୁମ, କୋଠି ଆଦିରେ ବିବରଣୀ ଲେଖା ତାଳପତ୍ର ଖେଦା ଖୋଷିବାର ବିଧି ମଧ୍ୟ ଅଧୁନା ଓଡ଼ିଶାରେ ପ୍ରଚଳିତ । ଭାଗବତ ଟୁଙ୍ଗୀ, ଭାଗବତ ଘର, ପୋଥି ଘର ଓଡ଼ିଆ ଜାତିର ସ୍ୱତନ୍ତ୍ର ପରିଚୟ । ପୁରାଣ ପୋଥି ଗାଦିକୁ ବିମାନରେ ବୋହି ନେଇ ଗାଁ ଗାଁର ୧୨ ଗାଦି ମେଳଣ ପାଳନ କରିବା ସଂସ୍କୃତି ବର୍ତ୍ତମାନ ସୁଦ୍ଧା ବଞ୍ଚି ରହିଛି । ପ୍ରାଚୀ ତଟର ଏହି ମେଳଣକୁ ଶ୍ରୀମଦ ଭାଗବତ ପୋଥିଗାଦି ସହ ଶ୍ରୀଗୀତଗୋବିନ୍ଦ ପୋଥି ମଧ୍ୟ ବିମାନ ଆସ୍ଥାନରେ ବସି ଆସିବା ଦେଖାଯାଏ । ଲେଖନୀ ଓ ତାଳପତ୍ର ଖୋଦା ଉତ୍କଳୀୟ କରଣ ଘରର ସର୍ବଶ୍ରେଷ୍ଠ ସମ୍ପଦ । ପବିତ୍ର ଦଶହରା ଅବସରରେ ସେମାନଙ୍କ ଘରେ ଶିରସ୍ତା ପୂଜନରେ କେବଳ ଲେଖନୀ ଓ ତାଳପତ୍ର ଖୋଦା ଇଷ୍ଟମନ୍ତ୍ରରେ ପୂଜିତ ହୁଅନ୍ତି । ସୁନିଆ, ବାମନଜନ୍ମ ଅବସରରେ ରାଜା, ମହାରାଜା, ଗଜପତିଙ୍କ ଦର୍ଶନକୁ ଗଲେ କରଣ ପୁଅ ଶ୍ରୀଜଗନ୍ନାଥ ଓ ଶ୍ରୀ ଗଜପତିଙ୍କ ପ୍ରଶସ୍ତି ଗାନରେ ତାଳପତ୍ର ଖୋଦାଟିଏ ଭେଟି ଆକାରରେ ପ୍ରଦାନ କରି ଆତ୍ମସନ୍ତୋଷ ଲାଭ କରେ । ପୂର୍ବେ ଗଜପତି ତଥା ରାଜାଙ୍କ ପ୍ରଦତ୍ତ ଉପାଧି ଛାମୁକରଣ, ଶ୍ରୀକରଣ, କୋଠକରଣ, ଦେଉଳକରଣ, ବହିଦାର ଆଦିକୁ ଗର୍ବର ସହ ବଂଶାନୁକ୍ରମେ ଉତ୍କଳୀୟ କରଣ ସାଇତି ରଖିଛି । ଏସବୁ ଗଲା ଆମ ପୋଥିର ଗରିମା ଓ ଆମର ପୋଥି ପ୍ରୀତି । ବର୍ତ୍ତମାନ ଆସନ୍ତୁ ଆମ ପୋଥିର ଐତିହ୍ୟ ବିଷୟରେ ଅବଗତ ହେବା ।

ଉତ୍କଳର ପୋଥି ପରମ୍ପରା ୨୦୦୦ ବର୍ଷରୁ ଅଧିକ ପୁରାତନ । ପୋଥିରେ ନକ୍ସାଟିଏ ପ୍ରସ୍ତୁତ ନ କଲେ ଶିଳ୍ପୀ ମନ୍ଦିର, ପୋତାଶ୍ରୟ,ଦୁର୍ଗ, ରାଜପ୍ରାସାଦ ଆଦି ଗଢ଼ିବା ଅସମ୍ଭବ । ତେଣୁ ଆମ ଶିଳ୍ପ କଳା ସହ ପୋଥି ପରମ୍ପରା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଆମ ପୋଥି ସମ୍ପଦର ପରିଚୟ । ୧୮୫୯ ଇଂରେଜ ପାଦ୍ରି ରେଭେରେଣ୍ଡ ଲଙ୍ଗ୍ ପ୍ରସିଦ୍ଧ ଏସିଆଟିକ୍ ସୋସାଇଟି ପତ୍ରିକାରେ ଦର୍ଶାଇ ଥିଲେ । ପରବର୍ତ୍ତୀ ସଂଖ୍ୟାରେ ସୁଦକ୍ଷ ବ୍ରିଟିଶ ପ୍ରଶାସକ ଜନ୍ ବିମ୍ସ ଓ ମ୍ୟାକ୍‌ଡୋନାଲ୍ ବିସ୍ତୃତ ଭାବେ ଉତ୍କଳର ଦୁର୍ଲଭ ତାଳପତ୍ର ପୋଥି ସଂସ୍କୃତି ଉପରେ ପ୍ରବନ୍ଧ ରଚନା କଲେ । ସୂଚନା ପାଇଁ ୧୮୬୬ ନଅଙ୍କ ଦୁର୍ଭିକ୍ଷ ସମୟରେ ଦେଶ ବିଦେଶର ଗବେଷକମାନେ ଓଡ଼ିଶା ମୁହାଁ ହେଲେ ଓ ବହୁ ତାଳପତ୍ର ପୋଥି, ତମ୍ବାପୋଥି,ଭୁଜପତ୍ର ପୋଥି ଶାଗମାଛ ଦରରେ ନିଜ ନିଜ ସଂଗ୍ରହାଳୟ ପାଇଁ ସଂଗ୍ରହ କରିବାରେ ଲାଗିଲେ । ବର୍ତ୍ତମାନ ଲଣ୍ଡନର ବ୍ରିଟିଶ କାଉନ୍‌ସିଲ ଲାଇବ୍ରେରୀ,ଇଣ୍ଡିଆ ଅଫିସ୍ ଲାଇବ୍ରେରୀ, ଜର୍ମାନର ହାଇଡେଲ ବିଶ୍ୱବିଦ୍ୟାଳୟ ସଂଲଗ୍ନ ସାଉଥ ଏସିଆ ଇନ୍‌ଷ୍ଟିଚ୍ୟୁଟ୍, ସୁଇଜରଲ୍ୟାଣ୍ଡର ରିଚରବର୍ଗ ମ୍ୟୁଜିୟମ୍, ପୁନାର ଭଣ୍ଡାରକର ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍, ପଞ୍ଜାବର ସରସ୍ୱତୀ ମହଲ, କଲିକତା ଏସିଆଟିକ୍ ସୋସାଇଟି ଲାଇବ୍ରେରୀ ଆଦିରେ ବହୁ ସଂଖ୍ୟାରେ ଓଡ଼ିଶା ତାଳପତ୍ର ପୋଥି, ଓଡ଼ିଶା ତମ୍ବାପତ୍ର ପୋଥି, ହାତୀଦାନ୍ତ ପ୍ରସ୍ତୁତ ପୋଥି ସଂରକ୍ଷିତ ହୋଇ ଆମ ପୋଥି ଐତିହ୍ୟ ବିଷୟରେ ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିଚାଲିଛି । ଆମ ରାଜ୍ୟ ପୋଥି ସଂଗ୍ରହାଳୟର ସ୍ୱତନ୍ତ୍ର ପରିଚୟ ମଧ୍ୟ ବିଶ୍ୱ ସ୍ତରରେ ରହିଅଛି । ୧୯୩୬ରେ ଯେଉଁ ଦେଶପ୍ରାଣ ଜନନାୟକ, ଐତିହାସିକ, ଗବେଷକ ଏହି କାର୍ଯ୍ୟରେ ନଜକୁ ସାମିଲ କରିପାରିଥିଲେ ସେମାନଙ୍କ ମଧ୍ୟରେ କେଦାରନାଥ ମହାପାତ୍ର, ହରେକୃଷ୍ଣ ମହତାବ, ଗୋପାଳ ଚନ୍ଦ୍ର ପ୍ରହରାଜ, ବିନୋଦ କାନୁନ୍‌ଗୋ, ବାମଣ୍ଡା ରାଜା ସୁଢ଼ଳ ଦେବ, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପାରଳା ମହରାଜା କୃଷ୍ଣଚନ୍ଦ୍ର ଗଜପତି, ପଣ୍ଡିତ ନୀଳମଣି ମିଶ୍ର,

ନାରାୟଣ ତ୍ରିପାଠୀ, ଶ୍ୟାମ ସୁନ୍ଦର ତ୍ରିପାଠୀ, ପଣ୍ଡିତ କାଶୀନାଥ ମିଶ୍ର, ପଣ୍ଡିତ ବାଞ୍ଛାନିଧି ମିଶ୍ର, ରଘୁନାଥ ମିଶ୍ର, ପଣ୍ଡିତ ସଦାଶିବ ରଥଶର୍ମା, ପଣ୍ଡିତ ମାନଗୋବିନ୍ଦ ମହାସୁପକାର ଆଦିଙ୍କୁ ପ୍ରଥମେ ସ୍ମରଣ କରାଯାଏ । ଲେଖକଙ୍କ ପିତାମହ ପଣ୍ଡିତ ବାଞ୍ଛାନିଧି ମିଶ୍ରଙ୍କ ସହ ନାରାୟଣ ତ୍ରିପାଠୀ, ଶ୍ୟାମସୁନ୍ଦର ତ୍ରିପାଠୀ, ହରେକୃଷ୍ଣ ମହତାବ ଓ କେଦାରନାଥ ମହାପାତ୍ର ସାମିଲ ହୋଇ ପବିତ୍ର ପ୍ରାଚୀ ଅବବାହିକାରୁ ୩୦୦୦ରୁ ଊର୍ଦ୍ଧ୍ୱ ତାଳପତ୍ର ପୋଥି, ଚିତ୍ରପୋଥି, ତମ୍ବାପୋଥି, ଭୁଜପତ୍ର ପୋଥି ସଂଗ୍ରହ କରି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ କରିବାର ବ୍ୟବସ୍ଥା କରିଥିଲେ । ସେସବୁ ଦୁର୍ଲଭ ସଂଗ୍ରହ ମଧ୍ୟରେ ଶ୍ରୀଜୟଦେବ ବିରଚିତ ମୁଖ୍ୟ ତାଳପତ୍ର ପୋଥି ଶ୍ରୀଗୀତଗୋବିନ୍ଦ, ପଣ୍ଡିତ ବାଞ୍ଛାନିଧି ମିଶ୍ରଙ୍କ ''ପ୍ରାଚୀତୀର୍ଥ ମହାତ୍ମ୍ୟ'', ପଣ୍ଡିତ କାଶୀନାଥ ମିଶ୍ରଙ୍କ ପ୍ରାଚୀ ଲୀଳାମୃତ, ବୈଷ୍ଣବ ଦାସଙ୍କ ବୈଷ୍ଣବ ଲୀଳାମୃତ, ନବକଳେବର ଲୀଳାମୃତ, ଶ୍ରୀମଦ୍ ଭାଗବତ୍ ପୂର୍ଣ୍ଣାଙ୍ଗ ପୋଥି, ହରିବଂଶ ପୋଥି ପ୍ରଭୃତି ଦୁର୍ଲଭ ପୋଥିଥିବା ବିଷୟ ଲେଖକଙ୍କୁ ଜଣା । ଏତଦ୍‌ଭିନ୍ନ ବହୁ ଦୁର୍ଲଭ ଚିତ୍ରପୋଥିରେ ଉତ୍କଳର ପୁରାତନ ବେଶଭୂଷା, ପୂଜା, ଅର୍ଚ୍ଚନା, ପର୍ବପର୍ବାଣି, ଯାନିଯାତ୍ରା ସୁନ୍ଦର ଭାବେ ଅଙ୍କିତ ହୋଇଥିବା ଆମ ସମସ୍ତଙ୍କ ପାଇଁ ଗର୍ବର ବିଷୟ । ୧୯୯୦ ଦଶକରେ ଭାରତ ସରକାରଙ୍କ ଦ୍ୱାରା ଆୟୋଜିତ ଭାରତ ଉତ୍ସବ ଅବସରରେ ଉତ୍କଳ ତାଳପତ୍ର ପୋଥି, ଭୁଜପତ୍ର ପୋଥି, ତମ୍ବାପୋଥି, ଚିତ୍ରପୋଥି ବିଶ୍ୱବାସୀଙ୍କୁ ପ୍ରଦର୍ଶିତ କରିବାର ସୁଯୋଗ ମିଳିଥିଲା । ଉତ୍ସବ ପରେପରେ ବହୁ ଗବେଷକ ଆମ ପୋଥି ଗବେଷଣାରେ ମନଦେଇ ବିଶ୍ୱମାନ୍ୟତା ପାଇଛନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦ ବିରଚିତ ତମ୍ବା, ରୌପ୍ୟ ଓ ତାଳପତ୍ର ପୋଥି ଆଜି ମଧ୍ୟ କାକଟପୁର ପ୍ରାଚୀ ଆଶ୍ରମମାନଙ୍କରେ ସଂରକ୍ଷିତ ହୋଇରହିଛି । ଉତ୍କଳର ଏହି ସ୍ୱତନ୍ତ୍ର ପୋଥି ପରିଚୟକୁ ବଞ୍ଚାଇ ରଖିବାର ପ୍ରୟାସ ସରକାରୀ ସ୍ତରଠାରୁ ବେସରକାରୀ ସ୍ତର ପର୍ଯ୍ୟନ୍ତ ଚାଲୁରଖିବା ବିଧେୟ । ଗାଁ ଗଣ୍ଡାରେ ଲୁଚି ହଜି ଯାଉଥିବା ଏହି ଦୁର୍ଲଭ ପୋଥି ସମ୍ଭାରକୁ ବିଶ୍ୱବାସୀଙ୍କ ଦୃଷ୍ଟିକୁ ଆଣିବା ପାଇଁ ସଚେତନତାର ଆବଶ୍ୟକତା ରହଛି । ବହୁ ଅନୁରୋଧ ପରେ ଏବେ ସରକାର ୪୦ ହଜାର ଦୁର୍ଲଭ ପୋଥିକୁ ଇ-ପୋଥିରେ ସାମିଲ କରାଇବା ନିଶ୍ଚିତ ଭାବରେ ଏକ ଶୁଭ ସୂଚନା । ଗ୍ରାମୀଣ ପରିବେଶରେ ପୋଥି କର୍ମଶାଳାର ଆୟୋଜନ କରାଯିବା ଉଚିତ ବୋଲି ଲେଖକ ମନେ କରନ୍ତି । ଆସନ୍ତୁ, ଆମ ଉତ୍କଳୀୟ ସଂସ୍କୃତିର ଓ ଐତିହ୍ୟର ଏହି ମହାର୍ଘ ସମ୍ପଦକୁ ସବୁମତେ ସୁରକ୍ଷା ଦେବାକୁ ପ୍ରୟାସ କରିବା ।

ଆବାହକ
ସ୍ୱାଧୀନତା ସଂଗ୍ରାମୀ ସହିଦ୍ ସ୍ମୃତି ସଂସଦ
କାକଟପୁର, ପୁରୀ



# ମହାନ୍ ଜାତୀୟତାବାଦୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ

**ନୃସିଂହ ଚରଣ ସାହୁ**

ଉତ୍କଳର ଏକ ଉଦ୍‌ଯୋଗଶୀଳ ନିରାସକ୍ତ କର୍ମୀପୁରୁଷ ଓ ଜାତୀୟ ଜୀବନର ନାନା କ୍ଷେତ୍ରରେ ଅଗ୍ରଗାମୀ ଓଡ଼ିଆ । ଜନ୍ମ ୧୮୭୫ ସାଲ, ଜୁଲାଇ ଏକ ତାରିଖ । ନୂଆ ଗାଁ, ରସୁଲକୋଣ୍ଡା, ଗଞ୍ଜାମ । ପିତାଙ୍କ ନାମ ଜଗନ୍ନାଥ ପଟ୍ଟନାୟକ । ଗ୍ରାମ୍ୟ ବିଦ୍ୟାଳୟରେ ଶିକ୍ଷାରମ୍ଭ କରି, ୧୮୯୬ ସାଲରେ ମାନ୍ଦ୍ରାଜ ଖ୍ରୀଷ୍ଟିୟାନ୍ କଲେଜରୁ ବି.ଏ. ଡ଼ିଗ୍ରୀ ଲାଭ କରି ଉଚ୍ଚାଭିଳାଷୀ ଲକ୍ଷ୍ମୀନାରାୟଣ ତତ୍‌କାଳୀନ ସୁକଠୋର ଆଇ.ସି.ଏସ୍. ପ୍ରତିଯୋଗିତା ପାଇଁ ବିଲାତ ଯିବାର ଚେଷ୍ଟା କରିଥିଲେ । କିନ୍ତୁ ଜଣେ ତେଲୁଗୁ ଯୁବକଙ୍କ ଚକ୍ରାନ୍ତ ଫଳରେ ସେ ଅଭିଳାଷ ବିପର୍ଯ୍ୟୟରେ ପରିଣତ ହେଲା । ଉକ୍ତ ଯୁବକ ଲକ୍ଷ୍ମୀନାରାୟଣଙ୍କ କୋଷ୍ଠୀ କୌଶଳରେ ହସ୍ତଗତ କରି କର୍ତ୍ତୃପକ୍ଷଙ୍କ ଆଗରେ ଅଭିଯୋଗ ଆଣିଲେ ଯେ, ଲକ୍ଷ୍ମୀନାରାୟଣଙ୍କ କୋଷ୍ଠୀରେ ଥିବା ଜନ୍ମ ତାରିଖ ଓ ପରିଚୟପତ୍ରରେ ଥିବା ଜନ୍ମ ତାରିଖ ମଧ୍ୟରେ ପାର୍ଥକ୍ୟ ଅଛି । ପ୍ରାର୍ଥକ୍ୟ ପ୍ରକୃତରେ ଥିଲା, ମାତ୍ର ଏକ ଦିନ । କିନ୍ତୁ ସେଥିଯୋଗୁଁ ତାଙ୍କ ଅନୁମତିପତ୍ର ନାକଚ୍ ହେଲା ଓ ମିଥ୍ୟା ସ୍ୱୀକୃତି ଦେଇଥିବା ଅଭିଯୋଗରେ ଲକ୍ଷ୍ମୀନାରାୟଣଙ୍କୁ ଏକ ଦିନ କାରାଦଣ୍ଡ ଭୋଗ କରିବାକୁ ପଡ଼ିଥିଲା ।



ଏପରି ଅପ୍ରତ୍ୟାଶିତ ବିପର୍ଯ୍ୟୟ ହେତୁ ସେ କାଳରେ ତେଲୁଗୁ ପ୍ରଭାବିତ ଗଞ୍ଜାମରେ ଭବିଷ୍ୟତରେ ନିଜର କୌଣସି ଉନ୍ନତିର ଆଶା ନ ଦେଖି ଲକ୍ଷ୍ମୀନାରାୟଣ ଚାଲିଗଲେ ତତ୍କାଳୀନ ମଧ୍ୟପ୍ରଦେଶାନ୍ତର୍ଗତ ସମ୍ବଲପୁର ଜିଲ୍ଲାସ୍ଥିତ ସୁଦୂର ବରଗଡ଼କୁ, ସାମାନ୍ୟ କିରାଣୀ ଭାବରେ । କିରାଣୀ ଭାବରେ ଅଳ୍ପ କାଳ କାର୍ଯ୍ୟ କରିବା ପରେ ୧୯୦୪ ସାଲରେ ତତ୍କାଳୀନ ବଙ୍ଗ ସରକାରଙ୍କ ଅଧୀନରେ ସେ ମୁନ୍‌ସିଫ୍ ଚାକିରିରେ ନିଯୁକ୍ତି ପାଇଗଲେ । ଏହି ପଦରେ ସୁଖ୍ୟାତିର ସହିତ କାମ କରି ଓ କ୍ରମେ ସବ୍‌ଜଜ୍ ପଦକୁ ଉନ୍ନୀତ ହୋଇ ସେ ୧୯୩୦ରେ ଅବସର ଗ୍ରହଣ କଲେ । କିନ୍ତୁ ବଙ୍ଗ, ବିହାର ଓ ଓଡ଼ିଶାର ଯେଉଁସବୁ ଜାଗାରେ ସେ ଅବସ୍ଥାପିତ ହୋଇଥିଲେ, ସେ ପ୍ରତ୍ୟେକ ସ୍ଥାନରେ ସାଧାରଣ କଲ୍ୟାଣକର କାର୍ଯ୍ୟରେ ଯୋଗଦାନ କରି କୀର୍ତ୍ତି ରଖିଯାଇଛନ୍ତି । ଯଥା – ଯାଜପୁରରେ ବାର ଲାଇବ୍ରେରୀ, ପୁରୀରେ କୁଷ୍ଠାଶ୍ରମ, ଜଗନ୍ନାଥ କ୍ଲବ ଓ ରାମଚଣ୍ଡୀ ସାହିରେ ନିମ୍ନ ପ୍ରାଥମିକ

ବାଳିକା ବିଦ୍ୟାଳୟ ସ୍ଥାପନ । ଲକ୍ଷ୍ମୀନାରାୟଣଙ୍କ ସ୍ଥାପିତ ଶେଷୋକ୍ତ ବାଳିକା ବିଦ୍ୟାଳୟ ବର୍ତ୍ତମାନ ଏକ କଲେଜରେ ପରିଣତ । ସବ୍‌ଜଜ୍ ହେବାରେ ଲକ୍ଷ୍ମୀନାରାୟଣ, ଗଗନବିହାରୀ ଚୌଧୁରୀଙ୍କ ପରେ ଥିଲେ ଦ୍ୱିତୀୟ ଓଡ଼ିଆ । କାର୍ଯ୍ୟଦକ୍ଷତା ଯୋଗୁଁ ସେ ବ୍ରିଟିଶ ସରକାରଙ୍କଠାରୁ M.B.E. ଉପାଧି ମଧ୍ୟ ପାଇଥିଲେ ।

ଲକ୍ଷ୍ମୀନାରାୟଣଙ୍କ ଜୀବନର ସବୁଠାରୁ ଗୌରବୋଜ୍ଜ୍ୱଳ ସମୟ ହେଉଛି ସେଇ ଅବସର କାଳ, ଯେତେବେଳେ ସାଧାରଣତଃ ସରକାରୀ ଚାକିରିଆଙ୍କ କର୍ମମୟ ଜୀବନର ଅବସାନ ଘଟେ । ଏଇ ଅବସର କାଳରେ ସେ ଓଡ଼ିଶାର ତଥା ଓଡ଼ିଆ ଜାତିର ଅଭ୍ୟୁଦୟ ପାଇଁ ଅନେକ କାର୍ଯ୍ୟ କରିଯାଇଛନ୍ତି ।

### ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ

ଲକ୍ଷ୍ମୀନାରାୟଣ କୌଣସି ପ୍ରକାରରେ ଜଣେ ସାହିତ୍ୟିକ ନ ଥିଲେ କିମ୍ବା ସାହିତ୍ୟିକ ହେବାପାଇଁ ତାଙ୍କର ସାମାନ୍ୟତମ ଆକାଂକ୍ଷା ମଧ୍ୟ ନ ଥିଲା । କିନ୍ତୁ ଅନୁନ୍ନତ ମାତୃଭାଷା ଓଡ଼ିଆକୁ ପଡୋଶୀ ଭାଷାମାନଙ୍କ ସହ ସମକକ୍ଷ କରିବା ଉଦ୍ଦେଶ୍ୟରେ ସେ ରେଭେନ୍‌ସା କଲେଜର ତତ୍କାଳୀନ ଅଧ୍ୟାପକମାନଙ୍କୁ ନେଇ 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ' ଗଢିଥିଲେ । ଏହି ସଂଘ ପକ୍ଷରୁ ୪୦/୫୦ ଖଣ୍ଡ ଉତ୍କୃଷ୍ଟ ଗ୍ରନ୍ଥ ମଧ୍ୟ ପ୍ରକାଶିତ କରି ପକାଇଥିଲେ । ଓଡ଼ିଆ ଭାଷାର ଜ୍ଞାନକୋଷ ପ୍ରଣୟନ କରିବାର ଆଦ୍ୟ ପରିକଳ୍ପନା ଥିଲା ଲକ୍ଷ୍ମୀନାରାୟଣଙ୍କର । ତଥ୍ୟମୂଳକ ଜ୍ଞାନକୋଷ ରଚନା ପାଇଁ ରେଭେନ୍‌ସା କଲେଜରେ ସେ ପ୍ରାଥମିକ ଉଦ୍ୟମ ଆରମ୍ଭ କରିଦେଇଥିଲେ । ସେ ବଞ୍ଚିଥିଲେ ହୁଏତ ଓଡ଼ିଆ ଜ୍ଞାନକୋଷ ପାଇଁ ନୂତନ ଉଦ୍ୟମ କରିବାକୁ ପଡ଼ି ନଥାନ୍ତା । ଜଣେ ମୁନ୍‌ସିଫ୍ କିନ୍ତୁ ଯାହା ଆରମ୍ଭ କରିଥିଲେ, ଏ ରାଜ୍ୟର ଅଧ୍ୟାପକବୃନ୍ଦ ତାହା ବଞ୍ଚାଇ ରଖି ପାରିଲେ ନାହିଁ । ଲକ୍ଷ୍ମୀନାରାୟଣଙ୍କ ମୃତ୍ୟୁପରେ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘର ବିଲୟ ମଧ୍ୟ ହୋଇଗଲା ।

### ଜୀବନଚରିତ ଲେଖା ପ୍ରକାଶ

ପ୍ରଫେସର ପଠାଣି ପଟ୍ଟନାୟକ ଲେଖିଛନ୍ତି – ତାଙ୍କ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ବହୁ ଆଦର୍ଶ ଜୀବନଚରିତ ଲେଖାଇ ପ୍ରକାଶ କରିବାରେ ନେତୃତ୍ୱ ନେଇଥିଲା । ତାଙ୍କରି ଆନୁକୂଲ୍ୟରେ ଅନେକ ଶକ୍ତିଶାଳୀ ଲେଖକ ଜୀବନ ଚରିତ ଲେଖିବାରେ ହାତ ଦେଇଥିଲେ, ତହିଁର ଉଦ୍ଦେଶ୍ୟ ଥିଲା ବୀର ଜୀବନୀ ପ୍ରଚାର । ୧୯୨୬ ସାଲରେ ଦିବ୍ୟସିଂହ ପାଣିଗ୍ରାହୀଙ୍କ 'ମହାରାଜା ଶ୍ରୀ ରାମଚନ୍ଦ୍ର', ୧୯୨୭ ସାଲରେ ବନମାଳୀ ପଣ୍ଡାଙ୍କ 'ଦୟାନନ୍ଦ', ଜଗବନ୍ଧୁ ସିଂହଙ୍କ 'ବୁକାର ଓ୍ୱାସିଂଟନ୍', ପଦ୍ମଚରଣ ପଟ୍ଟନାୟକଙ୍କ 'ମାର୍ଟିନ୍ ଲୁଥର', ଲକ୍ଷ୍ମୀନାରାୟଣ ସାହୁଙ୍କର 'କର୍ମବୀର ଗୋଖଲେ', ୧୯୨୮ ସାଲରେ ଦାମୋଦର ମିଶ୍ରଙ୍କ 'ମହମ୍ମଦ' ଏବଂ ୧୯୨୯ ସାଲରେ ବାମଦେବ ମିଶ୍ରଙ୍କ 'ଔରଙ୍ଗଜେବ' ପ୍ରକାଶ ପାଇଲା । ମୋଟରେ ଏହା ୧୩ଖଣ୍ଡ ଜୀବନୀ ପୁସ୍ତକ ପ୍ରକାଶ କରି ଲୋକମାନଙ୍କ ଭିତରେ ବଡ଼ ହେବାପାଇଁ ସଚେତନତା ସୃଷ୍ଟି କରିଥିଲା ।

### ଉଦାର ସଂସ୍କାରକ

ଲକ୍ଷ୍ମୀନାରାୟଣ ଯୌବନରେ ବାଗ୍ମୀ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସି ବ୍ରାହ୍ମଧର୍ମ ଗ୍ରହଣ କରି ଜଣେ ବଙ୍ଗୀୟ ମହିଳାଙ୍କୁ ବିବାହ କରିଥିଲେ । ସେତେବେଳେ ଅନେକ ଓଡ଼ିଆ ଭଦ୍ରଲୋକଙ୍କ ଜୀବନରେ ଏହି ପ୍ରକାରର ବିବାହ ଯୋଗୁଁ ପାରିବାରିକ ଓ ସାମାଜିକ ଜୀବନରେ ଓଡ଼ିଆତ୍ୱ ଲୋପ ପାଇଯାଇଥିଲା । କିନ୍ତୁ ଲକ୍ଷ୍ମୀନାରାୟଣଙ୍କ ଦୃଢ ବ୍ୟକ୍ତିତ୍ୱ ଯୋଗୁଁ ତାଙ୍କ ପରିବାରରେ ଏପରି ଘଟିଲା ନାହିଁ । କେବଳ ସେଇଥିପାଇଁ ହିଁ ସେ ଓଡ଼ିଆ ଜାତି ପାଖରେ ଆଦର୍ଶ ହୋଇ ରହିବେ । ଲକ୍ଷ୍ମୀନାରାୟଣ ଥିଲେ ଆଦର୍ଶ ପିତା । ପିଲାଙ୍କୁ ସବୁପ୍ରକାର ସୁବିଧା ଦେଉଥିଲେ ମଧ୍ୟ ସେମାନଙ୍କୁ କଠୋର ଶୃଙ୍ଖଳା ଭିତରେ ରଖୁଥିଲେ ।

### ଶିଳ୍ପବିଳାସୀ ଲକ୍ଷ୍ମୀନାରାୟଣ

ଓଡ଼ିଶାରେ ଶିଳ୍ପର ପ୍ରସାର ପାଇଁ ସେ ଏକାଧାରରେ ଓଡ଼ିଶା ବ୍ୟାଙ୍କ ସ୍ଥାପନ କଲେ ଓ ସ୍ଥାପନ କଲେ,

'ଓଡ଼ିଶା- କେମିକାଲ୍' । ତରୁଣ ଓଡ଼ିଆଙ୍କୁ ଶିଳ୍ପ ମନୋଭାବ ସମ୍ପନ୍ନ କରାଇବା ଦିଗରେ, ବେଙ୍ଗଲ୍ କେମିକାଲ୍‌ରେ ସେମାନଙ୍କୁ ଶିକ୍ଷାର୍ଥୀରୂପେ ଗ୍ରହଣ କରିବା ପାଇଁ ସ୍ୱର୍ଗତଃ ପ୍ରଫୁଲଚନ୍ଦ୍ର ରାୟଙ୍କୁ ଲକ୍ଷ୍ମୀନାରାୟଣ ଅନୁରୋଧ କରିଥିଲେ । କିନ୍ତୁ ଅପମାନଜନକ ଉତ୍ତର ପାଇଥିଲେ ଯେ, 'ଓଡ଼ିଆମାନଙ୍କ ମୁଣ୍ଡରେ କିଛି ପଶିବ ନାହିଁ' । ଜାତି ପ୍ରତି ଏହି ଅପମାନର ଜବାବ ଦେବାପାଇଁ ଲକ୍ଷ୍ମୀନାରାୟଣ ସଂକଳ୍ପ କଲେ ଏବଂ 'ବେଙ୍ଗଲ୍ କେମିକାଲ୍' ଭଳି 'ଓଡ଼ିଶା କେମିକାଲ୍' ସ୍ଥାପନ କଲେ । ଏଥିପାଇଁ ଦେଶବାସୀଙ୍କଠାରୁ ଅତି ଅଳ୍ପ ପରିମାଣ ଅର୍ଥ ମିଳିଥିଲା । ତେଣୁ ଲକ୍ଷ୍ମୀନାରାୟଣ ନିଜ ଜୀବନର ସମସ୍ତ ସଞ୍ଚିତ ଧନ ଓ ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି (ଯାହାର ମୂଲ୍ୟ ସେ ସମୟରେ ପ୍ରାୟ ୫୦ ହଜାର ଟଙ୍କା ହେବ) ସବୁକିଛି ବିନିଯୋଗ କରି ଓଡ଼ିଶା କେମିକାଲ୍ ସ୍ଥାପନ କରିଥିଲେ । ସେତେବେଳକୁ ଲକ୍ଷ୍ମୀନାରାୟଣଙ୍କ ବୟସ ୬୦ ବର୍ଷ ଅତିକ୍ରମ କରିଯାଇଥିଲା । ତାଙ୍କ ତିନି ପୁତ୍ର ସେତେବେଳକୁ ନାବାଳକ ଓ ବିଦ୍ୟାର୍ଥୀ ଥିଲେ । ଏକମାତ୍ର କନ୍ୟା ଥିଲେ ପୁଣି ଅବିବାହିତା । ଲକ୍ଷ୍ମୀନାରାୟଣ ଇଚ୍ଛା କରିଥିଲେ ତାଙ୍କ ପିଲାମାନଙ୍କ ନିରାପଦ ଭବିଷ୍ୟତ ପାଇଁ ବ୍ୟାଙ୍କରେ ଥିବା ଟଙ୍କା, ଜମିବାଡ଼ି ଇତ୍ୟାଦି ସାଇତି ରଖି ଯାଇଥାନ୍ତେ । ମାତ୍ର ଉଚ୍ଚମନା ଲକ୍ଷ୍ମୀନାରାୟଣ ତାଙ୍କ ଜୀବନର ସମସ୍ତ ସଞ୍ଚିତ ଧନକୁ ସ୍ୱପ୍ନ ବିଳାସୀ ମଧୁବାବୁଙ୍କ ଭଳି ଓଡ଼ିଆ ଜାତିର କଲ୍ୟାଣ କଳ୍ପେ ଅକାତରେ ମୁର୍ଛି ଦେଇଥିଲେ । ଶେଷରେ ଲକ୍ଷ୍ମୀ ନାରାୟଣଙ୍କ ସ୍ୱପ୍ନ ମଧ ବ୍ୟର୍ଥ ହେଲା, ଓଡ଼ିଶା କେମିକାଲସ୍, ଉତ୍କଳ ଟ୍ୟାନେରୀ ପରି ଦେବାଳିଆ ହୋଇଗଲା । ଫଳରେ ଲକ୍ଷ୍ମୀନାରାୟଣଙ୍କୁ ଶେଷ ଜୀବନରେ ଘୋର ଅର୍ଥାଭାବର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

### ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରେରଣା

ଲକ୍ଷ୍ମୀନାରାୟଣ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଜେଲ ଯାଇ ନଥିଲେ ମଧ ବହୁ ଯୁବକଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ପ୍ରେରଣା ଦେଇଥିଲେ । ସେମାନଙ୍କ ମଧ୍ୟରେ ବରଗଡ଼ର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାଗୀରଥି ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀ ଅନ୍ୟତମ ।

### ପୁତ୍ର ବିଜୟାନନ୍ଦ

ଆହୁରି ମଧ୍ୟ ଜଣାଯାଏ ଯେ, ଲକ୍ଷ୍ମୀନାରାୟଣ ବାବୁ ପାରଳାଖେମୁଣ୍ଡିର ଦେଶପ୍ରାଣ ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କର ଦେଓ୍ୱାନ ଥିଲେ । ଥରେ ସେ କଟକରୁ ଖବର ପାଇଲେ, ପୁତ୍ର ବିଜୟାନନ୍ଦ କାହାକୁ କିଛି ନ କହି ଲୁହା ସିନ୍ଦୁକ ଭାଙ୍ଗି ଟଙ୍କା ନେଇ ଯାଉଛି । ତାଙ୍କଠାରୁ ବିଜୟାନନ୍ଦଙ୍କ ସାହସ କଥା ଶୁଣି ଗଜପତି କୃଷ୍ଣଚନ୍ଦ୍ର ବିଜୟାନନ୍ଦଙ୍କୁ ଲଣ୍ଡନରେ ଅଟୋମୋବାଇଲ ଇଂଜିନିୟରିଂ ପଢାଇବା ପାଇଁ ପରାମର୍ଶ ଦେଇଥିଲେ । ଫଳରେ ବିଜୁବାବୁ ଲଣ୍ଡନରେ ଅଟୋମୋବାଇଲ ଇଂଜିନିୟରିଂ ସହ ବିମାନ ଚାଳନାରେ ତାଲିମ ଗ୍ରହଣ କରି ଜଣେ କୃତବିଦ୍ୟ ପାଇଲଟ୍ ଭାବରେ ପ୍ରାଥମିକ ଜୀବନରେ ସୁନାମ ଅର୍ଜନ କରିଥିଲେ । ପରବର୍ତ୍ତୀ ଅବସ୍ଥାରେ ସେ ଯେ କଳିଙ୍ଗବାସୀଙ୍କ ହୃଦୟରେ ମୁକୁଟ ବିହୀନ ସମ୍ରାଟ୍ ଭାବେ ଅବିସ୍ମରଣୀୟ ହୋଇଯାଇଥିଲେ, ଏହା ପଛରେ ପିତା ଲକ୍ଷ୍ମୀନାରାୟଣଙ୍କ ଦେଶବାସୀଙ୍କ ପାଇଁ ତ୍ୟାଗ ଓ ତପସ୍ୟାର ପ୍ରେରଣା ରହିଥିଲା । ଏହି ମହାନ୍ ଆତ୍ମାଙ୍କର ୧୯୪୧ ମସିହା ଫେବୃଆରୀ ମାସରେ ପରଲୋକ ହୋଇଥିଲା ।

ଜଣେ ସୁଦକ୍ଷ ସରକାରୀ କର୍ମଚାରୀ ଭାବରେ ସେ ଥିଲେ ଆଦର୍ଶବାଦୀ ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତି । ପରବର୍ତ୍ତୀ ସମୟରେ ଓଡ଼ିଆ ଲୋକଙ୍କୁ ପ୍ରତିବେଶୀମାନଙ୍କ ପରି ଶିଳ୍ପ, ସାହିତ୍ୟ ଓ ଶିକ୍ଷା କ୍ଷେତ୍ରରେ ସମର୍ଥ କରିବା ପାଇଁ ସେ ଅକାତରେ ନିଜର ଅର୍ଥ, ଶକ୍ତି ଓ ସମୟ ଉତ୍ସର୍ଗ କରିଥିଲେ । ଏପରି କରି ଲକ୍ଷ୍ମୀନାରାୟଣ ଓଡ଼ିଆ ଜାତି ଆଗରେ ଯେଉଁ ତ୍ୟାଗର ଆଦର୍ଶ ଛାଡ଼ି ଯାଇଛନ୍ତି, ତାହାର ତୁଳନା ବିରଳ ।

---

ସମ୍ପାଦକ, 'ଆମେ ଓଡ଼ିଆ'
ପାଣ୍ଡବ ନଗର, ଆରପି-୧୨୫, ଟଙ୍କପାଣି ରୋଡ୍
ଭୁବନେଶ୍ୱର-୭୫୧୦୧୮

# ଜାତୀୟ ସଂହତିରେ ବାଲିପଦରର ଯୋଗୀ ମଠ ପ୍ରସ୍ତର ଚିତ୍ରକଳା

**ଡଃ. ବ୍ରଜ କିଶୋର ପାଢ଼ୀ**

ଓଡିଶାରେ ଅଗଣିତ ପ୍ରାଚୀନ ପ୍ରସ୍ତରକଳା ଦେଖିବାକୁ ମିଳେ । କେ.ଏସ ଜୈଶଓ୍ୟାଲ, ସତ୍ୟ ନାରାୟଣ ରାଜଗୁରୁ, ଜିତା ମିତ୍ର ପ୍ରସାଦ ସିଂହଦେଓ ଏବଂ ଏହି ପାଣ୍ଡୁ ଲିପିର ଲେଖକ ଦ୍ୱାରା ଅନେକ ପ୍ରସ୍ତର ଚିତ୍ରକଳା ଆବିଷ୍କୃତ ହୋଇଛି । ଏମାନେ ସମସ୍ତେ ଅତ୍ୟନ୍ତ ସୁନ୍ଦର ଭାବରେ ପ୍ରସ୍ତର ଚିତ୍ର କଳାର ରଙ୍ଗକୁ ନେଇ ବର୍ଣ୍ଣନା କରିଛନ୍ତି ଏବଂ ମତ ଦେଇଛନ୍ତି । ଅନ୍ୟାନ୍ୟ ଐତିହାସିକମାନେ ସେହି ଆବିଷ୍କୃତ ପ୍ରସ୍ତର ଚିତ୍ରକଳାଗୁଡିକରେ ଥିବା ଗୁରୁତ୍ୱକୁ ବ୍ୟାଖ୍ୟା କରିଛନ୍ତି ।

ବର୍ତ୍ତମାନ କୋକଳବା ଏବଂ ବାଲିପଦର ଗ୍ରାମରେ ଥିବା ପ୍ରସ୍ତର ଚିତ୍ରକଳା ଗୁଡିକୁ ଲେଖକ ଆବିଷ୍କୃତ କରିଛନ୍ତି । ଉଭୟ ସ୍ଥାନ ଗଂଜାମ ଜିଲ୍ଲାରେ ଅବସ୍ଥିତ ।

ଯୋଗୀମଠ ଗୁମ୍ଫାଟି ବାଲିପଦର ଗ୍ରାମଠାରୁ ଏକ କି.ମି ଦୂରରେ ଅଛି । ଡକ୍ଟର ଜିତାମିତ୍ର ପ୍ରସାଦସିଂହ ଦେଓଙ୍କ ଆବିଷ୍କୃତ ଯୋଗୀ ମଠ ଗୁମ୍ଫାଟି ଖଡିଆଳ ସହରଠାରେ ଅଛି । ଏହି ପ୍ରସ୍ତର ଚିତ୍ରକଳା ସହ ବାଲିପଦର ପ୍ରସ୍ତର ଚିତ୍ରକଳାର ଶୈଳୀକୁ ତୁଳନା କରିହେବ । ଯୋଗୀମଠ ପ୍ରସ୍ତର ଚିତ୍ରକଳା ଖଡିଆଳ ସହରଠାରୁ ତିନି କି.ମି ଦୁରରେ ଏକ ଗୁମ୍ଫା ଭିତରେ ଅଛି । ଅତି ଆଶ୍ଚର୍ଯ୍ୟ କଥା ଯେ ଖଡିଆଳର ଯୋଗୀମଠ ପ୍ରସ୍ତର ଚିତ୍ରକଳା ବାଲିପଦରରୁ ଯୋଗୀମଠ ଘଟଣା କ୍ରମେ ଗୋଟିଏ ନାମ ବହନ କରେ । କେବଳ ନାମ ମାଧ୍ୟମରେ ନୁହେଁ ଉଭୟ ପ୍ରସ୍ତର ଚିତ୍ରକଳା ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ଉଭୟ ଚିତ୍ର କଳାରେ ଗାଈ, ମନୁଷ୍ୟ ପ୍ରସ୍ତର କଳା ପ୍ରସ୍ତର ଚିତ୍ରରେ ଖୋଦିତ ହୋଇଛି । ପ୍ରସ୍ତର ଦ୍ୱୟ ଚିତ୍ର ଅନେକ ପ୍ରସଙ୍ଗକୁ ଏକାଠି ପରିବେଷଣ କରୁଛି ଏବଂ ମହତ୍ୱକୁ ପ୍ରତିପାଦନ କରୁଛି । ଏପରି ଦୁଇଟି ସ୍ଥାନର ପ୍ରସ୍ତର ଚିତ୍ର କଳାରେ ଗୋଟିଏ ପ୍ରକାରର ଚିତ୍ର ଓ ଭାବଥାଇ ଅନ୍ୟ ସ୍ଥାନରେ ପାଇବା ବିରଳ ।

ବାଲିପଦର ଯୋଗୀମଠ ଗୁମ୍ଫା ପାହାଡରେ ଅନେକ ଗୁମ୍ଫା ଅଛି । ମଧ୍ୟଭାଗରେ ଯୋଗୀ ମଠ ଗୁମ୍ଫାଟି ରହିଛି । ଗୁମ୍ଫା ଭିତରକୁ ଯିବା ପାଇଁ ଦୁଇଟି ପ୍ରବେଶ ପଥ ରହିଛି । ଦୁଇଟି ପ୍ରବେଶପଥ ମଧ୍ୟରେ ଦୂରତା ପ୍ରାୟ ୨୦ ଫୁଟରୁ ଅଧିକ ହେବ । ଗୁମ୍ଫା ଭିତରକୁ ମାତ୍ର ଗୋଟିଏ କୋଠରୀ ଅଛି । କୋଠରିଟି ଅର୍ଦ୍ଧ ବର୍ତ୍ତୁଳାକାର ହୋଇଛି ।

କୋଠରିର ଲମ୍ବ ୨୫ ଫୁଟ ପ୍ରସ୍ଥ ୧୨ ଫୁଟ ଉଚ୍ଚତା ଠାଏଁ ଠାଏଁ ୫ ଫୁଟରୁ ଦଶ ଫୁଟ ହେବ । ଗୁମ୍ଫାର ଦକ୍ଷିଣ ପାଶ୍ୱରେ ଏକ ପଥରର ଶୋଇବା ପାଇଁ ବା ବିଶ୍ରାମ ନେବା ପାଇଁ ପ୍ରସ୍ତରଟି ଖଟ ପରି ରହିଛି । ଏହାର ଲମ୍ବ ସାତ ଫୁଟ ପ୍ରସ୍ଥ ଚାରିଫୁଟ ଏବଂ ଉଚ୍ଚତା ଦେଢ଼ ଫୁଟ ହେବ । ଏହା ଗୁମ୍ଫାର ଭିତରେ ଅଛି । ପଛ ପାର୍ଶ୍ୱ କାନ୍ଥଟି ଚିତ୍ର ଅଙ୍କନ ନିର୍ମିତ ମସୃଣ କରାଯାଇ ସମ୍ପୂର୍ଣ୍ଣ ଭାବେ କଳାପଟା ପରି ସମ୍ମୁଖ ଭାଗଟି ସମତଳ ଅଛି ।

ଚିତ୍ର କାନ୍ଥର ଡାହାଣ ପାର୍ଶ୍ୱରେ ଦୁଇଟି ପଶୁର ଚିତ୍ର ଅଛି । ସେମାନେ ମୁହାଁ ମୁହିଁ ହୋଇ ଠିଆ ହୋଇଛନ୍ତି । ପ୍ରସ୍ତର ଖଣ୍ଡର ବର୍ଣ୍ଣ ଟିଂଟ କଲର । ଏହା ମଧ୍ୟ ଭାଗରେ ରହି ସେମାନଙ୍କୁ ଦୁଇ ଭାଗରେ ବିଭକ୍ତ କରି ପ୍ରତ୍ୟେକଙ୍କ ଉପସ୍ଥିତିକୁ ସୂଚିତ କରୁଛି । ସେହି ପଶୁମାନଙ୍କ ଶରୀର ଈଷତ କୋମଳ ଶାଗୁଆ ରଙ୍ଗରେ ରଙ୍ଗୀନ କରାଯାଇଛି । ବାମ ପାର୍ଶ୍ୱର ପଶୁଟି ଡାହାଣ ପାର୍ଶ୍ୱର ପଶୁଠାରୁ ଆକାରରେ ଦୁଇ ଗଣ ବଡ । ସେମାନେ ପରସ୍ପର ହିଂସ୍ର ରୂପରେ ଦଣ୍ଡାୟମାନ ହୋଇଛନ୍ତି । ସେମାନେ ମୁଖଗୁଡିକ ଖୋଲି ଗର୍ଜନ କରୁଛନ୍ତି । ଏଥିରୁ ଜଣାପଡେ ଯେ ସେମାନେ ପରସ୍ପରକୁ ଦେଖି ହିଂସ୍ର ହୋଇ ପଡିଛନ୍ତି ।

ଏହି ଚିତ୍ରକଳାର ବାମ ପାର୍ଶ୍ୱରେ ଏକ ମନୁଷ୍ୟର ଚିତ୍ର ଅଙ୍କନ ହୋଇଛି । ମନୁଷ୍ୟଟି ଚାଷ କାର୍ଯ୍ୟରେ ବ୍ୟସ୍ତଥିବା ଜଣାପଡୁଛି । ସେ ହାତରେ ଚାଷ କରିବା ଯନ୍ତ୍ର ଲଙ୍ଗଳଟିଏ ଧରିଛି । ଏହା ସବୁ ଶ୍ୱେତ ବର୍ଣ୍ଣରେ ଚିତ୍ରିତ ହୋଇଛି ।

ଏହି ଦୁଇ ଚିତ୍ର ମଧ୍ୟଭାଗରେ ଆଉ ଏକ ପ୍ରସ୍ତର ଚିତ୍ର ଖୋଦିତ ହୋଇଛି । ଏଠାରେ ଦଶର ଉର୍ଦ୍ଧ୍ୱ ବର୍ତ୍ତୁଳାକାର କଳା ଚିତ୍ର ଅଙ୍କନ ହୋଇଛି । ଏହାର ଗୋଲେଇ ବ୍ୟାସ ଆଠ ଇଂଚରୁ ଚଉଦ ଇଂଚ ହେବ । ଏହା ଈଷତ ଶ୍ୱେତ ବର୍ଣ୍ଣର । ଏହି ଚିତ୍ରଗୁଡିକ ତିନି କୋଣିୟ ଭଙ୍ଗିଳ ଚିତ୍ର କଳାକୁ ପ୍ରଦର୍ଶିତ କରୁଛି ।

ଗୁମ୍ଫା ବାହାର ପାର୍ଶ୍ୱରେ ବାମ ଭାଗରେ ଦ୍ୱାର ଦେଶରେ ଟିଂଟ ରଙ୍ଗର ପ୍ରଲେପ ଚିତ୍ର କରାଯାଇଛି । ଏହାର ଉଚ୍ଚତା ଦଶ ଫୁଟ ଏବଂ ପ୍ରସ୍ଥ ଆଠ ଇଂଚରୁ ପନ୍ଦର ଇଂଚ ।

ବୌଦ୍ଧ ଧର୍ମର ପ୍ରବକ୍ତାମାନେ ମଠ ସଂସ୍କୃତି ଆରମ୍ଭ କଲେ । ବୁଦ୍ଧଖୋଲ ଯାହାକି ବୁଗୁଡା ସହରଠାରୁ ତିନି କି.ମି ଦୁରତାରେ ଅଛି । ଏହା ବୌଦ୍ଧ ସଂସ୍କୃତ ପାଇଁ ବିଖ୍ୟାତ । ଏହି କ୍ରମରେ ବାଲିପଦର ଯୋଗୀ ମଠ ଏବଂ ଯୋଗୀ ମଠର ପ୍ରସ୍ତର ଚିତ୍ରକଳା ପ୍ରାଧାନ୍ୟ ଲାଭ କରିବା ସହିତ ବୁଦ୍ଧଖୋଲର ବୌଦ୍ଧ ଧର୍ମକୁ ପ୍ରୋତ୍ସାହିତ କରେ । ଏହା ମଧ୍ୟ ପ୍ରମାଣିତ କରେ ଯେ ଗୁମ୍ଫାଗୁଡିକ ବାସସ୍ଥଳୀ ବା ଆୟୁର୍ବେଦ ବିଜ୍ଞାନର ପ୍ରସ୍ତୁତିରେ ପରୀକ୍ଷାଗାର ଥିଲା । ପୃଥିବୀର ସମସ୍ତ ବ୍ୟକ୍ତିଙ୍କର ଅଳ୍ପ ବହୁତ ଚିତ୍ରକଳା ଉପରେ ଜ୍ଞାନ ଅଛି ଏବଂ ଚିତ୍ର ଆଙ୍କିବାକୁ ପ୍ରୟାସ କରିଥାନ୍ତି । ଏହା ମନୁଷ୍ୟର ମାନସିକ ପ୍ରବୃତ୍ତି । Fresco Painting ବା ଭିତ୍ତି ଚିତ୍ର କଳା ଚିତ୍ରକଳାର ଏକ ଅଂଶ । ସମୟାନୁକ୍ରମେ ଶିଳ୍ପୀ କାରିଗରମାନେ ନିଜ ବୁଦ୍ଧି ଏବଂ ଅଭିଜ୍ଞତା ମାଧମରେ ଏହାକୁ ସାଧାରଣ ପରିବର୍ତ୍ତନ କରିଛନ୍ତି । ଭାରତରେ ଅନେକ ପ୍ରସ୍ତର ଚିତ୍ରକଳା ଅଛି । ସେଗୁଡିକର ରଙ୍ଗ ଲାଲ ଧଳା Occur ଇତ୍ୟାଦି । ଗ୍ରୀକ୍ ଐତିହାସିକ ଯୁଗର ପ୍ରସ୍ତର ଚିତ୍ରକଳାରେ ଦେଖିବାକୁ ମିଳେ । ଅନେକ ଭିତ୍ତି ଚିତ୍ରକଳା ଓଡିଶାରେ ଦେଖିବାକୁ ମିଳେ । ସେଗୁଡିକ ହେଲା- ଉଲାପଗଡ ବିକ୍ରମ ଖୋଲ, ମାନିକ ଗଡ, ଉଷା କୋଠୀ, ଗୁଡହାଣ୍ଡୀ, ଘାଟ ଘୁମର ଯୋଗୀ ମଠ, ସୀତାବିଂଝି, ନରାଜ, ଲକ୍ଷ୍ମୀ ମୁଣ୍ଡିଆ ପାହାଡ, କୋକଳବା, ରାଜ ଉଆସ, ମନ୍ଦିର ମଠ ଇତ୍ୟାଦି । ଭିତ୍ତିଚିତ୍ର କଳା ଗୋଟିଏ ଅଂଚଳର ଧାରାବାହିକ ସଂସ୍କୃତି କଳା ରାଜନୀତି ଅର୍ଥନୀତି ଧର୍ମ ବାଣିଜ୍ୟ ଦର୍ଶନ ପୋଷାକ ବିଜ୍ଞାନ କାରିଗରୀ ଇତ୍ୟାଦିକୁ ପ୍ରଦର୍ଶିତ କରିଥାଏ ।

ଖଡିଆଳର ଯୋଗୀ ମଠର ପ୍ରସ୍ତର ଚିତ୍ରକଳା ବିଷୟରେ Odisha Research Journal Vol-XXII No.2 ରେ ପ୍ରଥମ ପ୍ରକାଶିତ ହୋଇଥିଲା । ଏଥିରେ ଡକ୍ଟର ଜିତାମିତ୍ର ପ୍ରସାଦ ସିଂହଦେଓ ଚିତ୍ରକଳାଟିକୁ Neolithic Age ସମୟର ବୋଲି ଚିହ୍ନିତ କରିଛନ୍ତି । ଦ୍ୱିତୀୟରେ ନୂଆପଡା, ଜିଲ୍ଲା ଖଡିଆଳ ସନ୍ନିକଟ ଘାଟ ଘୁମର ପ୍ରସ୍ତର ଚିତ୍ରକଳା ଯାହାକି ବୈଜଲପୁର ଏବଂ ଡୁମେର ବାହାଲ ଗ୍ରାମ ମଧ୍ୟରେ ଅବସ୍ଥିତ ଏବଂ ଉଡନ୍ତି ନଦୀର ବାମ କୂଳରେ ଅଛି । ତାହାକୁ ମଧ୍ୟ ଡ. ଜିତା ମିତ୍ର ପ୍ରସାଦ ସିଂହଦେଓ ୧୯୮୦ ମସିହା ମାର୍ଚ୍ଚ ମାସ ୩ ତାରିଖରେ ଆବିଷ୍କୃତ କରିଥିଲେ । ଏହି ପ୍ରସ୍ତର ଚିତ୍ର

କଳାକୁ ସେ Neolithic Age ସମୟର ବୋଲି ଚିହ୍ନିତ କରିଛନ୍ତି ।

ଡଃ ଜିତା ମିତ୍ର ପ୍ରସାଦ ସିଂହଦେଓ ପ୍ରସ୍ତର ଚିତ୍ର କଳାର ରଙ୍ଗ ବ୍ୟପ୍ତି ଓ ବିଭିନ୍ନତାକୁ ନେଇ ଅନେକ କିଛି ବର୍ଣ୍ଣନା କରିଛନ୍ତି । ଖଡିଆଳର ଯୋଗୀ ମଠର ପ୍ରସ୍ତର ଚିତ୍ର କଳା Red Tint ରଙ୍ଗରେ ଖୋଦିତ ହୋଇଛି । ଏହାକୁ ମଧ୍ୟ ସେ Neolithic Ageର ବୋଲି ବର୍ଣ୍ଣନା କରିଛନ୍ତି । ମାଣିକ ମଡା ପ୍ରସ୍ତର ଚିତ୍ରକଳାରେ ଶ୍ୱେତ pigment ରଙ୍ଗ ଦେଖିବାକୁ ମିଳେ । ଗୁଡହାଣ୍ଡରି ପ୍ରସ୍ତର ଚିତ୍ରକଳାରେ ଶାଗୁଆ ସହ ତାମ୍ରବର୍ଣ୍ଣ ମିଶ୍ରିତ ପ୍ରଲେପ ଦିଆଯାଇଛି ।

ଗଂଜାମର କେବଳ କୋକଳବା ଗ୍ରାମର ପ୍ରତ୍ନତତ୍ତ୍ୱ ସ୍ଥଳୀଟି ପ୍ରକୃତିଦତ୍ତ ରଙ୍ଗରେ ରଙ୍ଗିତ । ଏହାର Hematite ବା ଲୌହ ଅକସାଇଡକୁ ମିଶ୍ରିତ କରି ଲାଲ ବା ମାଟିଆ ରଙ୍ଗ ଦ୍ୱାରା ଅଙ୍କନ କରାଯାଇଛି । ଧଳା Pigment ଚୁର୍ଣ୍ଣରୁ ଏବଂ ଶାଗୁଆ ତାମ୍ରରୁ ଆଧାର କରି ପ୍ରଲେପ କରାଯାଇଛି ଏବଂ ସେଗୁଡିକ ପ୍ରସ୍ତର ଚିତ୍ରକଳାର ବ୍ୟବହାର କରାଯାଇଛି ଏହାର ସ୍ଥଳ ସାକ୍ଷୀ ସନ୍ନିକଟସ୍ଥ ଧୋବଣୀ ଗଣ୍ଡ ଓ ଫଟା ପଥର ସ୍ଥାନ ।

ରାଜା ଶ୍ରୀକର ଭଂଜଙ୍କ ଶାସନ ସମୟରେ ଯୋଗୀ ମହାରଣା ନାମକ କାଷ୍ଠ ଶିଳ୍ପୀ ବାଲିପଦରରେ ବସବାସ କରୁଥିଲେ । ସେ ଜଣେ ଦକ୍ଷ କାରିଗର ଥିଲେ ତାଙ୍କ ଦ୍ୱାରା ଯୋଗୀ ମଠ ଗୁମ୍ଫାଟି ପୁନଶ୍ଚ ଚଳ ଚଂଚଳ ହେଲା । ଅନେକ କାରିଗର ଏଠାରେ କାରିଗରୀ ବିଦ୍ୟା ଶିକ୍ଷା ନେବାକୁ ଆସିଲେ । ସେମାନେ କେବଳ ମନ୍ଦିରର ମୁର୍ତ୍ତି କାଷ୍ଠ ପିତୁଳା, ଧର୍ମୀୟ ମୁର୍ତ୍ତି ନିର୍ମାଣ କରୁଥିଲେ ।

ସାଧାରଣତଃ କଳାକାରର କାରିଗରମାନେ ନିର୍ଜନରେ ସେମାନଙ୍କ କାର୍ଯ୍ୟ କରିବାକୁ ପସନ୍ଦ କରିଥାନ୍ତି । ଭଗବାନଙ୍କ ପ୍ରତ୍ୟେକ କାର୍ଯ୍ୟ ନିର୍ଜନରେ ନିର୍ବାହ କଲେ ମନରେ ଏକତ୍ର ଆସିଥାଏ । ଏଣୁ ଯେଉଁଠାରେ ଜନଗହଳି ଥାଏ ତାହାକୁ ସେମାନେ ପସନ୍ଦ କରିନଥାନ୍ତି । ସହରଠାରୁ କିମ୍ବା ଗ୍ରାମଠାରୁ ଦୂର ଓ ନିର୍ଜନ ସ୍ଥାନ ହିଁ ସେମାନଙ୍କ ପସନ୍ଦ ।

ଏହି କାରଣରୁ ବୋଧହୁଏ ବାଲିପଦର ଯୋଗୀ ମଠ ଗୁମ୍ଫାଟିକୁ ଭଂଜ ରାଜାମାନଙ୍କ ରାଜତ୍ୱ ସମୟର ଦ୍ୱିତୀୟ କର୍ମଶାଳା ରୁପେ ପସନ୍ଦ ଥିଲା । ବାଲିପଦର ଯୋଗୀ ମଠ ଗୁମ୍ଫା ପ୍ରସ୍ତର ଚିତ୍ରକଳା ପାଇଁ ପାଇଥିବା ପ୍ରସିଦ୍ଧି ଲାଭ କରିଥିଲା । ସମୟ କ୍ରମେ ଏହା ଲୋପ ପାଇବାକୁ ବସିଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଏହି ସ୍ଥାନଟି ଭଂଜ ରାଜାମାନଙ୍କ ଦ୍ୱାରା କାଷ୍ଠ କଳାର ଗନ୍ତାଘର ଓ ପ୍ରଶିକ୍ଷଣ କେନ୍ଦ୍ରରେ ପରିଣତ ହୋଇ ପୁନଃ ଜୀବନ୍ୟାସ ପାଇଲା ।

ରଙ୍ଗର ପ୍ରଲେପକୁ ତିନି ଭାଗରେ ବିଭକ୍ତ କରାଯାଇଥାଏ - ପ୍ରାଥମିକ, ଦ୍ୱିତୀୟ ଓ ତୃତୀୟ ବା ଶେଷ ପର୍ଯ୍ୟାୟ ପ୍ରଲେପ । ପ୍ରାଥମିକ ଭାବେ ଲାଲ, ହଳଦିଆ ଓ ନୀଳ ରଙ୍ଗକୁ କୁହାଯାଏ । ଦ୍ୱିତୀୟ ପ୍ରଲେପରେ ଶାଗୁଆ କମଳା ଓ Purple ରଙ୍ଗକୁ କୁହାଯାଏ ଏବଂ ତୃତୀୟ ପ୍ରଲେପରେ ହଳଦିଆ କମଳା, ଲାଲ -Purple, ନୀଳ-Purple, ନୀଳ-ଶାଗୁଆ ଏବଂ ହଳଦିଆ - ଶାଗୁଆ କୁହାଯାଏ । ଯାହାହେଉ ସମସ୍ତ ଆଠଟି ରଙ୍ଗ ପିଙ୍କ୍ ରଙ୍ଗ ଯୌନ, ଲାଲଟି ଜୀବନ, କମଳା ରଙ୍ଗଟି ଉପଶମ, ହଳଦିଆ ରଙ୍ଗଟି ସୂର୍ଯ୍ୟ, ଶାଗୁଆଟି ପ୍ରକୃତି, ନୀଳଟି କଳା ଇଣ୍ଡିଗୋ ଶାନ୍ତ ଏବଂ ବାଇଗଣି ରଙ୍ଗଟି ସାହସିକତାର ଚିହ୍ନ ପ୍ରତିପାଦନ କରେ ।

ପ୍ରାଚୀନ ଭିତ୍ତିଚିତ୍ର କଳାରେ ଏହିସବୁ ରଙ୍ଗର ପ୍ରଲେପ କାରିଗରମାନେ ବ୍ୟବହାର କରୁଥିଲେ । ଉଲାପଗଡ, ବିକ୍ରମଖୋଲ, ମାଣିକଗଡର ଉଷାକୋଠୀ, ଗୁଡହାଣ୍ଡି ଘାଟ ଘୁମୁର ଯୋଗୀମଠ, ସିତାବିଂଝି ନରାଜ ଇତ୍ୟାଦି ପ୍ରସ୍ତର ଭିତ୍ତିଚିତ୍ର କଳାର ଉଦାହରଣ । ଲକ୍ଷ୍ମୀ ମୁଣ୍ଡିଆରେ ଭିତ୍ତିଚିତ୍ର କଳାରେ ଜ୍ୟାମିତିକ ସାଙ୍କେତିକ ଚିହ୍ନରେ ଧାର୍ମିକ ଭାବେ ସ୍ପଷ୍ଟ ହୋଇଛି ।

ବିଧିର ଆଶ୍ଚର୍ଯ୍ୟ ବିଷୟ ଯେ ଘାଟ ଘୁମୁର ଏବଂ ଉଭୟ ଖଡିଆଳ ଓ ବାଲିପଦର ସ୍ଥିତ ଯୋଗୀମଠ ପ୍ରସ୍ତର

ଚିତ୍ରକଳା ଭିନ୍ନ ଭିନ୍ନ ସ୍ଥାନରେ ଥିଲେ ମଧ୍ୟ ଏଗୁଡିକ ଗୋଟିଏ ଶ୍ରେଣୀର ଯଥା– ଇଷତ ଲାଲ Occur, Tint ରଙ୍ଗ ଇତ୍ୟାଦି ।

କିପରି କାହିଁକି ମାନବର କ୍ରମ ବିକାଶ ହୋଇଛି ତାହା ଏହି ପ୍ରସ୍ତର ଭତ୍ତିଚିତ୍ର କଳା ପ୍ରଦର୍ଶନ କରାଏ । ଏହା ସଂସ୍କୃତିର କ୍ରମବିକାଶକୁ କୃଷିର ଧାରାବାହିକ ବିକାଶ ବୃହତ୍ ସଭ୍ୟତାର ମୂଳନିତିର କାରଣ ଇତ୍ୟାଦି ଏଥିରୁ ଜାଣିହୁଏ । ମନୁଷ୍ୟର ଶାରୀରିକ ପରିବର୍ତ୍ତନ ଅନେକ ବର୍ଷର ଅତିକ୍ରମ ପରେ ହୋଇଛି । ସେସବୁ ଲକ୍ଷଣ ଏହି ଚିତ୍ରକଳା ମାଧ୍ୟମରେ ବୋଧଗମ୍ୟ ହୁଏ । ଭୂଗୋଳ ସାମାଜିକ, ରାଜନୈତିକ, ସାଂସ୍କୃତିକ ଏବଂ ଐତିହାସିକ ଦୃଷ୍ଟିକୋଣ ଏଠାରୁ ମିଳିଥାଏ । ପ୍ରସ୍ତର ଚିତ୍ରକଳା ସଂସ୍କୃତିର ଅନ୍ୟତମ ଶାଖା ।

ବାଲିପଦର ଯୋଗୀମଠ ପ୍ରସ୍ତର ଚିତ୍ରକଳା ଅତୀତର ସମସ୍ତ ପ୍ରସ୍ତର ଚିତ୍ରକଳାକୁ ଏକାକାର କରେ । ଏହା ଏକ ନିର୍ଦ୍ଦିଷ୍ଟ ସମୟକୁ ଆକ୍ଷେପ କରୁଛି । ସେତେବେଳର ମାନବ ସମାଜ ସଭ୍ୟତାର ଏହା ଏକ ନିଦର୍ଶନ । ଲୋକମାନଙ୍କର ପ୍ରାଚୀନ ଜୀବନଧାରା ସମାଜିକ ନିୟମ ଐତିହାସିକ ଘଟଣାକୁ ନିର୍ଣ୍ଣୟ କରିବାରେ ଏହା ଏକ ସାଂସ୍କୃତିକ ପଥ ।

ପ୍ରସ୍ତର ଚିତ୍ରକଳାର ଆବିଷ୍କାର ସମସ୍ତ ସାଂସ୍କୃତିକ ମହତ୍ତ୍ୱ ଓ ଶିକ୍ଷାର ଯୁକ୍ତିକୁ ସମାଧାନର ସଫଳତା ଆଣି ଦେଇଥାଏ । ପ୍ରତ୍ୟେକ ପ୍ରସ୍ତର ଚିତ୍ରକଳା ସେହି ସ୍ଥାନର ପ୍ରାଧାନ୍ୟତାକୁ ଦର୍ଶାଇ ଥାଏ ଏବଂ ଏହା ଏକ ଏକକ ଅନୁଷ୍ଠାନ । ଏହା ଜୀବନ୍ତ ପ୍ରାମାଣିକ Atlas । ଏହା ପ୍ରସ୍ତର ଐତିହ୍ୟକୁ ଦର୍ଶାଇବା ସହିତ ପ୍ରସ୍ତର ପୁସ୍ତକ ପରି କାର୍ଯ୍ୟ କରିଥାଏ । ଆମର ଅତୀତ ସାମାଜିକ ସାଂସ୍କୃତିକ ଜୀବନର ଗ୍ରନ୍ଥାଗାର ଅଟେ । ଜାତୀୟ ଚିତ୍ରକଳାକୁ ପ୍ରଭାବିତ କରିବା ସହ ଏକ ବନ୍ଧନରେ ବାନ୍ଧି ପାରିଥିବାରୁ ଏହାର ସଂରକ୍ଷଣ ଆମର ସମସ୍ତଙ୍କ ଦାୟିତ୍ୱ ହେବା ଉଚିତ ।

ଏହାକୁ ନଷ୍ଟ କରିବାର ଅର୍ଥ ଏକ ଜୀବନ୍ତ ଶିକ୍ଷାନୁଷ୍ଠାନକୁ ନଷ୍ଟ କରିବା । ବାଲିପଦର ଯୋଗୀମଠ ପ୍ରସ୍ତର ଚିତ୍ରକଳା ଏକ ଜୀବନ୍ତ ପ୍ରସଙ୍ଗ । ଏହାର ପ୍ରସ୍ତର ଚିତ୍ରକଳା ଜାତୀୟ ସ୍ତରର ଅନ୍ୟାନ୍ୟ ପ୍ରସ୍ତର ଚିତ୍ରକଳା ସହ ସମକକ୍ଷ ଓ ସଂହତିର ଦୃଷ୍ଟାନ୍ତ । ଏହାର ରଙ୍ଗ ଓ ଚିତ୍ରକଳାର ଆଭିମୁଖ୍ୟ ।

---

ଅଧ୍ୟକ୍ଷ
ଅହଲ୍ୟାଦେବୀ ମହିଳା ମହାବିଦ୍ୟାଳୟ
ବାଲିପଦର, ଗଂଜାମ

# ବ୍ରଜସୁନ୍ଦର ଦାସ : ବ୍ୟକ୍ତି ନୁହଁନ୍ତି ଅନୁଷ୍ଠାନ

ଡଃ. ଶରତ କୁମାର ବିଶ୍ୱାଳ

୧୫୬୮ ଖ୍ରୀଷ୍ଟାବ୍ଦରେ ରାଜା ମୁକୁନ୍ଦ ଦେବଙ୍କର ଯାଜପୁର ସନ୍ନିକଟ ଗୋହିରାଟିକିରି ଯୁଦ୍ଧକ୍ଷେତ୍ରରେ ମୃତ୍ୟୁ ହେଲା ପରେ ଓଡିଶାର ସ୍ୱାଧୀନତା ରବି ଅସ୍ତମିତ ହୋଇଗଲା । ଓଡିଶାରେ ମୋଗଲ, ଆଫଗାନ ଓ ମରହଟ୍ଟାମାନଙ୍କର ଶାସନ ଚାଲିଲା । ସେମାନେ ଓଡିଶାକୁ ଖଣ୍ଡ ଖଣ୍ଡ କରି ଶାସନ କରୁଥିଲେ । ୧୮୦୩ ମସିହାରେ ଇଂରେଜମାନେ ଓଡିଶା ଅଧିକାର କଲେ । ନିଜର ଶାସନଗତ ସୁବିଧା ପାଇଁ ସେମାନେ ଉପକୂଳ ଓଡିଶାକୁ ବଙ୍ଗଳା ପ୍ରେସିଡେନ୍ସି ଅଧୀନରେ ରଖିଲେ । ଫଳରେ ଓଡିଆ ଭାଷାକୁ ଲୋପ କରି ବଙ୍ଗଳା ଭାଷାରେ ଶିକ୍ଷାଦାନ ଓ ଅଫିସ୍ କାର୍ଯ୍ୟ ଚାଲୁ ରଖିବା ପାଇଁ ହୀନ ଚକ୍ରାନ୍ତ ହେଲା । ସେହିପରି ଦକ୍ଷିଣ ଓଡିଶା ମାଡ୍ରାସ ପ୍ରେସିଡେନ୍ସି ଅଧୀନରେ ରହିବାରୁ ପଡୋଶୀ ରାଜ୍ୟର ତେଲୁଗୁ ଭାଷାକୁ ଶିକ୍ଷା ଓ ଶାସନ କ୍ଷେତ୍ରରେ ବ୍ୟବହାର କରାଗଲା । ଇଂରେଜମାନେ ପଶ୍ଚିମ ଓଡିଶାକୁ କେନ୍ଦ୍ର ବା ମଧ୍ୟପ୍ରଦେଶ ଅଧୀନରେ ରଖି ହିନ୍ଦୀ ଭାଷାକୁ ଲଦି ଦେଲେ । ଇଂରେଜ ଭାରତ ମାନଚିତ୍ରରେ ଓଡିଶା ବୋଲି କୌଣସି ରାଜ୍ୟ ରହିଲା ନାହିଁ । ଓଡିଶା ଘୋର ଦାରିଦ୍ର୍ୟ, କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅଶିକ୍ଷାର ଘନ ଅନ୍ଧକାର ଭିତରେ ବୁଡି ରହିଲା । ଏକ ଐତିହ୍ୟସମ୍ପନ୍ନ ଜାତିକୁ ଶେଷରେ ଆଳସ୍ୟ ଓ ହୀନମନ୍ୟତା ପଙ୍ଗୁ କରିଦେଲା । ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ଓଡିଆ ଜାତିର ମେରୁଦଣ୍ଡ ଭାଙ୍ଗିଦେଲା । ଓଡିଆ ଜାତିର ଉତ୍‌ଥାନ ପାଇଁ ରାଜା ବୈକୁଣ୍ଠନାଥ ଦେ, ବିଚିତ୍ରାନନ୍ଦ ଦାସ ଓ ଗୌରୀଶଙ୍କର ରାୟ ପ୍ରମୁଖଙ୍କର ଉଦ୍ୟମ ପ୍ରଶଂସନୀୟ ଥିଲା । ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ଦେଶପ୍ରାଣ ବ୍ରଜସୁନ୍ଦର ଦାସ ଓ ଆହୁରି ଅନେକ ନେତୃବୃନ୍ଦ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ଇଂରେଜ ସରକାର ନିକଟରେ ଦାବି ଉପସ୍ଥାପନ କରିଥିଲେ । ମଧୁବାବୁଙ୍କ ପଞ୍ଚଶିଷ୍ୟ, ସହକର୍ମୀ ଓ ଗୋପବନ୍ଧୁଙ୍କ ଅନ୍ତରଙ୍ଗ ବନ୍ଧୁଥିଲେ ବ୍ରଜ ସୁନ୍ଦର ଦାସ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଓ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷା ସୁରକ୍ଷା ପାଇଁ ବ୍ରଜସୁନ୍ଦର ଦାସଙ୍କ ଉତ୍ସର୍ଗୀକୃତ କାର୍ଯ୍ୟ ଅବିସ୍ମରଣୀୟ ।

ବ୍ରଜସୁନ୍ଦରଙ୍କ ପିତା ଶ୍ୟାମସୁନ୍ଦର ଓ ପିତାମହ ହରେକୃଷ୍ଣ ଦାସ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ । ୧୮୮୦ ମସିହା ଜୁଲାଇ ମାସ ୨ ତାରିଖରେ ଯାଜପୁର କଂଟାବଣିଆ ଗ୍ରାମରେ ଏକ ଜମିଦାର ପରିବାରରେ ବ୍ରଜସୁନ୍ଦର ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜମିଦାରୀ କଚେରୀ ବିଞ୍ଝାରପୁର ନିକଟସ୍ଥ କଏଣାଗ୍ରାମ ଅଧୁନା ସୟଦପୁରରେ କାର୍ଯ୍ୟ କରୁଥିଲା । ଯଦିଓ ସେ ଯାଜପୁରର ଲୋକ ଥିଲେ କଟକ ସହରରେ ତାଙ୍କର ବାଲ୍ୟକାଳ କଟିଥିଲା । ସେ କଟକ ସହରରେ ପାଠ ପଢ଼ିଥିଲେ । ବି.ଏ. ପାସ୍ କରି ମଧ୍ୟ ସେ ସରକାରୀ ଚାକିରି ନ କରି ଜନସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଏପରିକି ଜମିଦାରୀର ସବୁ ସୁଖସ୍ୱାଚ୍ଛନ୍ଦ୍ୟକୁ ତୁଚ୍ଛ କରି ସେ ସରଳ ଜୀବନଯାପନ କରୁଥିଲେ । ଜମିଦାରୀରୁ ଆୟ ହେଉଥିବା ଅର୍ଥକୁ ଦେଶ ସେବାରେ ବ୍ୟୟ କରୁଥିଲେ । ଛାତ୍ର

ଥିବାବେଳେ ୧୯୦୦ ମସିହାରେ ଗୋପବନ୍ଧୁଙ୍କ ସହ ମିଶି 'ତରୁଣ ଉତ୍କଳ ସଂଘ' ଗଠନ କରିଥିଲେ । ଓଡିଆ ଯୁବକଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିବା ସହ ଓଡିଆ ଭାଷା ସାହିତ୍ୟର ଉନ୍ନତି, ସମାଜସେବା ଓ ଶିକ୍ଷାସଂସ୍କୃତିର ଉନ୍ନତି ଏହାର ମୂଳଲକ୍ଷ୍ୟ ଥିଲା । ବ୍ରଜସୁନ୍ଦରଙ୍କ କଟକ ଘର ପରିସରରେ ଏହାର ବୈଠକ ଅନୁଷ୍ଠିତ ହେଉଥିଲା । ମଧୁବାବୁଙ୍କ ନେତୃତ୍ୱରେ ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକର ଇଦ୍‌ଗା ପଡିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ଛାତ୍ରାବସ୍ଥାରୁ ବ୍ରଜସୁନ୍ଦର ଦାସ ସକ୍ରିୟ ଭାବରେ ଅଂଶଗ୍ରହଣ କରିଥିଲେ । ବିଖଣ୍ଡିତ ଓଡିଆ ଭାଷାର ସୁରକ୍ଷା ଓ ଓଡିଆଙ୍କର ଉନ୍ନତି ଏହି ସମ୍ମିଳନୀର ମୁଖ୍ୟ ଲକ୍ଷ୍ୟ ଥିଲା । ସେ ମଧ୍ୟ ଉତ୍କଳ ସମ୍ମିଳନୀର କାର୍ଯ୍ୟନିର୍ବାହୀ କମିଟିର ସଭ୍ୟ ଥିଲେ । ୧୯୧୮ ମସିହାରୁ ବ୍ରଜସୁନ୍ଦର ଉତ୍କଳ ସମ୍ମିଳନୀର ସମ୍ପାଦକ ରହି ବିଭିନ୍ନ କାର୍ଯ୍ୟକ୍ରମକୁ ପରିଚାଳନା କରୁଥିଲେ । ଓଡିଶା ପ୍ରଦେଶ ଗଠନ ନିମନ୍ତେ ମଧୁବାବୁ ନିଜ ଅର୍ଜିତ ଧନକୁ ବ୍ୟୟକରି ଦେବାଳିଆ ଅବସ୍ଥାକୁ ଆସିଲା ପରେ ବ୍ରଜସୁନ୍ଦର ଦାସ ଉତ୍କଳ ସମ୍ମିଳନୀର ବିଭିନ୍ନ କାର୍ଯ୍ୟକ୍ରମକୁ ଚାଲୁ ରଖିବା ପାଇଁ ଅର୍ଥ ଦେଉଥିଲେ । ଜୀବନର ଶେଷ ଭାଗରେ ସେ ମଧ୍ୟ ସର୍ବସ୍ୱାନ୍ତ ହୋଇପଡିଥିଲେ ।

ବ୍ରଜସୁନ୍ଦରଙ୍କ କଟକ ମାଣିକ ଘୋଷ ବଜାର ଘର ଉତ୍କଳର ନେତୃବର୍ଗଙ୍କର ଏକ ମିଳନ ପୀଠ ଥିଲା । ଏହି ଘରେ ଦୁଇ ବନ୍ଧୁ ବ୍ରଜସୁନ୍ଦର ଓ ଗୋପବନ୍ଧୁ ବସି ଓଡିଶାରେ ସ୍ୱଦେଶୀ ଆନ୍ଦୋଳନ ପାଇଁ ସଂଗ୍ରାମ କରିବାକୁ ଯୋଜନା କରୁଥିଲେ । ବ୍ରଜସୁନ୍ଦରଙ୍କ ଘର ବହୁ ସଂଗ୍ରାମୀଙ୍କ ଆଶ୍ରୟସ୍ଥଳ ପାଲଟିଥିଲା । ବଙ୍ଗଳାର ବିପ୍ଳବୀ ଶଶିଭୂଷଣ ରାୟ ଚୌଧୁରୀଙ୍କୁ ନିଜ ଘରେ ସେ ଆଶ୍ରୟ ଦେଇଥିଲେ । ବ୍ରଜସୁନ୍ଦରଙ୍କ ଘରେ ବସି ଗୋପବନ୍ଧୁ ବନ୍ୟାଞ୍ଚଳରେ କିପରି ରିଲିଫ୍ ବଂଟନ କରାଯିବ ସେ ବିଷୟରେ ଖସଡା ପ୍ରସ୍ତୁତ କରୁଥିଲେ । ଦୁଇ ବନ୍ଧୁ ମିଶି ବନ୍ୟାଞ୍ଚଳରେ ରିଲିଫ୍ ବାଂଟୁଥିଲେ । ଉତ୍କଳ ସମ୍ମିଳନୀକୁ ନେଇ ମଧୁବାବୁ ଓ ଗୋପବନ୍ଧୁଙ୍କର ସମୟ ସମୟରେ ମତାନ୍ତର ହେଉଥିଲା । ବ୍ରଜସୁନ୍ଦରଙ୍କ ଘରେ ଏହାର ସମାଧାନ ଓ ବୁଝାମଣା କରାଯାଉଥିଲା । ବ୍ରଜସୁନ୍ଦରଙ୍କ ଉଦ୍ୟମ ଓ ମଧ୍ୟସ୍ଥତା ଯୋଗୁଁ ଏହା ସମ୍ଭବ ହେଉଥିଲା ।

ଓଡିଶାର ସାହିତ୍ୟ କ୍ଷେତ୍ରକୁ ବ୍ରଜସୁନ୍ଦରଙ୍କ ଅବଦାନ ଅବିସ୍ମରଣୀୟ । ସେ ଥିଲେ ଆଧୁନିକ ସାହିତ୍ୟର ସ୍ରଷ୍ଟା ଓ ସାଧକ । ୧୯୦୫ ମସିହାରେ ବ୍ରଜସୁନ୍ଦର 'ମୁକୁର ପ୍ରେସ୍' ପ୍ରତିଷ୍ଠା କଲେ ଓ ୧୯୦୬ ମସିହା ଏପ୍ରିଲ୍ ପହିଲାରେ 'ମୁକୁର' ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ କଲେ । କଟକର ଜାଉଁଳିଆପଟିରେ ଥିବା ବ୍ରଜସୁନ୍ଦରଙ୍କ ଘରେ 'ମୁକୁର ପ୍ରେସ୍' କାର୍ଯ୍ୟ କରୁଥିଲା । ମୁକୁର ପତ୍ରିକାରେ ଫକୀର ମୋହନ, ମଧୁବାବୁ, ଗୋପବନ୍ଧୁ ପ୍ରମୁଖ ବହୁ ଲୋକଙ୍କର ଲେଖା ପ୍ରକାଶ ପାଉଥିଲା । ପ୍ରବୀଣମାନଙ୍କ ସହିତ ନୂତନ ଲେଖକମାନଙ୍କ ଲେଖାରେ 'ମୁକୁର'ର ପୃଷ୍ଠା ସମୃଦ୍ଧ ହେଉଥିଲା । ମୁକୁର ପ୍ରେସ୍ ଉତ୍କଳର ଜାତୀୟ ଭାବନା ଓ ସଭାସମିତିର ମୁଖ୍ୟ କେନ୍ଦ୍ର ଥିଲା । କବି ପଦ୍ମଚରଣ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି ଓ ମଦନ ମୋହନ ପଟ୍ଟନାୟକ ପ୍ରଭୃତି ପ୍ରାରମ୍ଭିକ ସାଧନା ସମୟରେ ବ୍ରଜସୁନ୍ଦରଙ୍କଠାରୁ ଉତ୍ସାହ ପାଇ ପ୍ରତିଷ୍ଠିତ ଲେଖକ ହୋଇ ପାରିଥିଲେ । ବ୍ୟାସକବି ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ବ୍ରଜସୁନ୍ଦରଙ୍କ ସମ୍ବନ୍ଧରେ ଲେଖିଛନ୍ତି-

କର ନିତ୍ୟ ମାତୃଭାଷା ଉନ୍ନତି କାମନା
ମୁକୁର ପ୍ରେସ୍‌କୁ ଦେଖିଅଛ, ଭଲ ଜଣା
ଜଣା ମଧ୍ୟ ଧାଇଁ ବୁଲ ପ୍ରଦେଶ କଲ୍ୟାଣେ
ଢ଼େର ଦିନୁ ଭଲ ଜାଣିଅଛୁଁ ଆମ୍ଭେମାନେ ।

ବ୍ରଜସୁନ୍ଦର ବହୁ ପୁସ୍ତକ, ଜଣାଣ, ଭଜନ, ପ୍ରବନ୍ଧ ଓ ଶିଶୁସାହିତ୍ୟ ରଚନା କରି ଉତ୍କଳର 'ସାରସ୍ୱତ' ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ଓ ଓଡିଆ ଭାଷାର ପ୍ରସାର ପାଇଁ ଗୋପବନ୍ଧୁଙ୍କ ସହ ମିଶି ବ୍ରଜସୁନ୍ଦର 'ପଇସା ପାଣ୍ଠି' ନାମକ ଏକ ସଂଗଠନ

ଗଢ଼ିଥିଲେ । ଏତଦ୍‌ବ୍ୟତୀତ ଛାତ୍ରାବସ୍ଥାରେ ଗୋପବନ୍ଧୁ ଓ ଅନ୍ୟ ସହପାଠୀଙ୍କ ସହ ମିଶି ବ୍ରଜସୁନ୍ଦର 'ହରିଭକ୍ତି ପ୍ରଦାୟିନୀ ଓ ଶିକ୍ଷା ବିବର୍ଦ୍ଧନୀସଭା' ଓ 'କର୍ତ୍ତବ୍ୟବୋଧିନୀ ସଭା' ଗଠନ କରିଥିଲେ । ଶିକ୍ଷାର ବିକାଶ, ସମାଜସେବା ସହ ଓଡିଆମାନଙ୍କ ସ୍ୱାଭିମାନ, ସଂସ୍କୃତି ଓ ସାହିତ୍ୟର ସୁରକ୍ଷା ଏ ସଙ୍ଗଠନଗୁଡିକର ମୂଳଲକ୍ଷ୍ୟ ଥିଲା ।

ବ୍ରଜସୁନ୍ଦର ଦାସ ଅନ୍ୟମାନଙ୍କ ସହ ମିଶି ଓଡିଶା, ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ନିମନ୍ତେ ଗଠିତ କମିଟିର ସଦସ୍ୟ ଥିଲେ । ଏହି କମିଟିର ରିପୋର୍ଟ ୧୯୧୭ ମସିହା ଡିସେମ୍ବର ୧୧ ତାରିଖରେ ଭାରତର ଷ୍ଟେଟ୍ ସେକ୍ରେଟାରୀ ମଂଟେଗଙ୍କୁ କଲିକତାରେ ପ୍ରଦାନ କରାଯାଇଥିଲା । ବ୍ରଜସୁନ୍ଦର ଦାସ ଜୀବନର ବହୁ ସମୟ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ବ୍ୟୟ କରିଛନ୍ତି । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନ ସଭା, ସମିତି ଓ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ମାନପତ୍ର ପ୍ରଦାନ ପାଇଁ ଆବଶ୍ୟକ ପ୍ରାଚୀରପତ୍ର, ଚିଠି, ଦରଖାସ୍ତ ଇତ୍ୟାଦି ବ୍ରଜସୁନ୍ଦର 'ମୁକୁର ପ୍ରେସ୍'ରେ ନିଜ ଖର୍ଚ୍ଚରେ ଛପାଇ ଦେଉଥିଲେ । ଉତ୍କଳ ସମ୍ମିଳନୀ ଅଫିସ୍ କାର୍ଯ୍ୟ ଓ ସ୍ମାରକ ପତ୍ର ସେ ଲେଖୁଥିଲେ । ବ୍ରଜସୁନ୍ଦର ୧୯୨୧-୨୪ ପର୍ଯ୍ୟନ୍ତ ବଡଲାଟ ସଭାର ସଭ୍ୟ ଥିଲେ । ୧୯୧୭-୨୦ ପର୍ଯ୍ୟନ୍ତ ବିହାର-ଓଡିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଭ୍ୟ ଥିଲେ । ସେ ଓଡିଶା ଆଥଲେଟିକ୍ ଆସୋସିଏସନ୍‌ର ପ୍ରଥମ ସଭାପତି ଓ ଉତ୍କଳ ସଙ୍ଗୀତ ସମାଜର ସଭାପତି ଥିଲେ । 'ମୁକୁର' (୧୯୦୬) ପତ୍ରିକା ଓ 'ଦି ଓରିଆ' (୧୯୧୮) ଇଂରାଜୀ ପତ୍ରିକା ତାଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିଲା । ସେ ମଧ୍ୟ ୧୯୧୭-୨୫ ପର୍ଯ୍ୟନ୍ତ ପାଟନା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟ ଥିଲେ । ବିଲାତ ସରକାର ସାର୍ ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ ଏକ କମିଶନ ସମ୍ବିଧାନ ସଂସ୍କାର ପାଇଁ ବସାଇଲେ । ଏହାକୁ ସାଇମନ କମିଶନ କୁହାଯାଉଥିଲା । କଂଗ୍ରେସର ବର୍ଜନ ସତ୍ତ୍ୱେ ଉତ୍କଳ ସମ୍ମିଳନୀ ଏହି କମିଶନଙ୍କୁ ସ୍ୱାଗତ କଲା । ମଧୁବାବୁଙ୍କ ପରାମର୍ଶରେ କମିଶନ ପାଟନା ଆସିବାର ୩ ମାସ ପୂର୍ବରୁ ବ୍ରଜସୁନ୍ଦର ଦାସ ପାଟନାରେ ରହି କମିଶନଙ୍କୁ ସ୍ୱାଗତ ଓ ସାକ୍ଷାତ୍ କରିବାର ସମସ୍ତ ବନ୍ଦୋବସ୍ତ କଲେ । ୧୯୨୮ ମସିହାରେ ସାଇମନ କମିଶନ ପାଟନା ଆସିଲେ । ବ୍ରଜସୁନ୍ଦର ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଲକ୍ଷ୍ମୀଧର ମହାନ୍ତି ଓ ପାରେଶ୍ୱର ମହାନ୍ତି ପ୍ରଭୃତିଙ୍କୁ ନେଇ ଏକ ପ୍ରତିନିଧି ଦଳ ସାଇମନ କମିଶନଙ୍କୁ ଭେଟି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ନିମନ୍ତେ ଦାବିପତ୍ର ଦେବା ପାଇଁ ପାଟନା ଯାଇଥିଲେ । ସାଇମନ କମିଶନଙ୍କୁ ସ୍ୱାଗତ କରାଯାଇ ଓ ଓଡିଶା ବିଚ୍ଛିନ୍ନାଞ୍ଚଳର ମିଶ୍ରଣ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ବହୁ ପ୍ରାଚୀରପତ୍ର ମରାଯାଇଥିବା, ପାଟନାର ହାର୍ଡିଂଜ ପାର୍କ ରେଳ ଷ୍ଟେସନରେ ଓହ୍ଲାଇବା କ୍ଷଣି, ସାଇମନ କମିଶନ ଦେଖିଲେ । ସେତେବେଳେ କଂଗ୍ରେସ ସଭ୍ୟମାନେ ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ 'ସାଇମନ ଫେରିଯାଅ' ସ୍ଲୋଗାନ ଦେଲେ । କିନ୍ତୁ କମିଶନ ଓଡିଶାର ପ୍ରତିନିଧିଦଳଙ୍କୁ ପାଟନାରେ ସାକ୍ଷାତ ଦେଇ ଆଲୋଚନା କଲେ ଓ ଦାବିପତ୍ର ଗ୍ରହଣ କଲେ । ସାଇମନ କମିଶନ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବାକୁ ସୁପାରିସ୍ କରିଥିଲେ ।
୧୯୩୦ ମସିହାରେ ସାଇମନ କମିଶନ ରିପୋର୍ଟ ପ୍ରକାଶିତ ହେଲା ଓ ସେହି ବର୍ଷ ଓଡିଶାର ମାନଚିତ୍ର ପ୍ରସ୍ତୁତ କରିବା ପାଇଁ ବ୍ରିଟିଶ୍ ସରକାର ଓଡୋନେଲ୍ କମିଟି ବସାଇଲେ । ସାଇମନ କମିଶନ ରିପୋର୍ଟ ଆସିଲା ପରେ ବ୍ରଜସୁନ୍ଦର ତାଙ୍କର ଦୁଇଟି ପୁସ୍ତିକା "A vision of province of Orissa" ଓ "Hamilton's Orissa" ପ୍ରକାଶ କରିଥିଲେ ।

ଓଡୋନେଲ୍ କମିଟି ପ୍ରସ୍ତାବିତ ଓଡିଶା ପ୍ରଦେଶର ସୀମା ଚିହ୍ନଟ କରି ଭାରତ ସରକାରଙ୍କୁ ରିପୋର୍ଟ ଦେବା ନିମନ୍ତେ ୧୯୩୧ ମସିହାରେ ଓଡିଶା ଆସିଥିଲେ । ସେଦିନ କଟକର ଗଣେଶଘାଟଠାରୁ ଏକ ବିରାଟ ଶୋଭାଯାତ୍ରା ବାହାରିଥିଲା । ଏଥିରେ ହଜାର ହଜାର ଜନସାଧାରଣ ଓ ଛାତ୍ର ଯୋଗ ଦେଇଥିଲେ । ଓଡିଶାର ଛିନ୍ନମସ୍ତା ଚିତ୍ର

ହାତୀ ଉପରେ ଥୋଇ ବିରାଟ ପଟୁଆରରେ କଟକର ବିଭିନ୍ନ ରାସ୍ତା ଦେଇ ମଧୁବାବୁଙ୍କ ଘର ଆଡକୁ ଜନତା ଆଗେଇ ଚାଲିଥାନ୍ତି । ବ୍ରଜସୁନ୍ଦର ଦାସ ଏହି ଶୋଭାଯାତ୍ରାର ପୁରୋଭାଗରେ ରହି ନେତୃତ୍ୱ ନେଉଥାନ୍ତି । ଶୋଭାଯାତ୍ରା ଯାଇ ମଧୁବାବୁଙ୍କ ଘର ନିକଟରେ ପହଂଚିଲା । କୁଳବୃଦ୍ଧ ମଧୁସୂଦନ ଦାସ ଘର ବାହାରକୁ ଆସି ଶୋଭାଯାତ୍ରାକାରୀଙ୍କୁ ଆଶୀର୍ବାଦ କରିଥିଲେ । ଏହା ବ୍ରଜସୁନ୍ଦରଙ୍କ ବଳିଷ୍ଠ ନେତୃତ୍ୱର ଏକ ଉଜ୍ଜ୍ୱଳ ନିଦର୍ଶନ । ଓଡୋନେଲ୍ କମିଟି ପ୍ରସ୍ତାବିତ ଓଡିଶା ପ୍ରଦେଶର ଯେଉଁ ମାନଚିତ୍ର ପ୍ରସ୍ତୁତ କଲେ ସେଥିରେ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଅନ୍ତର୍ଭୁକ୍ତ ହୋଇ ନ ଥିଲା । ବ୍ରଜସୁନ୍ଦର ଦାସ, ପାରଳା ମହାରାଜା, ଗୋଦାବରୀଶ ମିଶ୍ର ଓ ଲକ୍ଷ୍ମୀନାରାୟଣ ସାହୁ ପ୍ରମୁଖ ମେଦିନୀପୁର ଯାଇ ଏହାର ତୀବ୍ର ପ୍ରତିବାଦ କରିବା ଫଳରେ ଏ ଦୁଇଟି ଜମିଦାରୀ ଓଡିଶା ମାନଚିତ୍ରରେ ଅନ୍ତର୍ଭୁକ୍ତ କରାଗଲା ।

ବ୍ରଜସୁନ୍ଦର ସ୍ୱାଭିମାନୀ ଥିଲେ । ନିଜର ସ୍ୱାର୍ଥ ପାଇଁ ସେ କାହାକୁ ଅନୁରୋଧ କରିଥିବାର ଜଣାନାହିଁ । କେବେ ବି ତାଙ୍କର ଅତୀତ ଉଦାରତା ଓ ଆତ୍ମତ୍ୟାଗର ବଡପଣ ପ୍ରଚାର କରୁ ନ ଥିଲେ କି ଏହାକୁ ପୁଞ୍ଜି କରି କୌଣସି ସୁବିଧା ଉଠାଇବାକୁ ପ୍ରୟାସ କରିବାର ଦୃଷ୍ଟାନ୍ତ ନାହିଁ । ସାହିତ୍ୟିକ କାହ୍ନୁଚରଣ ମହାନ୍ତି ୧୯୪୪ ସାଲରେ ନିଜେ ଅନୁଭବ କରିଥିବା ଏକ ଘଟଣାର ଅବତାରଣା ତାଙ୍କ ଲିଖିତ ପ୍ରବନ୍ଧ 'ଦେଶପ୍ରାଣ ବ୍ରଜସୁନ୍ଦର'ରେ କରିଛନ୍ତି । ଉତ୍କଳ ସମ୍ମିଳନୀ, ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ଖର୍ଚ୍ଚ ନିମନ୍ତେ ବ୍ରଜସୁନ୍ଦର ନିଜର ଭୂ-ସମ୍ପତ୍ତି ବନ୍ଧକ ଦେଇ ଟଙ୍କା କରଜ କରିଥିଲେ । ଏହି କାରଣରୁ ଯାଜପୁରର ସୟଦପୁରରେ ଥିବା ଜମିଦାରୀ 'କୋର୍ଟ-ଅଫ-ୱାର୍ଡସ' ଅଧୀନକୁ ଆସିଥିଲା । ତାଙ୍କର କଟକ ଜାଉଁଳିଆପଟିର ପୁରୁଣା କୋଠାଘର ନିଲାମ ହୋଇଗଲା । ଜମିଦାରୀ ସରକାର ଅଧୀନକୁ ଗଲା ପରେ ସେ ମାତ୍ର ମାସିକ ୫୦୦ଟଙ୍କା ଭତ୍ତା ପାଉଥିଲେ । ତାଳଚେର ରାଜ୍ୟର ତତକାଳୀନ ପଚ୍ଚାୟତଙ୍କଠାରୁ ଆଗରୁ ଜମି ବନ୍ଧା ପକାଇ ଟ୫୦,୦୦୦/- କରଜ ଆଣିଥିଲେ । ସେ ନାଲିସ କରି ଜମି ନିଲାମ କରାଇଲେ । ସେତେବେଳ କାହ୍ନୁଚରଣ କଟକ କଲେକ୍ଟର ଅଫିସ୍‌ରେ ଚାକିରି କରୁଥିଲେ । ସେ ଦେଖିଲେ ସୁଧମୂଳ ମିଶି ଏତେଗୁଡାଏ ଟଙ୍କା ଜମିଦାରୀ ଫଣ୍ଡରେ ନାହିଁ । ପଚ୍ଚାୟତ ସାହେବଙ୍କୁ ବ୍ରଜସୁନ୍ଦର ଅନୁରୋଧ କଲେ ହୁଏତ ସେ କିଛି ଟଙ୍କା ଛାଡ କରିପାରିବେ । କଲେକ୍ଟରଙ୍କ ଅନୁମତି ନେଇ କାହ୍ନୁଚରଣ ଯାଇ ବ୍ରଜସୁନ୍ଦରଙ୍କୁ ତାଙ୍କ ଘରେ ଭେଟିଲେ ଓ ସବୁକଥା କହିଲେ । ବ୍ରଜସୁନ୍ଦର ଯାହା କହିଲେ କାହ୍ନୁଚରଣ ଲେଖିଛନ୍ତି -'ବାବୁରେ ଯେଉଁ ଧନ ମୁଁ କରଜ କରିଥିଲି ତାକୁ ମୁଁ ବିଳାସବ୍ୟସନରେ ଉଡାଇ ନ ଥିଲି । ଯେଉଁସବୁ କାରଣ ପାଇଁ ଅନ୍ୟାନ୍ୟ ସହକର୍ମୀମାନଙ୍କ ଜରିଆରେ ଖର୍ଚ୍ଚ ହୋଇଥିଲା ସେତକ ତ ହେଲାନାହିଁ । କିପରି ଓ କାହିଁକି ମୁଁ ତାଙ୍କର କରୁଣାପ୍ରାର୍ଥୀ ହେବି ।' କାହ୍ନୁଚରଣ ଫେରିଆସି କଲେକ୍ଟରଙ୍କୁ ସବୁ କଥା ଜଣାଇଲେ । ପଚ୍ଚାୟତ ସାହେବଙ୍କୁ କାହ୍ନୁଚରଣ ନିଜ ଅଫିସ୍ କୋଠରିରେ ଅନୁରୋଧ କରି କହିଲେ, 'ଦୁଃଖିନୀ ଉତ୍କଳ ଜନନୀଙ୍କର ଦୁଃଖ ଦୂର କରି ସବୁ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଅକୁଣ୍ଠିତ ମନରେ ସେ ପ୍ରାୟ ସର୍ବସ୍ୱାନ୍ତ ହୋଇଛନ୍ତି ।' ଏହି ଘଟଣାରୁ ବ୍ରଜସୁନ୍ଦର ଦାସ କିପରି ସ୍ୱାଭିମାନୀ ଥିଲେ ଜଣାପଡେ । ୧୯୪୫ ମସିହାରେ କାହ୍ନୁଚରଣ ମହାନ୍ତି ତାଙ୍କ ରଚିତ ଉପନ୍ୟାସ 'ଶାସ୍ତି' ପୁସ୍ତକଟିକୁ ବ୍ରଜସୁନ୍ଦର ଦାସଙ୍କ ସ୍ମୃତିକୁ ଅର୍ପଣ କରି ଲେଖିଛନ୍ତି- ''କେତେ ହଜିଲା ସଂଜ ତୁମରି ପାଖରେ କଟାଇଛି, ବାବା ଡାକ ଶୁଣିଛି ମୁଁ ଅକିଂଚନ, ତଥାପି କାହିଁକି ମୋ ଆଗରେ ତମର ମନର ବେଦନା, ଅପୂର୍ଣ୍ଣ ବାସନାର ଗାଥା ବଖାଣୁଥିଲ- ବଖାଣୁଥିଲ- ବାବା ଦେଶ ମୋର ଖଣ୍ଡିଆ ସାହିତ୍ୟ ମୋର ଅଧା, ଦେଶର ପିଲା ଭୋକିଲା, ଏମିତି କେତେ କଥା- ଆଖି ହୁଏ ଛଳ ଛଳ, ତମର ଆତ୍ମା ଉଠେ ବାହୁନି । କୁହ- ବ୍ୟର୍ଥ ମୋର ଜୀବନ, ବେଳକାଳ ସରି ଆସିଲା ବାବା,

କିଛି କରିପାରିଲି ନାହିଁ-'' ବ୍ରଜସୁନ୍ଦର ନିଜ ସ୍ୱାର୍ଥକୁ ଗଣଙ୍କର ମଙ୍ଗଳ ପାଇଁ ତ୍ୟାଗ କରିଥିଲେ ।

ବ୍ରଜସୁନ୍ଦର ଥିଲେ ଦେଶ ପ୍ରେମୀ, ସାହିତ୍ୟରଥି, ବଦାନ୍ୟ ଓ ଅତ୍ୟନ୍ତ ଉଦାର ହୃଦୟର ମହାପୁରୁଷ । ସେ ଥିଲେ ସରଳ, ଅମାୟିକ, ସ୍ୱାଭିମାନୀ ଓ ସ୍ଥିତପ୍ରଜ୍ଞ । ତାଙ୍କର ତ୍ୟାଗ, ନିଷ୍ଠା ଓ ଉଚ୍ଚାଦର୍ଶ ପାଇଁ ସେ ଓଡିଶାବାସୀଙ୍କ ହୃଦୟରେ ଚିର ସ୍ମରଣୀୟ ହୋଇ ରହିବେ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଅନ୍ୟତମ କର୍ଣ୍ଣଧାର ବ୍ରଜସୁନ୍ଦର ଦାସ ସମାଜ ସେବା ଓ ସାହିତ୍ୟ କ୍ଷେତ୍ରରେ ଜଣେ ଅବିସ୍ମରଣୀୟ ବ୍ୟକ୍ତିତ୍ୱ । ଦରିଦ୍ର ଓଡିଶାର ଦୁର୍ଦ୍ଦଶାମୋଚନ, ଭାଷାର ଉନ୍ନତି, ପଡୋଶୀ ପ୍ରଦେଶଗୁଡିକର ବିରୋଧ ସତ୍ତ୍ୱେ ବିଛିନ୍ନାଞ୍ଚଳଗୁଡିକୁ ବିଖଣ୍ଡିତ ଓଡିଶା ପ୍ରଦେଶରେ ମିଶ୍ରଣ ତାଙ୍କର ଲକ୍ଷ୍ୟ ଥିଲା । ଏଥିପାଇଁ ସେ ସାରା ଜୀବନ କର୍ମରତ ଥିଲେ ଓ ଅକାତରରେ ତାଙ୍କର ଅର୍ଥ ଅର୍ପଣ କରିଥିଲେ ।

୧୯୩୬ ମସିହା ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠିତ ହେଲା । ସେତେବେଳକୁ ସ୍ୱତନ୍ତ୍ର ଓଡିଶା ପ୍ରଦେଶକୁ ଦେଖିବାପାଇଁ ମଧୁବାବୁ ଓ ଗୋପବନ୍ଧୁ ଜୀବିତ ନ ଥିଲେ । ବ୍ରଜସୁନ୍ଦର ସ୍ୱତନ୍ତ୍ର ଓଡିଶା ପ୍ରଦେଶକୁ ଦେଖିବାର ସୌଭାଗ୍ୟ ଲାଭ କରିଥିଲେ । ସେ ମଧ ଓଡିଶା ବିଧାନସଭାର ସଭ୍ୟ ଥିଲେ । ଗୁରୁଗମ୍ଭୀର, ଅକାଟ୍ୟ ଓ ସଂଯତ ଭାଷାରେ ସେ ବିଧାନସଭାରେ ଆଲୋଚନା କରୁଥିଲେ । ୧୯୦୩-୧୯୪୩ ପର୍ଯ୍ୟନ୍ତ ପ୍ରାୟ ଚାଳିଶ ବର୍ଷ ଓଡିଶାର ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ନେତୃତ୍ୱ ନେଉଥିଲେ ବ୍ରଜସୁନ୍ଦର । କଟକ ସହରର ସାଧାରଣ ଜୀବନରେ ୪୦ ବର୍ଷ ଧରି ଏକ ଉଜ୍ଜ୍ୱଳ କେନ୍ଦ୍ର ଥିଲେ । ସମସ୍ତ ସାଧାରଣ କାର୍ଯ୍ୟରେ କଟକବାସୀ ତାଙ୍କର ଉପସ୍ଥିତକୁ ଭୁଲୁ ନ ଥିଲେ । ପୁଣ୍ୟଶ୍ଳୋକ ବ୍ରଜସୁନ୍ଦର ଦାସ ଏକ ବ୍ୟକ୍ତିବିଶେଷ ନୁହଁନ୍ତି ବରଂ ଓଡିଶାର ପ୍ରଭାବଶାଳୀ ବିରାଟ ଅନୁଷ୍ଠାନ ଭାବେ ନିଜ ନାମର ଯଥାର୍ଥତା ପ୍ରତିପାଦନ କରିଯାଇଛନ୍ତି । ମଧୁବାବୁଙ୍କ ପରି ସେ ସର୍ବସ୍ୱାନ୍ତ ହୋଇ ଶେଷ ଜୀବନ ଅର୍ଥାଭାବରେ କାଟିଥିଲେ । ସାରାଜୀବନ ଧନ, ମନ ଓ ଶ୍ରମ ଦେଇ ବିଛିନ୍ନାଞ୍ଚଳର ମିଶ୍ରଣ ପାଇଁ କାର୍ଯ୍ୟ କରିଥିବା ବ୍ରଜସୁନ୍ଦର ଦାସ ଉତ୍କଳମାତାର ଖଣ୍ଡିତ ରୂପ ଦେଖି ଦୁଃଖରେ ମ୍ରିୟମାଣ ହୋଇ ୧୯୪୪ ଜୁନ୍ ୯ ତାରିଖରେ ଆଖି ବୁଜିଲେ ।

---

୭/ଏମ୍-୫୧, ଶୈଳଶ୍ରୀ ବିହାର
ଭୁବନେଶ୍ୱର-୨୧

**ସହାୟିକା ପୁସ୍ତିକା**

୧. 'ଦେଶପ୍ରାଣ ବ୍ରଜସୁନ୍ଦର,' କାହ୍ନୁ ଚରଣ ମହାନ୍ତି, ୧୯୮୩, ବ୍ରଜସୁନ୍ଦର ଶତବାର୍ଷିକୀ କମିଟି, ସମ୍ପାଦନା- ପଠାଣି ପଟ୍ଟନାୟକ ।

୨. 'ଉତ୍କଳ ସମ୍ମିଳନୀ ଓ ଓଡିଶାର ଜାତୀୟ ଜୀବନ,' ପଠାଣି ପଟ୍ଟନାୟକ, ଉତ୍କଳ ନିର୍ଘୋଷ, ୨୦୦୧, କଟକ

୩. ଗୋପବନ୍ଧୁ ଓ ବ୍ରଜସୁନ୍ଦର ଦାସଙ୍କ ସମ୍ପର୍କର କେତୋଟି ଦିଗ, ଡଃ. ଶରତ କୁମାର ବିଶ୍ୱାଳ, ସମାଜ, ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା, ୨୦୧୭, କଟକ

୪. ଭାଷାଭିତ୍ତିକ ରାଜ୍ୟ ଗଠନ ଏବଂ ସ୍ୱତନ୍ତ୍ର ଓଡିଶା, ଅରୁଣ କୁମାର ପଣ୍ଡା, ଗୋପବନ୍ଧୁଙ୍କ ସତ୍ୟବାଦୀ, ଅପ୍ରେଲ ୨୦୧୭, କଟକ



# ବଜେଟ୍‌ରେ ଗାଁ ଗାଁକୁ ସବୁଦିନିଆ ରାସ୍ତା ଦ୍ୱାରା ସଂଯୋଗୀକରଣକୁ ଗୁରୁତ୍ୱ

ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ରାଜ୍ୟବାସୀ, ବିଶେଷ କରି ଗ୍ରାମାଞ୍ଚଳରେ ରହୁଥିବା ଲୋକଙ୍କ ସାମାଜିକ-ଆର୍ଥିକ ପ୍ରଗତି ପାଇଁ ପ୍ରତିଶ୍ରୁତିବଦ୍ଧ । ସବୁଦିନିଆ ରାସ୍ତା ଓ ସେତୁ ନିର୍ମାଣ ଦ୍ୱାରା ଗ୍ରାମାଞ୍ଚଳର ଲୋକଙ୍କ ଗମନାଗମନ ଓ ଦ୍ରବ୍ୟ ପରିବହନ ସୁଗମ ହେବା ସହ ସେମାନଙ୍କ ଅର୍ଥନୈତିକ ଅଭିବୃଦ୍ଧି, ଦାରିଦ୍ର୍ୟ ଦୂରୀକରଣ ଏବଂ ସାମଗ୍ରିକ ବିକାଶ ସାଧିତ ହୋଇଥାଏ । ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନା (MMSY) ଓ ବିଜୁ ସେତୁ ଯୋଜନା (BSY) ଭଳି ରାଜ୍ୟ ପ୍ରାୟୋଜିତ ପ୍ରମୁଖ ଯୋଜନା ଜରିଆରେ ରାଜ୍ୟ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ବିଭାଗ ରାସ୍ତା ଓ ସେତୁ ନିର୍ମାଣ କରି ଗ୍ରାମାଞ୍ଚଳର ସଂଯୋଗବିହୀନ ଗ୍ରାମଗୁଡିକୁ ଉନ୍ନତମାନର ଯୋଗାଯୋଗ ସୁବିଧା ଉପଲବ୍ଧ କରାଯାଉଛି ବୋଲି ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ପ୍ରୀତିରଞ୍ଜନ ଘଡେଇ କହିଛନ୍ତି ।

ଗୀତଗୋବିନ୍ଦ ସଦନଠାରେ ଆୟୋଜିତ ସାମ୍ବାଦିକ ସମ୍ମିଳନୀରେ ମନ୍ତ୍ରୀ ଶ୍ରୀ ଘଡ଼େଇ ବଜେଟର ମୁଖ୍ୟାଂଶ ଦର୍ଶାଇବାକୁ ଯାଇ କହିଲେ ଯେ ଗ୍ରାମ୍ୟ ଉନ୍ନୟନ ବିଭାଗ ଆଜି ସଫଳତାର ଶୀର୍ଷରେ ପହଞ୍ଚିଛି । ରାଜ୍ୟର ଅଭିବୃଦ୍ଧି ପଛରେ ରହିଛି ଗମନାଗମନର ସୁବ୍ୟବସ୍ଥା । ଗ୍ରାମାଞ୍ଚଳରେ ରହୁଥିବା ସମାଜର ଶେଷ ବ୍ୟକ୍ତି ପାଖରେ କିପରି ଗମନାଗମନ ସୁବିଧା ପହଞ୍ଚି ପାରିବ ସେଥିପାଇଁ ବିଭାଗ ସମସ୍ତ କାର୍ଯ୍ୟକ୍ରମ ହାତକୁ ନେଇଛି । ଚଳିତ ୨୦୨୩-୨୪ ଆର୍ଥିକ ବର୍ଷ ବଜେଟକୁ ୭୫୦୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି, ଯାହାକି ୨୦୧୯-୨୦ ବଜେଟ୍ ତୁଳନାରେ ୩୫.୫୭% ଅଧିକ । ୨୦୨୩-୨୪ ବର୍ଷରେ ୧୯୦୦.୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ୫୨୬ଟି ନୂତନ ବିଜୁ ସେତୁ ନିର୍ମାଣ ପାଇଁ ବିଭାଗର ବ୍ୟବସ୍ଥା ରହିଛି । ବର୍ତ୍ତମାନ ସୁଦ୍ଧା ବିଭାଗ ଦ୍ୱାରା ୧୨୫୪ଟି ସେତୁ ନିର୍ମାଣ ସରିଛି ଏବଂ ଆଉ ୯୦୦ଟି ସେତୁ ନିର୍ମାଣର ବିଭିନ୍ନ ପର୍ଯ୍ୟାୟରେ ରହିଛି ।

ଭୂତଳ ଜଳର ପୁନରୁଦ୍ଧାର ଏବଂ ପ୍ରବାହିତ ଜଳର ଆଭ୍ୟନ୍ତରୀଣ ସଂରକ୍ଷଣ ପାଇଁ ବିଭାଗ ୫୦.୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ୧୦୦ଟି ଆଡ଼ିବନ୍ଧ ପ୍ରକଳ୍ପ ନିର୍ମାଣ କରିବାକୁ ଲକ୍ଷ୍ୟ ରଖିଛି । ବର୍ତ୍ତମାନ ସୁଦ୍ଧା ୩୨ଟି ଆଡ଼ିବନ୍ଧ କାମ ଶେଷ ହୋଇଛି । ସେହିଭଳି, ସଡ଼କ ଅଧୀନରେ ମୁଖ୍ୟମନ୍ତ୍ରୀ ସଡକ ଯୋଜନା(MMSY), MMSY-ରହିଥିବା ଗ୍ରାମ୍ୟ ଉନ୍ନୟନ ରାସ୍ତାର ଉନ୍ନତିକରଣ, MMSY- ସ୍ଥାନାନ୍ତରିତ ରାସ୍ତାର ଉନ୍ନତିକରଣ (TRIP), MMSY-ଦୁର୍ଗମ ଅଂଚଳର ଯୋଗାଯୋଗ ବିହୀନ ଗ୍ରାମଗୁଡିକର ସଂଯୋଗୀକରଣ (CUVDA), MMSY-ରାସ୍ତା ନଥିବା ଗ୍ରାମଗୁଡିକର ସଂଯୋଗୀକରଣ(CMRL) ଆଦି ପ୍ରମୁଖ ଯୋଜନାରେ ୬୦୦୦ କିଲୋମିଟର ରାସ୍ତା ନିର୍ମାଣ ନିମନ୍ତେ ୨୦୬୧.୦୦ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଛି, ଯାହା ନିଶ୍ଚିତ ଭାବରେ ଗ୍ରାମୀଣ ସଡ଼କ ନେଟୱାର୍କରେ

ଉନ୍ନତି ଆଣିବ । ବର୍ତ୍ତମାନ ସୁଦ୍ଧା ଏହି ବିଭାଗ MMSY ଯୋଜନା ଅଧୀନରେ ୧୦୬୨୧ କିଲୋମିଟର ରାସ୍ତା ନିର୍ମାଣ କରିସାରିଛି ।

ମାଲକାନଗିରି ଜିଲ୍ଲାର ସ୍ୱାଭିମାନ ଅଞ୍ଚଳ, ଦୁର୍ଗମ ମାଓପ୍ରବଣ ଅଞ୍ଚଳ ଏବଂ ଅନ୍ୟାନ୍ୟ ରାସ୍ତା ସଂଯୋଗ ନଥିବା ଅଞ୍ଚଳର ସଂଯୋଗୀକରଣ ନିମନ୍ତେ ୨୦୦ କିଲୋମିଟର ରାସ୍ତା ନିର୍ମାଣ ଉପରେ ଗୁରୁତ୍ୱ ଦିଆଯାଉଛି ବୋଲି ମନ୍ତ୍ରୀ ଶ୍ରୀ ଘଡେଇ କହିଛନ୍ତି ।

ସାମ୍ବାଦିକମାନଙ୍କ ପ୍ରଶ୍ନର ଉତ୍ତରରେ ପ୍ରମୁଖ ଶାସନ ସଚିବ ସଞ୍ଜୟ କୁମାର ସିଂହ କହିଲେ ଯେ ସରକାର ଗ୍ରାମୀଣ ରାସ୍ତାର ରକ୍ଷଣାବେକ୍ଷଣ ଉପରେ ଗୁରୁତ୍ୱ ଦେଉଛନ୍ତି । ୫୦,୦୦୦ କିଲୋମିଟର ରାସ୍ତାକୁ ଖାଲଖମା ମୁକ୍ତ କରିବା ଏବଂ ଯାନବାହାନ ଚଳାଚଳର ଗୁଣବତ୍ତାରେ ଉନ୍ନତି ଆଣିବା ପାଇଁ ୨୦୨୩-୨୪ରେ ୧୧୫୮.୭୯ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଛି । ଏହା ପୂର୍ବ ବର୍ଷ ତୁଳନାରେ ପ୍ରାୟ ୨୫୦୦୦ କିଲୋମିଟର ଅଧିକ ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଗ୍ରାମାଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପାଇଁ ବଦ୍ଧପରିକର । ସେଥିପାଇଁ ଆଗାମୀ ୫ ବର୍ଷ ମଧ୍ୟରେ ମୁଖ୍ୟମନ୍ତ୍ରୀ ସଡକ ଯୋଜନାରେ ଆନୁମାନିକ ୧୨,୦୦୦ କୋଟି ଟଙ୍କା ବିନିଯୋଗରେ ୧୫,୦୦୦ କିଲୋମିଟର ଗ୍ରାମୀଣ ରାସ୍ତା ଏବଂ ବିଜୁ ସେତୁ ଯୋଜନାରେ ଆନୁମାନିକ ୬,୦୦୦ କୋଟି ଟଙ୍କା ବିନିଯୋଗରେ ୧୫୦୦ ନୂତନ ସେତୁ ନିର୍ମାଣ କରି ସବୁଦିନିଆ ରାସ୍ତା ଯୋଗାଇଦେବାକୁ ସରକାର ଲକ୍ଷ୍ୟ ରଖିଛନ୍ତି ବୋଲି ପ୍ରମୁଖ ଶାସନ ସଚିବ ଶ୍ରୀ ସିଂ କହିଛନ୍ତି ।

ସୂଚନା ଓ ଲୋକସଂପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ଇନ୍ଦ୍ରମଣି ତ୍ରିପାଠୀ କାର୍ଯ୍ୟକ୍ରମ ପରିଚାଳନା କରିଥିବାବଳେ ଗ୍ରାମ୍ୟ ଉନ୍ନୟନ ବିଭାଗର ନିର୍ଦ୍ଦେଶକ ଶ୍ରୀ ଅରବିନ୍ଦ ଅଗ୍ରୱାଲଙ୍କ ସମେତ ବହୁ ବରିଷ୍ଠ ଅଧିକାରୀ ଓ ଗଣମାଧ୍ୟମର ପ୍ରତିନିଧି ଉପସ୍ଥିତ ଥିଲେ ।

ସଚ୍ଚିଦାନନ୍ଦ ବେହେରା
ସୂଚନା ଅଧିକାରୀ



# ସହରାଞ୍ଚଳ ରୂପାନ୍ତରୀକରଣ ଯାତ୍ରା-୨୦୨୩-୨୪

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡିଶା ସରକାର ଲୋକାଭିମୁଖୀ ସହରୀ ଶାସନ ଯୋଗାଇବା ଏବଂ ସହରଗୁଡିକର ଜୀବନଧାରଣରେ ଉନ୍ନତି ଆଣିବା ପାଇଁ ସର୍ବଦା ପ୍ରାଥମିକତା ଦିଆଯାଇଛି । ଓଡ଼ିଶାର ସହରାଞ୍ଚଳ ବିକାଶ ନିମନ୍ତେ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ପାଇଁ ୨୦୨୩-୨୪ ବଜେଟ୍ ରେ ୭୯୧୪ କୋଟି ବ୍ୟୟ ବରାଦ ହେବା ଏକ ନିର୍ଣ୍ଣାୟକ ସଫଳତା କାରଣ ଏତଦ୍ୱାରା ରାଜ୍ୟର ସମସ୍ତ ୧୧୫ ଟି ପୌର ସଂସ୍ଥା ଅଧୀନରେ ଉନ୍ନତ ମାନର ମୌଳିକ ନାଗରିକ ସେବା ବିକଶିତ ହେବାର ଲକ୍ଷ୍ୟ ସାଧିତ ହେବ । ୨୦୦୦-୨୦୦୧ ଆର୍ଥିକ ବର୍ଷରେ ଏହି ବ୍ୟୟ ବରାଦ ୨୭୬ କୋଟି ଟଙ୍କା ଥିବା ସମୟରେ ଏବେ ୨୮ ଗୁଣ ବୃଦ୍ଧି ପାଇ ୭୯୧୪ କୋଟି ଟଙ୍କାରେ ପହଞ୍ଚିବା ରାଜ୍ୟ ସରକାରଙ୍କର ସହରାଞ୍ଚଳ ରୂପାନ୍ତରଣ ନିମନ୍ତେ ଥିବା ଆନ୍ତରିକତା ଓ ଅଙ୍ଗୀକାରବଦ୍ଧତାକୁ ଦର୍ଶାଉଛି ।

ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ବଜେଟ୍‌ରେ ଆବଣ୍ଟିତ ପ୍ରମୁଖ କାର୍ଯ୍ୟଗୁଡ଼ିକ ହେଲା ସହରାଞ୍ଚଳ ପାନୀୟ ଜଳଯୋଗାଣ ପାଇଁ ୨୪୦୦ କୋଟି ଟଙ୍କା, ସାମଗ୍ରିକ ନଗର ବିକାଶ ତଥା ବସ୍ତି ସମୂହର ବାସଯୋଗ୍ୟ ରୂପାନ୍ତରଣ ପାଇଁ ୨୩୪୫ କୋଟି ଟଙ୍କା, ବିକେନ୍ଦ୍ରିତ ପରିମଳ ଓ ନର୍ଦ୍ଦମା ପରିଚାଳନା ପାଇଁ ୧୩୦୭ କୋଟି ଟଙ୍କା ଓ ସହରାଞ୍ଚଳ ଗୃହ ନିର୍ମାଣ ପାଇଁ ୬୦୯ କୋଟି ଟଙ୍କାର ବ୍ୟୟ ବରାଦ ହୋଇଛି ।

ପ୍ରତି ଘରେ ଟ୍ୟାପ୍ ମାଧ୍ୟମରେ ବିଶୁଦ୍ଧ ପାନୀୟ ଜଳ ପହଞ୍ଚାଇବା ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସ୍ୱପ୍ନ ସାକାର କରିବା ଦିଗରେ ଏଯାବତ୍ କଟକ, ଭୁବନେଶ୍ୱର, ବ୍ରହ୍ମପୁର, ସମ୍ବଲପୁର ଓ ରାଉରକେଲା ମହାନଗର ସମେତ ୮୫ଟି ନଗରୀରେ ଟ୍ୟାପ୍ ସଂଯୋଗ ପ୍ରଦାନ କରାଯାଇଛି ଓ ଓଡ଼ିଶାର ବାକି ୩୦ଟି ନଗରୀରେ ୧୦୦% ଘରକୁ ଟ୍ୟାପ୍ ସଂଯୋଗ ଡିସେମ୍ବର ୨୦୨୩ ସୁଦ୍ଧା ସମ୍ପୂର୍ଣ୍ଣ ହେବ ।

5T ପଦକ୍ଷେପ ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ମିଶନ ଯୋଗୁଁ ଓଡ଼ିଶାର ପାନୀୟ ଜଳ ଯୋଗାଣର ମାନ ନ୍ୟୁୟର୍କ, ଟୋକିଓ, ସିଙ୍ଗାପୁର ଓ ଲଣ୍ଡନ ପରି ଆନ୍ତର୍ଜାତିକ ସହରର ମାନ ସହ ସମକକ୍ଷ ହୋଇପାରିଛି । ସମଗ୍ର ସହରକୁ ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ସେବା ଯୋଗାଇବାରେ ପୁରୀ ଓ ଗୋପାଳପୁର ଭାରତର ପ୍ରଥମ ଓ ଦ୍ୱିତୀୟ ସହରର ମାନ୍ୟତା ପାଇଛନ୍ତି । ଜୁନ୍ ୨୦୨୩ ସୁଦ୍ଧା ବ୍ରହ୍ମପୁର ସହର ଏବଂ ଭୁବନେଶ୍ୱର, କଟକ, ରାଉରକେଲା ସମେତ ବାକି ସମସ୍ତ ସହରରେ ଡିସେମ୍ବର ୨୦୨୩ ସୁଦ୍ଧା ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ମିଶନ୍ ସମ୍ପୂର୍ଣ୍ଣ ହେବ । ୨୦୨୩-୨୪ ବଜେଟ୍ ରେ ସହରାଞ୍ଚଳ ଜଳଯୋଗାଣ ପାଇଁ ୨୪୦୦୦ କୋଟି ଟଙ୍କାର ବ୍ୟୟ ବରାଦ ହୋଇଛି । ୨୦୨୨ ରେ ସ୍ପେନ୍‌ଠାରେ ଅନୁଷ୍ଠିତ ଗ୍ଲୋବାଲ୍ ୱାଟର୍ ସମ୍ମିଟ୍‌ରେ ୱାଟକୋ ଗ୍ଲୋବାଲ୍ ୱାଟର୍ ଲିଡର୍ ଡ଼ିଷ୍ଟିଙ୍କସନ୍ ପୁରସ୍କାରରେ ସମ୍ମାନିତ ହୋଇଛି ଏବଂ ୨୪ ଘଣ୍ଟା ନିରନ୍ତର ବିଶୁଦ୍ଧ ଜଳ ଯୋଗାଇବାରେ ଓଡ଼ିଶା ହେଉଛି ଭାରତର ସର୍ବପ୍ରଥମ ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ରାଜ୍ୟ ।

ବିକାଶଶୀଳ ସହରାଂଚଳ ନିର୍ମାଣରେ, ବସ୍ତି ବାସିନ୍ଦାଙ୍କ ଭୂମିକାକୁ ସ୍ୱୀକୃତି ଦେବା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଆହ୍ୱାନ ଭୂମି ଅପେକ୍ଷା ଲୋକଙ୍କ ଜୀବନ ଆମ ପାଇଁ ମୂଲ୍ୟବାନକୁ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଜାଗା ମିଶନ୍ ଯୋଜନା ପ୍ରବର୍ତ୍ତିତ ହୋଇଛି । ଏହା ଦ୍ୱାରା ୧.୭୩ ଲକ୍ଷ ବସ୍ତି ବାସିନ୍ଦା ପରିବାର ଭୂମି ଅଧିକାର ପ୍ରମାଣପତ୍ର ପାଇଛନ୍ତି ଏବଂ ଡିସେମ୍ବର ୨୦୨୩ ସୁଦ୍ଧା ଭୁବନେଶ୍ୱର, କଟକ, ବ୍ରହ୍ମପୁର, ସମ୍ବଲପୁର ଓ ରାଉରକେଲା ମହାନଗର ନିଗମରେ ଆହୁରି ୧ ଲକ୍ଷ ପରିବାର ଏହି ସୁବିଧା ପାଇବେ । ବସ୍ତି ବାସିନ୍ଦାଙ୍କ ଜୀବନ ଧାରଣର ମାନରେ ଉନ୍ନତି ନିମନ୍ତେ ୭୨୫ ବସ୍ତିକୁ ବିଜୁ ଆଦର୍ଶ କଲୋନୀରେ ରୂପାନ୍ତରିତ କରାଯାଇ ବିଶୁଦ୍ଧ ପାନୀୟ ଜଳ, ଶୌଚାଳୟ, ରାସ୍ତା ଆଲୋକୀକରଣ, ପକ୍କା ରାସ୍ତା ଓ ଡ୍ରେନେଜ୍ ଆଦି ବ୍ୟବସ୍ଥା କରାଯାଇଛି । ହିଞ୍ଜିଳିକାଟୁ ଓ ଦିଗପହଣ୍ଡି ସମ୍ପୂର୍ଣ୍ଣ ବସ୍ତି ମୁକ୍ତ ସହର ରୂପେ ମାନ୍ୟତା ହାସଲ କରିଛନ୍ତି । ସମଗ୍ର ଦେଶରେ ଓଡ଼ିଶା ଆଜି ବସ୍ତି ବାସିନ୍ଦାଙ୍କୁ ଉଚ୍ଛେଦ ପରିବର୍ତ୍ତେ ସେମାନଙ୍କ ସଶକ୍ତୀକରଣ ଆଭିମୁଖ୍ୟର ନେତୃତ୍ୱ ନେଇ ୟୁ.ଏନ୍ ୱାର୍ଲ୍ଡ ହାବିଟାଟ୍ ଆୱାର୍ଡ଼ ୨୦୧୯ ଓ ୨୦୨୩ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇପାରିଛି ।

୫ଟି ଶାସନ ବ୍ୟବସ୍ଥାରେ ସୁଖର ଓଡ଼ିଶା ସୁସ୍ଥ ଓଡିଶା ଗଠନ କରିବା ଦିଗରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ପରିକଳ୍ପନାର ଅଂଶ ରୂପେ MUKTA ଯୋଜନା -ସହରାଞ୍ଚଳ ମଜୁରିଭିତ୍ତିକ ନିୟୋଜନ ଯୋଜନା ନିମନ୍ତେ ୨୦୨୩-୨୪ ବଜେଟ୍‌ରେ ୪୦୦ କୋଟି ଟଙ୍କାର ବ୍ୟୟ ବରାଦ ହୋଇଛି । ଏଥିରେ ୧.୬୦ ଲକ୍ଷ ଗୋଷ୍ଠୀ ସହଭାଗୀ ଯଥା ମିଶନ ଶକ୍ତି ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ବସ୍ତି ବାସିନ୍ଦା ସଂଘ ସମୂହପ୍ରକଳ୍ପ ଗୁଡିକ କାର୍ଯ୍ୟକାରୀ କରି ପ୍ରୋତ୍ସାହନ ଅର୍ଥ ରାଶି ଲାଭ କରିଛନ୍ତି । ଏପର୍ଯ୍ୟନ୍ତ ୬୨ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଛି । ପୌରାଞ୍ଚଳମାନଙ୍କରେ ନାଗରିକମାନଙ୍କ ସୁବିଧା ପାଇଁ ୫୨୦୦୦ ପ୍ରକଳ୍ପ ଯଥା ଚାଲିବା ରାସ୍ତା,ମୁକ୍ତାକାଶ ବ୍ୟାୟାମଶାଳା,ପିଲାମାନଙ୍କ କ୍ରୀଡ଼ା ଉପକରଣ, ପେଭର୍ ରୋଡ଼, ଗୋଷ୍ଠୀ କେନ୍ଦ୍ର ଇତ୍ୟାଦି ନିର୍ମାଣ କରାଯାଇଛି । ଓଡିଶା ଦୁଇଟି ଆନ୍ତର୍ଜାତିକ ପୁରସ୍କାର ଯଥା ଗୁଆଙ୍ଗଝାଓ ଆୱାର୍ଡ-୨୦୨୧ ଓ ଡବ୍ଲ୍ୟୁ. ଆର ଆଇ ରୋସ୍ ପ୍ରାଇଜ୍ ଫର୍ ସିଟିଜ୍- ୨୦୨୨ ହାସଲ କରିଅଛି ।

ଉନ୍ନତି ଯୋଜନା ଅଧୀନରେ ରାଜ୍ୟର ସମସ୍ତ ପୌର ସଂସ୍ଥା ଗୁଡ଼ିକରେ ୪୦୦ କଲ୍ୟାଣ ମଣ୍ଡପ ର୍ନିମାଣ କରାଯିବଛ ପ୍ରତିଟି ମହାନଗର ନିଗମରେ ୧୦ଟି, ପ୍ରତି ପୌରପାଳିକାରେ ୪ଟି ଏବଂ ପ୍ରତି ବିଜ୍ଞାପିତ ଅଞ୍ଚଳ ପରିଷଦରେ ୨ଟି କଲ୍ୟାଣ ମଣ୍ଡପ ନିର୍ମିତ ହେବ ।

ଆର୍ଥିକ ବର୍ଷ ୨୦୨୩-୨୪ ମସିହାରେ ୧୧୫ ଟି ପୌରାଞ୍ଚଳ ଗୁଡିକରେ ଚିହ୍ନିତ ୧୨୦୦ କିଲୋମିଟର କଚା ରାସ୍ତାଗୁଡିକୁ ପାଭର୍ ରୋଡ ରୂପାନ୍ତରିତ କରାଯିବା ପାଇଁ ମୋଟ ୪୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।

ଓଡିଶାର ସହରାଞ୍ଚଳଗୁଡିକରେ ଥିବା ଜଳାଶୟଗୁଡ଼ିକର ପୁନଃରୁଦ୍ଧାର କରିବା ସହିତ ୨୦୦୦ରୁ ଅଧିକ ବୃହତ ଜଳାଶୟଗୁଡିକରେ ଆମ ପୋଖରୀ ପଦକ୍ଷେପ ମାଧମରେ ମନୋରଞ୍ଜନ ପାଇଁ ସର୍ବସାଧାରଣଙ୍କ ନିମନ୍ତେ ଉପଯୁକ୍ତ ସ୍ଥାନ ସୃଷ୍ଟି କରିବା, ପ୍ରକୃତିଭିତ୍ତିକ ଉପଚାର ସୃଷ୍ଟି କରିବା ପାଇଁ ୧୨୦ କୋଟି ଟଙ୍କା ବିନିଯୋଗ କରାଯିବ । ଏହି ପଦକ୍ଷେପ ମିଶନ ଶକ୍ତି ସଦସ୍ୟାଙ୍କ ସହଭାଗିତାରେ କରାଯିବାର ବ୍ୟବସ୍ଥା କରାଯାଇଛି ।



# ରଙ୍ଗେଇଲୁଣ୍ଡାକୁ ବିମାନସେବା ଉଡ଼ାଣର ଶୁଭାରମ୍ଭ

ମାନ୍ୟବର ମୁଖ୍ୟମନ୍ତ୍ରୀ ସର୍ବଦା ଓଡିଶାର ପ୍ରତ୍ୟେକ କୋଣ ଅନୁକୋଣର ପରିବର୍ତ୍ତନ ଏବଂ ବିକାଶ ଉପରେ ଗୁରୁତ୍ୱାରୋପ କରିଛନ୍ତି । ବାୟୁ ସଂଯୋଗକୁ ବିକଶିତ କରିବା ଏବଂ ରାଜ୍ୟ ରାଜଧାନୀରୁ ଅନ୍ୟ ବଡ ଅଞ୍ଚଳ ଏବଂ ସହରକୁ ବିମାନ ଯୋଗାଯୋଗ ବୃଦ୍ଧି କରିବା ପାଇଁ ଓଡ଼ିଶା ସରକାର ଭୁବନେଶ୍ୱର-ରଙ୍ଗେଇଲୁଣ୍ଡା (ବ୍ରହ୍ମପୁର) ମାର୍ଗରେ ସମ୍ପୂର୍ଣ୍ଣ ରାଜ୍ୟ ପ୍ରାୟୋଜିତ ବିମାନ କାର୍ଯ୍ୟ ଆରମ୍ଭ କରିଛନ୍ତି । ରେଶମ ସହର, ବ୍ରହ୍ମପୁର ମନ୍ଦିର ମାଳିନୀ ସହର, ଭୁବନେଶ୍ୱର ସହିତ ବାୟୁ ସଂଯୋଗ ହେବ, ଯାହା ଯାତ୍ରା ସମୟକୁ ଏକ ଘଣ୍ଟାକୁ ହ୍ରାସ କରିବ । ରଙ୍ଗେଇଲୁଣ୍ଡାକୁ ବିମାନ ଚଳାଚଳ ପାଇଁ ଦୀର୍ଘ ଦିନର ଦାବି ପୂରଣ ହୋଇଛି ।

ଚିଲିକା ହ୍ରଦ, ତାମ୍ପରା ହ୍ରଦ, ଗୋପାଳପୁର ବିଚ୍, ଋଷିକୁଲ୍ୟା ନଦୀ, ତାରା ତାରିଣୀ ମନ୍ଦିର ଇତ୍ୟାଦି ଆକର୍ଷଣୀୟ ସ୍ଥାନ ଏବଂ ପର୍ଯ୍ୟଟନ ସ୍ଥଳର ଉପସ୍ଥିତି ରଙ୍ଗେଇଲୁଣ୍ଡାରେ ବିମାନ ସଂଯୋଗ ପରେ ଅନେକ ପର୍ଯ୍ୟଟକଙ୍କୁ ଆକର୍ଷିତ କରିବ । ବରିଷ୍ଠ ଡାକ୍ତର, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟ ବ୍ରହ୍ମପୁରର ପ୍ରଫେସର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଆଇଆରଇଏଲ, ଆଇଆଇଏସଇଆର ଏବଂ ସହରର ବ୍ୟବସାୟୀମାନେ ବାରମ୍ବାର ବିମାନରେ ଯିବେ । ପୂର୍ବରୁ ରଙ୍ଗେଇଲୁଣ୍ଡା ଏୟାରଷ୍ଟ୍ରିପକୁ କେବଳ ଅତିଥିମାନଙ୍କ ଆଗମନ ସମୟରେ ବିମାନ ଚଳାଚଳ ପାଇଁ ବ୍ୟବହାର କରାଯାଉଥିଲା । M / s ଇଣ୍ଡିଆ ୱାନ ଏୟାରର ୯ ସିଟ୍‌ର ବିଶିଷ୍ଟ ବିମାନକୁ ବ୍ୟବହାର କରି ଏହି ମାର୍ଗରେ ବିମାନ ଚଳାଚଳ କରିବ ।

ମାନ୍ୟବର ମୁଖ୍ୟମନ୍ତ୍ରୀ ସବୁବେଳେ ଓଡ଼ିଶାର ପ୍ରତିଟି କୋଣ ଅନୁକୋଣର ପରିବର୍ତ୍ତନ ଓ ବିକାଶ ଉପରେ ଗୁରୁତ୍ୱ ଦେଇଆସିଛନ୍ତି । ରାଜଧାନୀକୁ ସଂଯୋଗ କରିବା ପାଇଁ ରଙ୍ଗେଇଲୁଣ୍ଡାଠାରେ ଏକ ବିମାନ ବନ୍ଦର ନିର୍ମାଣ କରିବା ସ୍ଥାନୀୟ ସମୁଦାୟର ଏକ ଅତ୍ୟନ୍ତ ଆବଶ୍ୟକୀୟ ଆକାଂକ୍ଷା ଥିଲା ଯାହା ଏହି କ୍ଷେତ୍ରରେ ଆର୍ଥିକ କାର୍ଯ୍ୟକଳାପକୁ ତ୍ୱରାନ୍ୱିତ କରିବଛ ବ୍ରହ୍ମପୁର ଦକ୍ଷିଣ ଓଡ଼ିଶାର ଏକ ବ୍ୟବସାୟିକ ପେଣ୍ଠସ୍ଥଳୀ ଭାବେ ପରିଗଣିତ ହେଉଥିବା ବେଳେ ଏହାର ଜନସଂଖ୍ୟା ଓ ଶିଳ୍ପ କ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ଘଟିଛି । ଏହି ମାର୍ଗରେ ବିମାନ ଚଳାଚଳ ଦ୍ୱାରା ଉଦ୍ୟୋଗ ଏବଂ ପର୍ଯ୍ୟଟନ କ୍ଷେତ୍ରକୁ ପ୍ରୋତ୍ସାହନ ମିଳିବ । ରଙ୍ଗେଇଲୁଣ୍ଡାରେ ବିମାନ ଚଳାଚଳ ପାଇଁ ବହୁତ ଦିନରୁ ଦାବି କରାଯାଉଥିଲା ।



# ଡାକୋଟା (ଡିସି– ୩ ) ବିମାନର ପ୍ରଦର୍ଶନ

ପ୍ରବାଦପୁରୁଷ ସ୍ୱର୍ଗତ ବିଜୁ ପଟ୍ଟନାୟକ, ବୈମାନିକ ଏବଂ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରତିଷ୍ଠିତ କଳିଙ୍ଗ ଏୟାରଲାଇନ୍ସର ଡାକୋଟା (ଡିସି-୩) ବିମାନ (VT-AUI) ପଞ୍ଚାୟତିରାଜ ଏବଂ ଲୋକସେବା ଦିବସ ୦୫ ମାର୍ଚ୍ଚ ୨୦୨୩ରେ ରାଜ୍ୟବାସୀ ନିମନ୍ତେ ସମର୍ପିତ ହୋଇଛି । ଉକ୍ତ ଏୟାରଲାଇନ୍ସର ପ୍ରାୟ ଏକ ଡଜନ ଡାକୋଟା ବିମାନଗୁଡ଼ିକ କାର୍ଯ୍ୟ କରୁଥିଲା ଏବଂ ଶ୍ରୀ ପଟ୍ଟନାୟକ ଏହାର ମୁଖ୍ୟ ପାଇଲଟ୍ ଥିଲେ । ଏହି ବିମାନଟି ଇଣ୍ଡୋନେସିଆର ପୂର୍ବତନ ଉପ-ରାଷ୍ଟ୍ରପତି ଏମ.ଡି ହାଟା ଏବଂ ପୂର୍ବତନ ପ୍ରଧାନମନ୍ତ୍ରୀ ସୁଲ୍‌ତାନ ସାହାରିୟରଙ୍କୁ ଉଦ୍ଧାର କରିବା ପାଇଁ ବ୍ୟବହୃତ ହୋଇଥିଲା । ତାଙ୍କ ଉଦ୍ୟମ ପାଇଁ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କୁ ଇଣ୍ଡୋନେସିଆର ସମ୍ମାନଜନକ ନାଗରିକତ୍ୱ ପ୍ରଦାନ କରାଯାଇଥିଲା ଏବଂ ଭୂମିପୁତ୍ର ଆଖ୍ୟା ପ୍ରଦାନ କରାଯାଇଥିଲା, ଯେଉଁ ସ୍ୱୀକୃତି କ୍ୱଚିତ ବିଦେଶୀଙ୍କୁ ଦିଆଯାଏ ।

ଯେହେତୁ, ଏହି ବିମାନଟି ସ୍ୱର୍ଗତ ଶ୍ରୀ ବିଜୁ ପଟ୍ଟନାୟକ ସହିତ ଘନିଷ୍ଠ ଭାବରେ ଜଡିତ, ଏହା ଓଡିଶାର ସମୃଦ୍ଧ ବିମାନ ଚଳାଚଳ ଇତିହାସର ପ୍ରତୀକ ହେବ, ଯାହା ଓଡିଶାର ଅନ୍ୟତମ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପାଇଁ ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ହେବ । ଲୋକମାନେ ଏହି ଡାକୋଟା ବିମାନକୁ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ସାହସିକତା ଏବଂ ବୀରତ୍ୱର ପ୍ରତୀକ ଭାବରେ ଦେଖିବେ ।

ଓଡ଼ିଶା ସରକାରଙ୍କ ଆନ୍ତରିକ ଉଦ୍ୟମରେ ଏହି ଡାକୋଟା ବିମାନକୁ ୧୮.୦୧.୨୦୨୩ରେ କୋଲକାତାର NSCBI ବିମାନବନ୍ଦରରୁ ସଡ଼କ ପଥରେ ଭୁବନେଶ୍ୱରକୁ ସ୍ଥାନାନ୍ତର କରାଯାଇଥିଲା ।

ଏହି ବିମାନ BPI ବିମାନବନ୍ଦର, ଭୁବନେଶ୍ୱର ନିକଟରେ ସର୍ବସାଧାରଣଙ୍କ ପାଇଁ ପ୍ରଦର୍ଶନ କରାଯାଉଛି ଯାହା ଓଡିଶାର ଲୋକଙ୍କୁ ପ୍ରେରଣା ଯୋଗାଇବ ଏବଂ ସେମାନଙ୍କୁ ବଡ଼ ସ୍ୱପ୍ନ ଦେଖିବା ପାଇଁ ପ୍ରବର୍ତ୍ତାଇବ ।



# ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ନିମନ୍ତେ ଓଡ଼ିଶାକୁ ସର୍ବ ଭାରତୀୟ ସ୍ତରରେ ପୁରସ୍କାର

**ପଠାଣି ରାଉତ**

ଜଳ ସଂପଦ ବିଭାଗ, ଓଡିଶା, ୨୦୨୨-୨୩ ବର୍ଷରେ ଜଳ ସଂରକ୍ଷଣ ଓ ଜଳ ପରିଚାଳନା ପାଇଁ ୨ଟି ଜାତୀୟ ସ୍ତରୀୟ 'ୱାଟର ଡାଇଜେଷ୍ଟ ୱାଟର ଆୱାର୍ଡ'ରେ ପୁରସ୍କୃତ ହୋଇଛି । ସେଥି ମଧ୍ୟରୁ ଗୋଟିକରେ ଶ୍ରେଷ୍ଠ ଭିତ୍ତିଭୂମି ପ୍ରକଳ୍ପ ପାଇଁ ଉପର ଇନ୍ଦ୍ରାବତୀ ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ପୁରସ୍କୃତ ହୋଇଥିବା ବେଳେ ଅନ୍ୟଟି ଓଡିଶା ଜଳସଂପଦ ବିଭାଗ ଅନ୍ତର୍ଗତ ଓଡିଶା ଉଠାଜଳସେଚନ ନିଗମକୁ ଶ୍ରେଷ୍ଠ ଗୋଷ୍ଠୀ ଉଠାଜଳସେଚନ ପ୍ରକଳ୍ପ ପାଇଁ ସର୍ବ ଭାରତୀୟ ସ୍ତରରେ ପୁରସ୍କୃତ କରାଯାଇଛି । ଓଏଲଆଇସି କ୍ରମାଗତ ଦ୍ୱିତୀୟ ଥର ପାଇଁ ଏହି ପୁରସ୍କାର ପ୍ରାପ୍ତ କରିଛି । ଓଏଲଆଇସି ପରିଚାଳନା ନିର୍ଦ୍ଦେଶକ ତଥା ଅତିରିକ୍ତ ଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ସାମଲ ଏବଂ ଉପର ଇନ୍ଦ୍ରାବତୀ ପ୍ରକଳ୍ପର ମୁଖ୍ୟ ନିର୍ମାଣ ଯନ୍ତ୍ରୀ ଶ୍ରୀ ଅନିଲ କୁମାର ପାଣିଗ୍ରାହୀ କେନ୍ଦ୍ର ଜଳ ଶକ୍ତି ମନ୍ତ୍ରାଳୟ ମନ୍ତ୍ରୀ ଶ୍ରୀ ଗଜେନ୍ଦ୍ର ସିଂ ଶେଖାୱତଙ୍କଠାରୁ ମାର୍ଚ୍ଚ ୧୩ ତାରିଖରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଏକ ସ୍ୱତନ୍ତ୍ର ଉତ୍ସବରେ ଏହି ପୁରସ୍କାର ଗ୍ରହଣ କରିଛନ୍ତି ।

ଓଡିଶା ଏହି ପୁରସ୍କାର ଗ୍ରହଣ କରିଥିବା ପରିପ୍ରେକ୍ଷୀରେ ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡିଶା, ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଜଳସମ୍ପଦ ବିଭାଗକୁ ଶୁଭେଚ୍ଛା ଜଣାଇଛନ୍ତି । ସେହିପରି ରାଜ୍ୟ ଜଳସମ୍ପଦ, ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀମତୀ ଟୁକୁନି ସାହୁ ମଧ୍ୟ ଏହି ଉଲ୍ଲେଖନୀୟ ସଫଳତା ପାଇଁ ଆନନ୍ଦ ପ୍ରକାଶ କରି ଜଳ ସଂପଦ ବିଭାଗ ତଥା ଓଡିଶା ଉଠା ଜଳସେଚନ ନିଗମକୁ ଅଭିନନ୍ଦନ ଜଣାଇଛନ୍ତି ।

ପ୍ରକାଶ ଥାଉକି, ଉପର ଇନ୍ଦ୍ରାବତୀ ଅତି ବୃହତ୍ ଉଠା ଜଳସେଚନ ପ୍ରକଳ୍ପଟି କଳାହାଣ୍ଡି ଜିଲ୍ଲାର ଜୟପାଟଣା ତହସିଲ ଅନ୍ତର୍ଗତ ମଙ୍ଗଳପୁରଠାରେ ଥିବା ହାତୀ ବ୍ୟାରେଜର ବାମ ପାର୍ଶ୍ୱରେ ଅବସ୍ଥିତ । ଏହି ପ୍ରକଳ୍ପଟି ବିଭିନ୍ନ ଭାଗ ଯେପରିକି, ୪,୬୨୭ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ୧୬୦୦ ମିଲିମିଟର ବ୍ୟାସର ଆଠ ଧାଡି ଉତଥାନ ମୁଖ୍ୟ, ପମ୍ପ ଘର, ୪୩. ୨୬ କିମି କଂକ୍ରିଟ ଲାଇନଡ୍ କେନାଲ ଇତ୍ୟାଦିକୁ ନେଇ ଗଠିତ ହୋଇଛି । ଏହି ପ୍ରକଳ୍ପ ଦ୍ୱାରା ଧର୍ମଗଡ଼ା ବ୍ଲକରେ ୫,୮୮୧ ହେକ୍ଟର, ଜୟପାଟଣା ବ୍ଲକରେ ୮,୨୦୦ ହେକ୍ଟର ଏବଂ କୋକସରା ବ୍ଲକରେ ୧୨, ୧୬୭ ହେକ୍ଟର ଏହିପରି ମୋଟ ୨୬,୨୪୮ ହେକ୍ଟର ଚାଷଜମିକୁ ଜଳସେଚନ ଯୋଗାଇ ଦିଆଯାଉଛି । ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡିଶା ଏହି ପ୍ରକଳ୍ପଟିକୁ ୧୪.୦୧.୨୦୨୧ରେ ଉଦ୍‌ଘାଟନ କରି ଓଡିଶାବାସୀଙ୍କୁ ଉତ୍ସର୍ଗ କରିଥିଲେ । ଏହି ବର୍ଷ ପ୍ରଥମ ଥର ପାଇଁ ପ୍ରକଳ୍ପରୁ ୧୨, ୯୯୮ ହେକ୍ଟର ଚାଷଜମିକୁ ରବି ଜଳସେଚନ ଯୋଗାଇ ଯାଇଥିଲା । ଏହି ପ୍ରକଳ୍ପଟିକୁ ୱାଟର ଡାଇଜେଷ୍ଟ ଦ୍ୱାରା ଆୟୋଜିତ 'ଶ୍ରେଷ୍ଠ ଭିତ୍ତିଭୂମି ଅଗ୍ରଗାମୀ ପ୍ରକଳ୍ପ' ବର୍ଗରେ ' ୱାର୍ଲଡ ୱାଟର ପୁରସ୍କାର ୨୦୨୨-୨୩' ପ୍ରଦାନ କରାଯାଇଛି ।

ସେହିପରି ଗୋଷ୍ଠୀ ଉଠାଜଳସେଚନ ପ୍ରକଳ୍ପଗୁଡିକ ରାଜ୍ୟର କୃଷକମାନଙ୍କୁ ଆବଶ୍ୟକୀୟ ଜଳସେଚନ ସୁବିଧା ଯୋଗାଇଦେବା ଦ୍ୱାରା ଉଭୟ ଖରିଫ ଓ ରବି ଋତୁରେ ବିବିଧ ଚାଷ ପ୍ରକ୍ରିୟାରେ ସହାୟକ ହୋଇପାରିଛି । ଏଥି ସହିତ କୃଷକ ଗୋଷ୍ଠୀମାନଙ୍କର ଉନ୍ନତି ଓ ଆବଶ୍ୟକତାକୁ ଦୃଷ୍ଟିରେ ରଖି ସ୍ୱଳ୍ପ ବ୍ୟୟରେ ଓ ସହଜରେ ପ୍ରକଳ୍ପର କାର୍ଯ୍ୟାନ୍ୱୟନ ଦ୍ୱାରା ଜଳସେଚନ ସୁବିଧା ଯୋଗୁଁ କୃଷକମାନେ ବହୁଳ ଭାବେ ଉପକୃତ ହେବା ସହିତ ସଶକ୍ତ ହୋଇପାରିଛନ୍ତି ।

ଓଡିଶାରାଜ୍ୟ ଜଳ ସଂପଦ ବିଭାଗକୁ ଏହି ପୁରସ୍କାର ପ୍ରଦାନ ତଥା ବିଭାଗର ଏହି ସଫଳତା ପାଇଁ ରାଜ୍ୟ ଜଳ ସଂପଦ ବିଭାଗ (ରାଜୀବ ଭବନ)ଠାରେ ରାଜ୍ୟ ଉନ୍ନୟନ କମିଶନର ତଥା ଜଳ ସଂପଦ ବିଭାଗ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀମତୀ ଅନୁ ଗର୍ଗ, ଓଏଲଆଇସି ଅଧ୍ୟକ୍ଷ ଶ୍ରୀ ଅମରେଶ ପତ୍ରୀ, ଓଏଲଆଇସି ପରିଚାଳନା ନିର୍ଦ୍ଦେଶକ ଶ୍ରୀ ସୁଧାଂଶୁ ମୋହନ ସାମଲ, ବିଭାଗର ସର୍ବୋଚ୍ଚ ଯନ୍ତ୍ରୀ ଶ୍ରୀ ଭକ୍ତ ରଂଜନ ମହାନ୍ତିଙ୍କ ଉପସ୍ଥିତିରେ ବିଭାଗ ତଥା ଓଏଲଆଇସିର ଅଧିକାରୀ, ଯନ୍ତ୍ରୀ ଓ କର୍ମଚାରୀ ମାନେ ସମବେତ ହୋଇ ଟ୍ରଫି ଓ ପ୍ରମାଣପତ୍ର ସହ ଖୁସି ବାଣ୍ଟିଥିଲେ । କଠିନ ପରିଶ୍ରମ, ଉତ୍ସର୍ଗୀକୃତ କାର୍ଯ୍ୟ ମନୋଭାବ, ପ୍ରତିବଦ୍ଧତା ଓ ସାମୂହିକ ଉଦ୍ୟମ ଫଳରେ ଏହି ସଫଳତା ମିଳିଛି ଓ ଆଗାମୀ ଦିନରେ ବିଭାଗର ଅନ୍ୟ ଶାଖା ଏବଂ ଯୋଜନାରେ ମଧ୍ୟ ଆହୁରି ଭଲ କରାଯାଇ ଆଗାମୀ ଦିନରେ ଅଧିକ ପୁରସ୍କାର ପ୍ରାପ୍ତି ପାଇଁ ସବୁ ସ୍ତରରେ ପ୍ରୟାସ ଜାରି ରଖିବାକୁ ଶ୍ରୀମତୀ ଗର୍ଗ ପରାମର୍ଶ ଦେଇଥିଲେ ।

ସୂଚନା ଅଧିକାରୀ
ଜଳ ସମ୍ପଦ ବିଭାଗ



# ଜିଲ୍ଲା ସ୍ତରରେ ଥିବା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁ ପୁସ୍ତକର ବିକ୍ରୟ କେନ୍ଦ୍ର

| କ୍ରମିକ ସଂଖ୍ୟା | ଜିଲ୍ଲାର ନାମ | ପୁସ୍ତକ ବିକ୍ରୟ କେନ୍ଦ୍ର |
|---|---|---|
| ୧. | ଅନୁଗୋଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଅନୁଗୋଳ<br>ଯୋଗାଯୋଗ ନଂ-୯୯୩୭୨୩୫୯୯୫ |
| ୨. | ବାଲେଶ୍ୱର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଚେରିହତା, ବାଲେଶ୍ୱର<br>ଯୋଗାଯୋଗ ନଂ-୯୮୬୧୧୫୩୩୯୯ |
| ୩. | ବରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ,ଗାନ୍ଧୀ ଛକ ପାଖ, ବରଗଡ଼<br>ଯୋଗାଯୋଗ ନଂ-୯୪୩୭୨୪୦୫୩୦ |
| ୪. | ଭଦ୍ରକ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଆପାଟବିନ୍ଧ ଛକ, ବାଲେଶ୍ୱର<br>ଯୋଗାଯୋଗ ନଂ-୯୪୩୭୩୨୦୭୬୨ |
| ୫. | ବଲାଙ୍ଗିର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବଲାଙ୍ଗିର ମନୋହରପୁର ରୋଡ଼<br>ଯୋଗାଯୋଗ ନଂ-୯୪୩୭୦୮୩୨୫୯/ ୭୦୦୮୮୬୯୬୭୫ |
| ୬. | ବୌଦ୍ଧ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବୌଦ୍ଧ<br>ଯୋଗାଯୋଗ ନଂ-୯୯୩୮୦୪୮୫୦୦ |
| ୭. | କଟକ | ପଢ଼ିଆରି ପାଠାଗାର, ଚୌଧୁରୀ ବଜାର, କଟକ<br>ଯୋଗାଯୋଗ ନଂ-୯୮୨୭୯୬୧୨୪୧ |
| ୮. | ଦେବଗଡ଼ | ସୂଚନା କେନ୍ଦ୍ର ଓ ପାଠାଗାର, ଦେବଗଡ଼<br>ଯୋଗାଯୋଗ ନଂ-୯୪୩୭୮୩୨୯୫୦ |
| ୯. | ଢେଙ୍କାନାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଢେଙ୍କାନାଳ<br>ଯୋଗାଯୋଗ ନଂ-୮୫୯୬୦୬୦୪୦୯ |
| ୧୦. | ଗଜପତି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାରଳାଖେମୁଣ୍ଡି<br>ଯୋଗାଯୋଗ ନଂ- ୯୪୩୮୭୬୫୭୨୭ |

| | | |
|---|---|---|
| ୧୧. | ଗଞ୍ଜାମ | କ) ସୂଚନା କେନ୍ଦ୍ର ଓ ପାଠାଗାର, ବ୍ରହ୍ମପୁର<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଛତ୍ରପୁର<br>ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଭଞ୍ଜନଗର<br>ଘ) ସୂଚନା କେନ୍ଦ୍ର ଓ ପାଠାଗାର, ଆସିକା<br>ଙ) ସୂଚନା କେନ୍ଦ୍ର ଓ ପାଠାଗାର, ଦିଗପହଣ୍ଡି<br>ଯୋଗାଯୋଗ ନଂ– ୯୪୩୮୫୪୧୨୨୨ |
| ୧୨. | ଜଗତସିଂହପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଜଗତସିଂହପୁର<br>ଯୋଗାଯୋଗ ନଂ–୯୮୫୩୩୪୫୩୧୪ |
| ୧୩. | ଯାଜପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଯାଜପୁର<br>ଯୋଗାଯୋଗ ନଂ– ୯୪୩୭୨୨୭୬୪୬ |
| ୧୪. | ଝାରସୁଗୁଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଝାରସୁଗୁଡ଼ା<br>ଯୋଗାଯୋଗ ନଂ– ୮୭୬୩୭୯୬୭୪୭ |
| ୧୫. | କଳାହାଣ୍ଡି | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଳାହାଣ୍ଡି<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, କେସିଙ୍ଗା<br>ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଧର୍ମଗଡ଼<br>ଯୋଗାଯୋଗ ନଂ–୮୨୪୯୪୨୦୦୨୬ |
| ୧୬. | କନ୍ଧମାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କନ୍ଧମାଳ<br>ଯୋଗାଯୋଗ ନଂ–୯୪୩୭୪୯୨୪୫୯ |
| ୧୭. | କେନ୍ଦ୍ରାପଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦ୍ରାପଡ଼ା<br>ଯୋଗାଯୋଗ ନଂ–୬୩୭୧୮୬୧୫୭୨ |
| ୧୮. | କେନ୍ଦୁଝର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦୁଝର<br>ଯୋଗାଯୋଗ ନଂ–୯୪୩୭୩୩୫୨୬୩ |
| ୧୯. | ଖୋର୍ଦ୍ଧା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାଲାହାଟ, ଖୋର୍ଦ୍ଧା<br>ଯୋଗାଯୋଗ ନଂ–୬୩୭୦୨୭୦୮୭୬ |
| ୨୦. | କୋରାପୁଟ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କୋରାପୁଟ<br>ଯୋଗାଯୋଗ ନଂ–୯୪୩୯୫୯୧୪୭୩ |
| ୨୧. | ମାଲକାନଗିରି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମାଲକାନଗିରି<br>ଯୋଗାଯୋଗ ନଂ–୮୨୬୦୬୪୨୫୧୪ |

| | | |
|---|---|---|
| ୨୨. | ମୟୂରଭଞ୍ଜ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମୟୂରଭଞ୍ଜ |
| ୨୩. | ନୂଆପଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ନୂଆପଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଖରିଆର<br>ଯୋଗାଯୋଗ ନଂ–୯୪୩୭୨୧୭୬୧୧ |
| ୨୪. | ନବରଙ୍ଗପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନବରଙ୍ଗପୁର<br>ଯୋଗାଯୋଗ ନଂ– ୯୪୩୭୪୨୭୧୫୫ |
| ୨୫. | ନୟାଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନୟାଗଡ଼<br>ଯୋଗାଯୋଗ ନଂ–୯୦୪୦୨୫୮୮୫୮ |
| ୨୬. | ପୁରୀ | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପୁରୀ<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ସିଂହଦ୍ୱାର, ପୁରୀ<br>ଯୋଗାଯୋଗ ନଂ–୯୪୩୭୩୦୨୬୧୮ |
| ୨୭. | ରାୟଗଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ରାୟଗଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଗୁଣୁପୁର<br>ଯୋଗାଯୋଗ ନଂ–୯୪୩୮୬୪୧୭୮୫ |
| ୨୮. | ସମ୍ବଲପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସମ୍ବଲପୁର<br>ଯୋଗାଯୋଗ ନଂ–୯୦୯୦୫୦୮୫୨୮ |
| ୨୯. | ସୁବର୍ଣ୍ଣପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁବର୍ଣ୍ଣପୁର<br>ଯୋଗାଯୋଗ ନଂ–୯୯୩୮୩୪୭୬୬୮ |
| ୩୦. | ସୁନ୍ଦରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁନ୍ଦରଗଡ଼<br>ଯୋଗାଯୋଗ ନଂ–୯୭୭୬୧୦୯୭୭୨ |
| ୩୧. | ରାଉରକେଲା | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ରାଉରକେଲା<br>ଖ) ସିଟି ପାଠାଗାର, ମ୍ୟୁନିସିପାଲିଟି କର୍ପୋରେସନ୍<br>ଯୋଗାଯୋଗ ନଂ–୮୮୯୫୫୫୨୮୭୪ |
| ୩୨. | ଜୟଦେବ ଭବନ | ରାଜ୍ୟ ସୂଚନା କେନ୍ଦ୍ର, ଭୁବନେଶ୍ୱର<br>ଯୋଗାଯୋଗ ନଂ–୭୦୬୪୬୭୩୪୩୮ |

❖ ❖ ❖





ରାଜଭବନଠାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ରାଜ୍ୟ ସୂଚନା ଆୟୁକ୍ତ ଭାବେ ଶ୍ରୀ ସୁଶାନ୍ତ କୁମାର ମହାନ୍ତିଙ୍କୁ ଶପଥ ପାଠ କରାଉଛନ୍ତି । ଏହି ଅବସରରେ ସୂଚନା ଓ ଲୋକସମ୍ପର୍କ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସଞ୍ଜୟ କୁମାର ସିଂ ଉପସ୍ଥିତ ଅଛନ୍ତି ।




ଭୁବନେଶ୍ୱର ଜୟଦେବ ଭବନଠାରେ ଆୟୋଜିତ ଶାସ୍ତ୍ରୀୟ ଓଡ଼ିଆ ଭାଷା ଦିବସ ପାଳନ ଅବସରରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ।



ଲୋକସେବା ଭବନର ସମ୍ମିଳନୀ କକ୍ଷଠାରେ ଆୟୋଜିତ ଅନ୍ତର୍ଜାତୀୟ ମହିଳା ଦିବସ ୨୦୨୩ ପାଳନ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜନ୍ମସ୍ଥାନ ପୁରୀ ଜିଲ୍ଲାର ସୁଆଣ୍ଡୋଠାରେ ''ଗୋପବନ୍ଧୁ ସଂଗ୍ରହାଳୟ'' ଉଦ୍‌ଘାଟନ କରିବା ପରେ ବୁଲି ଦେଖୁଛନ୍ତି ।



ଓଡ଼ିଶା ବିଧାନସଭାରେ ୨୦୨୩-୨୪ ରାଜ୍ୟ ବଜେଟ୍ ଉପସ୍ଥାପନ ପୂର୍ବରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ବଜେଟ୍‌ର ସଫ୍ଟ କପି ପ୍ରଦାନ କରୁଛନ୍ତି ଅର୍ଥମନ୍ତ୍ରୀ ଶ୍ରୀ ନିରଞ୍ଜନ ପୂଜାରୀ ।



ନବୀନ ନିବାସଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ
ହିଞ୍ଜିଳିକାଟୁ ମ୍ୟୁନିସିପାଲିଟିର ଚେୟାରମ୍ୟାନ ଓ କାଉନ୍‌ସିଲରମାନେ ସାକ୍ଷାତ୍ କରୁଛନ୍ତି ।


ସମବାୟ ବିଭାଗରେ ନବନିଯୁକ୍ତ ୧୮୪ ଜଣ ଅଧିକାରୀମାନଙ୍କୁ ଦିଗ୍‌ଦର୍ଶନ କାର୍ଯ୍ୟକ୍ରମରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।


ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱର ବିଜୁ ପଟ୍ଟନାୟକ ଆନ୍ତର୍ଜାତିକ ବିମାନ ବନ୍ଦରଠାରେ ଭୁବନେଶ୍ୱର ଓ ରଙ୍ଗେଇଲୁଣ୍ଡା ମଧ୍ୟରେ ବିମାନ ଚଳାଚଳର ଶୁଭାରମ୍ଭ କରୁଛନ୍ତି ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶା ବିଧାନସଭା ପରିସରରେ
ବିଜୁ ପଟ୍ଟନାୟକଙ୍କ ଜୟନ୍ତୀ ଅବସରରେ ତାଙ୍କ ପ୍ରତିମୂର୍ତ୍ତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି ।




ମହିଳା ନିରାପତ୍ତା ଉପରେ ସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ ଭାରତ ଭ୍ରମଣରେ ବାହାରି ବିଭିନ୍ନ ରାଜ୍ୟ ପରିକ୍ରମା କରୁଥିବା ମଧ୍ୟପ୍ରଦେଶର ପର୍ବତାରୋହୀ ଆଶା ମାଲଭିୟା ନବୀନ ନିବାସଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ସୌଜନ୍ୟମୂଳକ ସାକ୍ଷାତ୍ କରୁଛନ୍ତି ।




କଟକଠାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଙ୍କ ଦ୍ୱାରା
ମ୍ୟୁଜିୟମ୍ ଅଫ୍ ଜଷ୍ଟିସ୍‌ର ଶୁଭ ଉଦ୍‌ଘାଟନ ।




ଭୁବନେଶ୍ୱରଠାରେ ଆୟୋଜିତ ବୃନ୍ଦାବନ ମହୋତ୍ସବ ଅବସରରେ
ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ।




ରାଉରକେଲାଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା
ବିର୍ସା ମୁଣ୍ଡା ଆଥ୍‌ଲେଟିକ ଷ୍ଟାଡ଼ିୟମ୍‌ର ଶୁଭ ଉଦ୍‌ଘାଟନ ।



ଓଡ଼ିଶା ରାଜ୍ୟ ବିପର୍ଯ୍ୟୟ ପରିଚାଳନା କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ନିମନ୍ତେ ଭାରତ ସରକାରଙ୍କ ଦ୍ୱାରା ଓଏସ୍‌ଡିଏମ୍‌ଏକୁ ପ୍ରଦାନ କରାଯାଇଥିବା ସମ୍ମାନଜନକ ''ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆପଦ ପ୍ରବନ୍ଧନ ପୁରସ୍କାର–୨୦୨୩'' ପ୍ରମାଣପତ୍ର ସହିତ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।
ଏହି ଅବସରରେ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ମନ୍ତ୍ରୀ ଶ୍ରୀମତୀ ପ୍ରମିଳା ମଲ୍ଲିକ, ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ଜେନା ଓ ବିଭାଗୀୟ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ନିକୁଞ୍ଜ ବିହାରୀ ଧଳ ଉପସ୍ଥିତ ଅଛନ୍ତି ।




ଲୋକସେବା ଭବନର ସମ୍ମିଳନୀ କକ୍ଷଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସହରାଞ୍ଚଳରେ କାର୍ଯ୍ୟ କରୁଥିବା ମିଶନ ଶକ୍ତିର ବିଭିନ୍ନ କମ୍ୟୁନିଟି ପାର୍ଟନରମାନଙ୍କୁ ସାଇକେଲ ବିତରଣର ଶୁଭାରମ୍ଭ କରୁଛନ୍ତି ।

VOL-LXXIX NO. 9

ଉତ୍କଳ ପ୍ରସଙ୍ଗ
ଅପ୍ରେଲ - ୨୦୨୩

## ଆଗାମୀ ପିଢ଼ିର ପ୍ରେରଣା ...







ଦୁଃସାହସୀ ପାଇଲଟ୍‌-ଦେଶପ୍ରେମୀ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଐତିହାସିକ ବିମାନ (ଡିସି-୩-ଭିଟି-ଏୟୁଆଇ) ଡାକୋଟା, ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଓଡ଼ିଶାବାସୀଙ୍କ ଉଦ୍ଦେଶ୍ୟରେ ସମର୍ପିତ ।

*Printed by the Director, Printing, Stationery & Publication, Government of Odisha, Cuttack.*
*Published by the Director, Information & Public Relations Department*
*on behalf of Government of Odisha in Information & Public Relations Department*
*and Printed at Odisha Government Press, Madhupatana, Cuttack. Editor : Kasturi Mohapatra.*